ଅଧ୍ୟକ୍ଷ

ଡକ୍ଟର ଅପର୍ଣ୍ଣା ପ୍ରଧାନ



# ପାଲି ଓ ପ୍ରାକୃତ ସାହିତ୍ୟ

# PĀLI O PRĀKRUTA SĀHITYA

**Dr. Appanna Pradhan**
M. A. ( Hindi : Utkal );
M.A , Ph.D (Comparative Philology,
Calcutta)
Principal, Hindi Teachers' Training College
Bhubaneswar

1976

# ପାଲି ଓ ପ୍ରାକୃତ ସାହିତ୍ୟ

ଡକ୍ଟର ଅପର୍ଣ୍ଣା ପ୍ରଧାନ
ଏମ୍.ଏ. (ହିନ୍ଦୀ : ଉତ୍କଳ);
ଏମ୍.ଏ., ପି-ଏଚ୍.ଡ଼ି (ତୁଳନାତ୍ମକ ଭାଷା-ବିଜ୍ଞାନ : କଲିକତା)
ଅଧ୍ୟକ୍ଷ, ହିନ୍ଦୀ ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟ
ଭୁବନେଶ୍ୱର

୧୯୭୭

ଯେଉଁ ମହାନ୍ ସଂସ୍କୃତ ପଣ୍ଡିତଙ୍କଠାରୁ
ସଂସ୍କୃତ ଶିକ୍ଷା କରିବାର ସୌଭାଗ୍ୟ
ପାଇଥିଲି—ପରମପୂଜ୍ୟ
ପଣ୍ଡିତ **ଯତିରାଜାଚାର୍ଯ୍ୟ ଶର୍ମାଙ୍କ**
କର କମଳରେ

# ମୁଖବନ୍ଧ

୧୯୭୯-୮୦ ଖ୍ରୀ:ରେ ପ୍ରାକୃତ ସାହିତ୍ୟ ସମ୍ବନ୍ଧୀୟ ତଥ୍ୟ ସବୁ ସଂଗ୍ରହ କରାଯାଇଥିଲା । ଏହାର ମୂଳ ଉଦ୍ଦେଶ୍ୟ ଥିଲା 'ପ୍ରାକୃତ ଭାଷା ଓ ସାହିତ୍ୟ ଏକ ଅଧ୍ୟୟନ' ନାମକ ଗ୍ରନ୍ଥରେ ସନ୍ନିବେଶ କରିବା । କିନ୍ତୁ କଳେବର ବୃଦ୍ଧି ଦୃଷ୍ଟିରୁ ପ୍ରାକୃତ ଭାଷା ସମ୍ବନ୍ଧୀୟ ବହିଟିକୁ ସ୍ୱତନ୍ତ୍ର ଭାବେ ପ୍ରକାଶ କରାଗଲା । ଯଦିଓ ଉକ୍ତ ଗ୍ରନ୍ଥଟି ୧୯୮୨ରେ ପ୍ରକାଶ ହୋଇଥିଲା, ଏହି ଗ୍ରନ୍ଥଟି ଆତ୍ମ-ପ୍ରକାଶ କରିବାରେ ଏକ ସବିଶେଷ କାରଣରୁ ବିଳମ୍ବ ହୋଇଗଲା । ଇତିମଧ୍ୟରେ ସାହିତ୍ୟିକ ବନ୍ଧୁମାନଙ୍କ ଅନୁରୋଧ ଓ ପି-ଏଚ୍. ଡି ଥିସିସ୍ କାର୍ଯ୍ୟରୁ ନିବୃତ୍ତି ପାଇବାରୁ ଗତ ଗ୍ରୀଷ୍ମ ଛୁଟିରେ ପାଳି ସାହିତ୍ୟ ସମ୍ବନ୍ଧୀୟ ସାମାନ୍ୟ ପରିଚୟ ସହ 'ପାଳି ଓ ପ୍ରାକୃତ ସାହିତ୍ୟ'ର ଏକ ସଂକ୍ଷିପ୍ତ ଇତିହାସ ମୁଦ୍ରଣ ପାଇଁ ପ୍ରସ୍ତୁତ କରାଗଲା । ସମୟ ଅଭାବରୁ ପାଳିଅଂଶ ପ୍ରତି ପ୍ରାକୃତ ପରି ଧ୍ୟାନ କରାଯାଇ ପାରିଲାନି । ପରବର୍ତ୍ତୀ ସଂସ୍କରଣରେ ଏହି ଅଭାବଟି ଦୂର କରାଯାଇ ପାରିବ ବୋଲି ଆଶା କରେ ।

ଅଧ୍ୟାପକ ବନ୍ଧୁ ଶ୍ରୀଯୁକ୍ତ ବ୍ରହ୍ମାନନ୍ଦ ସିଂ ପାଣ୍ଡୁଲିପିଟି ପାଠ କରି କେତେକ ବହୁମୂଲ୍ୟ ପରାମର୍ଶ ଦେଇଥିବା ହେତୁ ଲେଖକ ତାଙ୍କର କୃତଜ୍ଞତା ଜ୍ଞାପନ କରେ । ପ୍ରୁଫ୍ ସଂଶୋଧନ କରିବାରେ କୁମାରୀ ତିଲୋତ୍ତମା ଓ ଗୀତାଞ୍ଜଳି ବିଶେଷ ଯତ୍ନ କରିଥିବା ଏବଂ ପ୍ରେସ୍ ସହ ଯୋଗାଯୋଗ ରଖିବାରେ ରବୀନ୍ଦ୍ରନାଥ ଓ ଆଶୁତୋଷ ଯେଉଁ ତତ୍ପରତା ଦେଖାଇଥିଲେ ଲେଖକ ସେମାନଙ୍କୁ ଆଶୀର୍ବାଦ ଜଣାଇବା ସଙ୍ଗେ ସଙ୍ଗେ ପ୍ରଚ୍ଛଦ ଶିଳ୍ପୀ ଶ୍ରୀଯୁକ୍ତ ସୀତାକାନ୍ତ ମହାପାତ୍ର ଓ ସାଇପ୍ରିଂଟିଂ ଓ୍ୱାର୍କସ୍‌ର ସମସ୍ତ କର୍ମଚାରୀଙ୍କ ସହ ସ୍ୱତ୍ୱାଧିକାରୀ ଗୋପାଳ ନାହାକଙ୍କୁ କୃତଜ୍ଞତା ଜଣାଉଛି ।

ବିଂଘା ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟ — ଅପନ୍ନା ପ୍ରଧାନ
ଭୁବନେଶ୍ୱର-୭୫୧୦୦୨ — ୧୮-୫-୮୬

# ବିଷୟ ସୂଚୀ





୧

# ଧର୍ମସାହିତ୍ୟ

ବୁଦ୍ଧଙ୍କ ସମସ୍ତ ଉପଦେଶ ମୌଖିକ । ସେଗୁଡ଼ିକୁ ତାଙ୍କ ଶିଷ୍ୟମାନେ ମନେ ରଖିଥିଲେ । ଏହି ଉପଦେଶଗୁଡ଼ିକ ପରେ ସଂକଳନ କରାଯାଇ 'ତିପିଟକ', (ସଂ. ତ୍ରିପିଟକ) ଭାବରେ ଖ୍ୟାତ । ତିପିଟକ ଅର୍ଥାତ୍ "ତିନୋଟି ପରସ୍ତ ଥିବା ପେଟିକା", କାରଣ ଏହା ତିନୋଟି ଭାଗରେ ବିଭକ୍ତ ଯଥା : ସୁତ୍ତ, ବିନୟ ଓ ଅଭିଧମ୍ମ ପିଟକ । ତିପିଟକ ଶ୍ରୀଲଂକାର ଥେର (ସ୍ଥବିର) ବାଦୀଙ୍କ ମୁଖ୍ୟ ଗ୍ରନ୍ଥ । ପରଂପରାନୁସାରେ ଏହାର ସଂକଳନ ଓ ସଂଗାୟନ ଭଗବାନ ବୁଦ୍ଧଙ୍କ ମୃତ୍ୟୁ ପରେ ଖ୍ରୀ. ପୂ. ୪୮୩ରେ ରାଜଗୃହର ପ୍ରଥମ ସଂଗୀତି (ସଭା) ରେ ମହାକସ୍‌ସପ (ମହାକାଶ୍ୟପ) ଙ୍କ ଅଧ୍ୟକ୍ଷତାରେ ହୋଇଥିଲା । ବୈଶାଳୀ ନିବାସୀ ବଜ୍ଜିପୁତ୍ତକ (ବୃଜିପୁତ୍ର) ଭିକ୍ଷୁକମାନେ ବିନୟର ବିରୁଦ୍ଧାଚରଣ କଲେ । ଫଳତଃ ଏହାର ସୁବ୍ୟବସ୍ଥା ନିମିତ୍ତ ପ୍ରଥମ ସଂଗୀତିର ପ୍ରାୟ ଏକ ଶହ ବର୍ଷ ପରେ ବୈଶାଳୀ ନଗରରେ ଦ୍ୱିତୀୟ ସଂଗୀତି ଅନୁଷ୍ଠିତ ହେଲା । ଏଥିରେ ମହାସ୍ଥବିର ରେବତ ତଥା ସବ୍ବକାମୀ ମୁଖ୍ୟ ଥିଲେ । ତୃତୀୟ ସଂଗୀତି ଅଶୋକ (ଖ୍ରୀ.ପୂ. ୨୭୪-୨୨୭)ଙ୍କ ପ୍ରେରଣାକ୍ରମେ ଅନୁଷ୍ଠିତ ହୋଇଥିଲା । ଏହି ସଂଗୀତିରେ ପିଟକଗୁଡ଼ିକର ଏକ ପ୍ରକାରର ସ୍ଥିରରୂପ ମିଳେ । ଏହି ସଂଗୀତିରେ ହିଁ 'ସୁତ୍ତପିଟକ'ର ଉପଦିଷ୍ଟ ସିଦ୍ଧାନ୍ତଗୁଡ଼ିକର ଆଧାର ଉପରେ 'ଅଭିଧମ୍ମ ପିଟକ'ର ସୃଷ୍ଟି ଓ ଅଶୋକଙ୍କ ଗୁରୁ ମୋଗ୍‌ଗଲିପୁତ୍ତତିସ୍‌ସ 'କଥାବତ୍ଥୁପ୍‌ପକରଣ'ର ସଂଗାୟନ କଲେ । ତିସ୍‌ସ ବୌଦ୍ଧ

ମଂଗଠରେ ପ୍ରବିଷ୍ଟ ବହୁ ଭ୍ରାନ୍ତ ଧାରଣାର ନିରାକରଣ ମଧ୍ୟ କଲେ । ଏହାର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଭୂମିକା ହେଉଛି ଏହି ସଂଗୀତିରେ ଗୃହୀତ ପ୍ରସ୍ତାବ ଅନୁସାରେ ବହୁ ପଡୋଶୀ ରାଜ୍ୟକୁ ବୌଦ୍ଧ ଧର୍ମର ପ୍ରଚାର ନିମିତ୍ତ ଅନେକ ପ୍ରଚାରକଙ୍କୁ ପଠାଗଲା । ଏହି ପରିପ୍ରେକ୍ଷୀରେ ଅଶୋକଙ୍କ ପୁତ୍ର ମହିନ୍ଦ (ମହେନ୍ଦ୍ର)ଙ୍କୁ ଧର୍ମ ପ୍ରଚାରାର୍ଥେ ଶ୍ରୀଲଂକା ଯିବାକୁ ପଡ଼ିଲା । ସେ ନିଜ ସହ ତିପିଟକ ମଧ୍ୟ ନେଇଥିଲେ ।

ଦୀର୍ଘକାଳ ଧରି ଶ୍ରୀଲଙ୍କାରେ ତିପିଟକର ମୌଖିକ ପରମ୍ପରା ଚାଲି ଆସୁଥିଲା । କିନ୍ତୁ ଦୀପବଂଶ ତଥା ମହାବଂଶଙ୍କ ଅନୁସାରେ ବଟ୍ଟଗାମିଣୀଙ୍କ ରାଜତ୍ୱକାଳ (ଖ୍ରୀ: ପୂ ୨୯-୧) ରେ 'ଅଟ୍ଠ (ଅର୍ଥ) କଥା' ସହିତ ତାକୁ ଲିପିବଦ୍ଧ କରାଗଲା । ସମସ୍ତ ତିପିଟକର ମୂଳ ବୁଦ୍ଧ ବଚନ, ଏଥିରେ ବିଦ୍ୱାନମାନଙ୍କ ମତଭେଦ ହୁଏ । ଏଥିରେ କେତେକ ଗାଥା ପ୍ରକ୍ଷିପ୍ତ ହେବା ବିଷୟ ପୁରୁଣା ଆଚାର୍ଯ୍ୟମାନେ ସ୍ୱୀକାର କରନ୍ତି । କିନ୍ତୁ ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ ଏଥିରେ ମୂଳ ବୁଦ୍ଧବଚନ ପୂର୍ଣ୍ଣରୂପରେ ସୁରକ୍ଷିତ । ସୂତ୍ର-ଗୁଡ଼ିକର ଶୈଳୀ ଅତ୍ୟଧିକ ସଜୀବ ତଥା ସୂତ୍ରଗୁଡିକର ଆରମ୍ଭରେ ସେହି ସ୍ଥାନର ଉଲ୍ଲେଖ ରହିଛି ଯେଉଁଠାରେ ଭଗବାନ ବୁଦ୍ଧ ନିଜେ ତାର ଉପଦେଶ ଦେଇଥିଲେ; ଉଦାହରଣ ସ୍ୱରୂପଃ 'ଏକଂ ସମୟଂ ଭଗବା ସାବତ୍ଥିୟଂ ବିହରତି ଜେତବନେ ଅନାଥପିଣ୍ଡିକସ୍ସ ଆରାମେ ।' ଅର୍ଥାତ୍ ଏକ ସମୟରେ ଭଗବାନ ବୁଦ୍ଧ ଶ୍ରାବସ୍ତୀରେ ଅନାଥପିଣ୍ଡିକଙ୍କ ଆରାମ, ଜେତବନରେ ବିହାର କରୁଥିଲେ । ଉପଦେଶ ଅବସରରେ ଯେଉଁ ପ୍ରଶ୍ନୋତ୍ତର ହୋଇଥାଏ ତା' ସମ୍ବନ୍ଧରେ ମଧ୍ୟ ସୂତ୍ରଗୁଡ଼ିକରେ ସୁନ୍ଦର ବ୍ୟାଖ୍ୟା ମିଳେ । ଯଥା —

"ଅଭିକ୍କନ୍ତଂ ଭୋ ଗୋତମ, ଅଭିକ୍କନ୍ତଂ ଭୋ ଗୋତମ, ସେଯ୍ୟଥାପି ଭୋ ଗୋତମ, ନିକ୍କୁଜ୍ଜିତଂ ବା ଉକ୍କୁଜ୍ଜେଯ୍ୟ, ପଟିଚ୍ଛନ୍ନଂ ବା ବିବାରେଯ୍ୟ, ମୂଳ୍ହସ୍ସ ବା ମଗ୍ଗଂ ଆଚିକ୍ଖେଯ୍ୟ, ଅନ୍ଧକାରେ ବା ତେଲପଜ୍ଜୋତଂ ଧାରେଯ୍ୟ, ଚକ୍ଖୁମନ୍ତୋ ରୂପାନି ଦକ୍ଖନ୍ତୀତି...... ।" ଅର୍ଥାତ୍, ହେ ଗୌତମ ! ଆପଣ ଭଲ କହିଲେ । ଯେପରି ଓଲଟାକୁ ସିଧା କରିଦେଲେ, ଆବୃତକୁ ଆବରଣ ମୁକ୍ତ କଲେ, ପଥଭ୍ରଷ୍ଟକୁ ପଥ ପ୍ରଦର୍ଶନ କଲେ, ଅନ୍ଧକାରରେ ତେଲର ପ୍ରଦୀପ ଜାଳିଲେ, ଯାହାଦ୍ୱାରା ଆଖିଥିବା ବ୍ୟକ୍ତି ରୂପକୁ ଦେଖି ପାରିଲେ ।

ସାଧାରଣତଃ ସବୁ ସୂତ୍ର ଗଦ୍ୟରେ ଲିଖିତ କିନ୍ତୁ ସ୍ଥଳବିଶେଷରେ ଗାଥା ଓ ପଦ୍ୟାକାରରେ ମଧ୍ୟ ଦେଖାଯାଏ । ଏ ଗୁଡ଼ିକର ଭାଷା ଓଜପୂର୍ଣ୍ଣ । 'ଧମ୍ମଚକ୍କ ପବତ୍ତନ ସୁତ୍ତ'ରେ ଭୋଗବାଦର ନିନ୍ଦା ପ୍ରସଙ୍ଗରେ ବୁଦ୍ଧ କହନ୍ତି—

"......ଯୋ ଚାୟଂ ଭିକ୍ଖବେ ! କାମେସୁ କାମସୁଖଲ୍ଲିକାନୁଯୋଗୋ ହୀନୋ, ଗମ୍ମୋ, ପୋଥୁଜ୍ଜନିକୋ, ଅନରିୟୋ, ଅନତ୍ଥସଂହିତୋ...... ।" ଅର୍ଥାତ୍—ଭିକ୍ଷୁମାନେ ! ଯେଉଁମାନେ "ଖାଅ-ପିଅ-ମଉଜ କର"ର ଅବଲମ୍ବୀ ସେମାନେ ବୁଝିବାକୁ ହେବ ଯେ ଏହା ହୀନ, ଗ୍ରାମ୍ୟ, ଅନାର୍ଯ୍ୟ ଓ ଅନର୍ଥକର ମଧ୍ୟ ଅଟେ...... ।

## ସୁତ୍ତ ପିଟକ

ସୁତ୍ତ ପିଟକରେ କଥୋପକଥନ ମାଧ୍ୟମରେ ବୁଦ୍ଧଙ୍କ ପ୍ରଦତ୍ତ ଉପଦେଶାବଳି ସଂଗ୍ରହ କରାଯାଇଛି । ଏଥିରେ ସାରିପୁତ୍ର ତଥା ମୋଗ୍ଗଲ୍ଲାନ ଆଦିଙ୍କ ଦ୍ୱାରା ଉପଦିଷ୍ଟ କେତେକ ସୂତ୍ର ସନ୍ନିବିଷ୍ଟ,

ଯାହାର ଅନୁମୋଦନ ଭଗବାନ ବୁଦ୍ଧ ଶେଷରେ କରନ୍ତି । ସୂତ୍ତ-ପିଟକ ପାଞ୍ଚୋଟି ନିକାୟରେ ବିଭକ୍ତ । ଯଥା:- (୧) ଦୀଘନିକାୟ, (୨) ମଜ୍‌ଝିମ ନିକାୟ (୩) ସଂଯୁକ୍ତ ନିକାୟ (୪) ଅଙ୍ଗୁତ୍ତର ନିକାୟ ଓ (୫) ଖୁଦ୍ଦକ ନିକାୟ । ଖୁଦ୍ଦକ ନିକାୟ ୧୫ଟି ଗ୍ରନ୍ଥରେ ବିଭକ୍ତ । ଯଥା : ଖୁଦ୍ଦକ ପାଠ, ଧମ୍ମପଦ, ଉଦାନ, ଇତିବୁତ୍ତକ, ସୁତ୍ତନିପାତ, ବିମାନବତ୍‌ଥୁ, ପେତବତ୍‌ଥୁ, ଥେରଗାଥା, ଥେରୀ-ଗାଥା, ଜାତକ, ନିଦ୍ଦେଶ, ପଟିସମ୍ଭିଦାମଗ୍‌ଗ, ଅପଦାନ, ବୁଦ୍ଧ-ବଂଶ ଓ ଚରିୟାପିଟକ ।

ସୂତ୍ରଗୁଡ଼ିକର ଆକାର ଅନୁସାରେ ଏହାକୁ ୫ ଭାଗରେ ବିଭକ୍ତ କରାଯାଇଛି । ବଡ଼ ବଡ଼ ସୂତ୍ରଙ୍କ ସଂଗ୍ରହକୁ ଦୀଘନିକାୟ ରଖାଯାଇଛି । ଦୀଘନିକାୟର ଉତ୍କୃଷ୍ଟ ବ୍ରହ୍ମଜାଲ ସୁତ୍ତ ଓ ସମ୍ପୂର୍ଣ୍ଣ ନିକାୟରେ ରହିଛି । ପାଳିର ପ୍ରସିଦ୍ଧ ବିଦ୍ୱାନ୍ ଆର୍. ଓ. ଫ୍ରାଂକଙ୍କ ମତରେ— 'D. is a homogeneously conceived lite-rary work' (ଅର୍ଥାତ୍, ଦୀଘନିକାୟ ଏକ କ୍ରମବଦ୍ଧ ସାହିତ୍ୟିକ ରଚନା) । କିନ୍ତୁ ଏହି ମତ ସହ ଅଧିକାଂଶ ସମାଲୋଚକ ଏକମତ ନୁହନ୍ତି । ଏହି ନିକାୟର ଷୋଡ଼ଶ "ମହାପରିନିବ୍ବାନ (ମହାପରି-ନିର୍ବାଣ)" ସୁତ୍ତ ଅତ୍ୟଧିକ ମହତ୍ତ୍ୱପୂର୍ଣ୍ଣ । ଏଥିରେ ବୁଦ୍ଧଦେବଙ୍କ ଜୀବ-ନର ଶେଷ ସପ୍ତାହର ଘଟଣାବଳୀ ବର୍ଣ୍ଣିତ ।* ଏଥିର ସୁତ୍ତ ସଂଖ୍ୟା ୩୪ ଓ ଏହା ନିମ୍ନୋକ୍ତ ତିନି ପ୍ରକାରରେ ବିଭକ୍ତ । ସୀଲକ୍‌ଖନ୍ଧ ବଗ୍‌ଗ (୧-୧୩), ମହାବଗ୍‌ଗ (୧୪-୨୩) ଓ ପାଟିକବଗ୍‌ଗ (୨୪-୩୪) ।

* ଦ୍ରଷ୍ଟବ୍ୟ : ଗାଇଗର୍ : ପାଲି ଲିଟ୍‌ରେଚର୍ ଏଣ୍ଡ ଲାଙ୍ଗୁଏଜ୍ ପୃ: ୧୭ ।

**ମଜ୍ଝିମ-ନିକାୟ**ରେ ମଧ୍ୟମ ଆକାରର ସୂତ୍ରାବଳୀ ରହିଛି । ଏଥିରେ ସୂତ୍ର ସଂଖ୍ୟା ୧୫୨ ଓ ଏହା ତିନି ଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗ ୫୦ ସୂତ୍ରବିଶିଷ୍ଟ । ମୂଳପଣ୍ଣାସ (୧-୫୦), ମଜ୍ଝିମ ପଣ୍ଣାସକ (୫୧-୧୦୦) ଓ ଉପରିପଣ୍ଣାସ (୧୦୧-୧୫୨) । ଏହାର କଣ୍ଡପସୁତ୍ତ ସୂତ୍ର ଏବଂ 'ରଟ୍ଠପାଲ' (୮୨ତମ), 'ମଖାଦେବ' (୮୩ତମ) ତଥା ଅସ୍ସଲାୟଣ (୯୩ତମ) ଅତ୍ୟନ୍ତ ସୁନ୍ଦର ।

**ସଂଯୁତ୍ତ** ତଥା **ଅଂଗୁତ୍ତର ନିକାୟ** ବସ୍ତୁତଃ ଅନ୍ୟ ନିକାୟଗୁଡ଼ିକର ପୂରକରୂପ ମାତ୍ର । ଏ ଦୁଇଟି ଉପରୋକ୍ତ ଦୁଇ ନିକାୟଠାରୁ ବଡ଼ । ସଂଯୁତ୍ତ ନିକାୟରେ କ୍ଷୁଦ୍ର ବଡ ୨ ପ୍ରକାରର ସୂତ୍ରର ସଂଗ୍ରହ କରାଯାଇଛି । ଏହା ପାଞ୍ଚୋଟି ବର୍ଗ (ବଗ୍ଗ) ବିଶିଷ୍ଟ । ଯଥା: ସଗାଥବର୍ଗ, ନିଦାନବର୍ଗ, ସ୍କନ୍ଧବର୍ଗ, ଷଡ଼ାୟତନ ବର୍ଗ ଓ ମହାବର୍ଗ । ସଂଯୁତ୍ତ ନିକାୟର ସର୍ବାଧିକ ପ୍ରସିଦ୍ଧ ସୂତ୍ର "ଧମ୍ମଚକ୍କ ପବତ୍ତନ" ସମ୍ୟକ୍ ସମ୍ବୁଦ୍ଧ ହେବା ପରେ ବୁଦ୍ଧଙ୍କ ପ୍ରଥମ ଉପଦେଶ ଏଥିରେ ବର୍ଣ୍ଣିତ । ଏଥିରେ ସଂଯୁକ୍ତ ଗୁଡ଼ିକର ସଂଖ୍ୟା ୫୬ ଓ ସୂତ୍ରଗୁଡ଼ିକର ସଂଖ୍ୟା ୨୮୮୯ ।

**ଅଙ୍ଗୁତ୍ତର ନିକାୟରେ** ଏକକ ନିପାତ, ଦ୍ୱିକ ନିପାତ, ତିକ ନିପାତ ଆଦି ଏଗାରଟି ନିପାତ ରହିଛି । ଏକ ଧର୍ମବୋଧକ ସୂତ୍ର ଏକକ ନିପାତ ଓ ଦ୍ୱି ଧର୍ମ ବା ଉପଦେଶବୋଧକ ସୂତ୍ର ଦ୍ୱିକ ନିପାତ ତଥା ଏଗାରଟି ଧର୍ମବୋଧକ ସୂତ୍ର ଏକାଦଶ ନିପାତ ସଂଜ୍ଞାରେ ପରିଚିତ

**ଖୁଦ୍ଦକ ନିକାୟ** କ୍ଷୁଦ୍ର କ୍ଷୁଦ୍ର ସୂତ୍ରଙ୍କ ସମାହାର ମାତ୍ର । ଏଥିରେ ବିଭିନ୍ନ ପ୍ରକାରର ଗ୍ରନ୍ଥର ସମାବେଶ ହୋଇଛି । ଏହି ଗ୍ରନ୍ଥ

ସମ୍ବନ୍ଧରେ ମଧ୍ୟ ଶ୍ରୀଲଙ୍କା, ବର୍ମା ତଥା ଶ୍ୟାମର ବୌଦ୍ଧ ସମ୍ପ୍ରଦାୟ ଏକମତ ନୁହନ୍ତି ।* ଏହି ନିକାୟାନ୍ତର୍ଗତ ୧୫ଟି ଗ୍ରନ୍ଥର ସୂଚୀ ଶ୍ରୀଲଙ୍କାର ବୌଦ୍ଧ ସମ୍ପ୍ରଦାୟଙ୍କ ଅନୁସାରେ ପ୍ରଦତ୍ତ ।

୧ ॥ **ଖୁଦ୍ଦକ ପାଠ**—ଏହା ନ'ଟି ସୂତ୍ର ବିଶିଷ୍ଟ । ଏହାକୁ ବୌଦ୍ଧମାନେ ପ୍ରତ୍ୟହ ପାଠ କରନ୍ତି । ଏହାର ପଞ୍ଚମ, ଷଷ୍ଠ ତଥା ନବମ (ମଙ୍ଗଳ, ରତନ ତଥା ମେତ୍ତ) ସୂତ୍ର 'ସୁତ୍ତନିପାତ'ରେ ମିଳେ । ଏହାର ୭ମ ସୂତ୍ର 'ତିରୋକୁଡ୍‌ଡ୍ ସୁତ୍ତ' ପ୍ରେତଙ୍କ ସମ୍ବନ୍ଧୀୟ । ଏହି ଗ୍ରନ୍ଥ ସିଂହଳ ଓ ବ୍ରହ୍ମଦେଶରେ ମୃତକ ଦାହ ସଂସ୍କାର କାଳରେ ପାଠ କରାଯାଏ ।

୨ ॥ **ଧମ୍ମପଦ**—୪୨୩ ପ୍ରସିଦ୍ଧ ଗାଥା ସମ୍ବଳିତ । ଏହା ବିଷୟାନୁସାରେ ୨୬ଟି ବର୍ଗରେ ବିଭକ୍ତ । ଗୀତା ପରି ବୌଦ୍ଧ-ଦେଶମାନଙ୍କରେ ଏହାର ପ୍ରାଧାନ୍ୟ ରହିଛି । ବିଶ୍ୱର ସମସ୍ତ ଭାଷାରେ ଏହା ଅନୂଦିତ । ଗାଥାଗୁଡ଼ିକ ମୁଖ୍ୟତଃ ବୁଦ୍ଧଙ୍କ ଜୀବନର କାର୍ଯ୍ୟା-ବଳୀ ସମ୍ବନ୍ଧୀୟ । ବୁଦ୍ଧଘୋଷଙ୍କ ବ୍ୟାଖ୍ୟାନୁସାରେ ଏହି ଗାଥାଗୁଡ଼ିକ ଧର୍ମୋପଦେଶ ଅବସରରେ ବୁଦ୍ଧଦେବ ନିଜ ଶିଷ୍ୟବୃନ୍ଦ ଓ ଜନସମୂହଙ୍କ ସମକ୍ଷରେ ଉପସ୍ଥାପନ କରୁଥିଲେ ।†

୩ ॥ **ଉଦାନ**—ଏହା ଭଗବାନ ବୁଦ୍ଧଙ୍କ ମୁଖନିଃସୃତ ଭାବାବେଗରେ ଜାତ ଉଦ୍ଧୃତ ପ୍ରୀତିବାକ୍ୟର ସଂଗ୍ରହ ମାତ୍ର । ଏଗୁଡ଼ିକ ଗାଥା ରୂପରେ ଉଦ୍ଦିଷ୍ଟ । ଏଥିର ସୂତ୍ର ସଂଖ୍ୟା ୮୦ ଓ ଏହା ୮ଟି ବର୍ଗରେ ବିଭକ୍ତ ।

---

* ଦ୍ରଷ୍ଟବ୍ୟ : ଗାଇଗର୍, ପୃ. ୧୯

† ସବିଶେଷ ବିବରଣୀ ପରିଶିଷ୍ଟ ଦ୍ରଷ୍ଟବ୍ୟ ।

୪ ॥ **ଇତିବୁତ୍ତକ**—ଏହି ୧୧୨ଟି ସୂତ୍ର ରହିଛି । ଏହା ଉଦାନ ଭଳି ଭଗବାନ୍ ବୁଦ୍ଧଙ୍କ ମୁଖନିଃସୃତ ମୁକ୍ତବାକ୍ୟର ସଗ୍ରହ

୫ ॥ **ସୁତ୍ତନିପାତ**—ଏହା ପାଲି ସାହିତ୍ୟର ପ୍ରାଚୀନତମ ଗ୍ରନ୍ଥ ।† ଏହାର ପ୍ରଥମ ଚାରୋଟି ବର୍ଗ ୫୪ ସୂତ୍ର ରହିଛି । ପଞ୍ଚମରେ 'ପାରାୟଣ ବଗ୍ଗ'ରେ ଷୋଳ ବ୍ରାହ୍ମଣ ଭଗବାନ୍ ବୁଦ୍ଧଙ୍କୁ ଯେଉଁ ସବୁ ପ୍ରଶ୍ନ ପଚାରିଥିଲେ ତାର ଉତ୍ତର ରହିଛି ।

୬ ॥ **ବିମାନବତ୍ଥୁ** ଓ ॥ ୭ ॥ **ପେତବତ୍ଥୁ** : ଏହାର ସଂକଳନ ତୃତୀୟ ସଂଗୀତି (ସଭା)ର କିଛିଦିନ ପୂର୍ବରୁ କରାଯାଇଥିଲା । ବିମାନବତ୍ଥୁରେ ୮୩ଟି କଥା ରହିଛି ଓ ଏଗୁଡ଼ିକ ୭ଟି ବର୍ଗରେ ବିଭକ୍ତ । ପେତବତ୍ଥୁରେ ୫୦ଟି କଥା ରହିଛି ଓ ଏଗୁଡ଼ିକ ୪ଟି ବର୍ଗରେ ବିଭକ୍ତ । ପୂର୍ବଯୋନିରେ ଅଶୁଭ ତଥା ପାପକର୍ମ କରିଥିବା ପ୍ରେତମାନଙ୍କୁ ଯେଉଁ ସବୁ ଯାତନା ଭୋଗ କରିବାକୁ ପଡ଼ିଥିଲା ତାର ବର୍ଣ୍ଣନା ରହିଛି ।

୮ ॥ **ଥେରଗାଥା** ॥ ୯ ॥ **ଥେରୀ ଗାଥା** : ଏଥିର ଅଧିକାଂଶ ପଦ ଅତ୍ୟନ୍ତ ପ୍ରାଚୀନ । ଏଗୁଡ଼ିକ କୌଣସି ଜଣେ ବ୍ୟକ୍ତିର ରଚନା ନୁହେଁ, କାରଣ ଏଥିରେ ଏକରୂପତାର ଅଭାବ ରହିଛି । ଥେରଗାଥାରେ ୧୨୭୯ଟି ତଥା ଥେରୀଗାଥାରେ ୫୨୨ଟି ଗାଥା ରହିଛି ।

---

† Sutta Nipata is an immense favourite in the West as well as in the Buddhist sect, for it is second only to the Dhammapada in the nobility of its thought and the beauty of its language.

Buddhism by C. Humphreys, Pelican 1954 P-236

୧୦ ॥ **ଜାତକ**—ଜାତକର ଅର୍ଥ ହେଉଛି ଜନ୍ମ ସମ୍ବନ୍ଧୀୟ । ସମ୍ୟକ୍ ସମ୍ବୁଦ୍ଧ ହେବାପୂର୍ବରୁ ଭଗବାନ 'ବୁଦ୍ଧ' ବୋଧିସତ୍ତ୍ୱ ଥିଲେ । ବୋଧିସତ୍ତ୍ୱର ଅର୍ଥ 'ବୁଦ୍ଧତ୍ୱ ନିମିତ୍ତ ପ୍ରଯତ୍ନଶୀଳ ପ୍ରାଣୀ ।'

ଜାତକରେ ବୋଧିସତ୍ତ୍ୱର ୫୪୭ ଜନ୍ମର ଉଲ୍ଲେଖ କରାଯାଇଛି । ତ୍ରିପିଟକରେ ଯେଉଁ ଜାତକର ସମାବେଶ ରହିଛି ତାହା କେବଳ ଗାଥା ସଂଗ୍ରହ । ଅଟ୍ଠକଥା ବ୍ୟତୀତ କେବଳ ଗାଥାରୁ ଜାତକର କଥାବୋଧ ହୁଏ ନାହିଁ । ଜାତକଟ୍ଠ କଥାରେ ଅଟ୍ଠକଥା ସହିତ ଜାତକ କଥାର ଆରମ୍ଭ ପୂର୍ବରୁ 'ନିଦାନ କଥା' ନାମକ ଏକ ସୁବିସ୍ତୃତ ଉପୋଦ୍ଘାତ ରହିଛି । ଏହି ନିଦାନ କଥାରେ ସିଦ୍ଧାର୍ଥ ଗୌତମ ବୁଦ୍ଧଙ୍କ ଜୀବନ ଚରିତ ସହ ତାଙ୍କ ପୂର୍ବର ୨୭ ଜଣ ବୁଦ୍ଧଙ୍କର ଜୀବନ ଚରିତ ରହିଛି । ଏଥିରୁ ପ୍ରତୀତ ହୁଏ ଯେ ଏହା ବୁଦ୍ଧଙ୍କସରୁ ଆଗତ ।

ଜାତକର ଅଟ୍ଠକଥା ତିନି ଭାଗରେ ବିଭକ୍ତ—(୧) ଦୂରେ ନିଦାନ (୨) ଅବିଦୂରେ ନିଦାନ (୩) ସନ୍ତିକେ ନିଦାନ । ବୋଧିସତ୍ତ୍ୱ ଯେତେବେଳେ ସୁମେଧ ତପସ୍ୱୀର ଜନ୍ମ ଗ୍ରହଣ କରି ଭଗବାନ ଦୀପଙ୍କରଙ୍କ ଚରଣରେ ଜୀବନ ସମର୍ପିତ କଲେ, ସେହି ସମୟଠାରୁ ଆରମ୍ଭ କରି 'ବେସ୍ସନ୍ତର' * ଶରୀର ତ୍ୟାଗ, ତୁଷିତ ସ୍ୱର୍ଗଲୋକ ଉତ୍ପନ୍ନ ହେବା ପର୍ଯ୍ୟନ୍ତ କଥା 'ଦୂରେ ନିଦାନ' କୁହାଯାଏ । ତୁଷିତ ଲୋକରୁ ଚ୍ୟୁତ ହୋଇ ମହାମାୟା ଦେବୀଙ୍କ ଗର୍ଭରୁ ଉତ୍ପନ୍ନ ହୋଇ ବୋଧଗୟାରେ ବୁଦ୍ଧତ୍ୱ ପ୍ରାପ୍ତ କରିବା ପର୍ଯ୍ୟନ୍ତ କଥାକୁ 'ଅବିଦୂରେ ନିଦାନ' କୁହାଯାଏ ।

---

* ଦ୍ରଷ୍ଟବ୍ୟ : ବେସ୍ସନ୍ତର ଜାତକ (୫୪୭) ।

ଜାତକ କଥା ଦୂରେ ନିଦାନର ଅନ୍ତର୍ଗତ । ପ୍ରତ୍ୟେକ ଜାତକ କଥାର ସୃଭ ଗୋଟି ବିଭାଗ ରହିଛି— (୧) ପ୍ରତ୍ୟୁତ୍ପନ୍ନ-ବସ୍ତୁ (୨) ଅତୀତବସ୍ତୁ (୩) ଅର୍ଥବର୍ଣ୍ଣନା ଓ (୪) ସମୋ-ଧାନ । ପ୍ରତ୍ୟୁତ୍ପନ୍ନବସ୍ତୁରୁ ବୁଝାଯାଏ ଯେ ବର୍ତ୍ତମାନ କଥା ଅର୍ଥାତ୍ ଭଗବାନ ବୁଦ୍ଧଙ୍କ ଦ୍ୱାରା କଥିତ ପୂର୍ବଜନ୍ମ କଥା; ଅର୍ଥ-ବର୍ଣ୍ଣନାରେ ଏହି ଗାଥାର ବ୍ୟାଖ୍ୟା ବର୍ଣ୍ଣିତ । ଏଥିରେ ଗାଥା-ଗୁଡ଼ିକର ଶବ୍ଦାର୍ଥ ତଥା ବସ୍ତୁତାର୍ଥ ରହିଛି । ସମୋଧାନ ସର୍ବଦା ଶେଷକୁ ଆସେ ।

ଜାତକର ସମସ୍ତ ଗାଥା କୌଣସି ଜଣେ ବ୍ୟକ୍ତିର କୃତିରୂପେ ପ୍ରମାଣିତ ହୁଏ ନାହିଁ । ( In the face of such diversity I cannot understand how "the mass of the Jataka-Gathas as a whole may be regarded as the personal Product of a single author". ଗାଇଗର୍—୨୧ ପୃଷ୍ଠା) । ଏହାର ଭାଷା ଓ ଶୈଳୀ ଗଦ୍ୟ ପଦ୍ୟ ମିଶ୍ରିତ ।

୧୧ ॥ **ନିଦ୍ଦେଶ**—ଏହା ସୁତ୍ତନିପାତର ଭାଷ୍ୟ ଯାହାର କର୍ତ୍ତା ହେଉଛନ୍ତି ସାରିପୁତ୍ତ ।

୧୨ ॥ **ପଟିସମ୍ଭିଦାମଗ୍ଗ**—ରେ ଅର୍ହନ୍ତମାନଙ୍କ ଦ୍ୱାରା ଉପଲବ୍ଧ ଜ୍ଞାନର ଉଲ୍ଲେଖ ରହିଛି । ବିଷୟ ଦୃଷ୍ଟିରୁ ଏହା ଅଭିଧମ୍ମ ସାହିତ୍ୟର ବସ୍ତୁ ।

୧୩ ॥ **ଅପଦାନ**—ପଦ୍ୟବଦ୍ଧ କଥାଗୁଡ଼ିକର ସଂଗ୍ରହ ଅଟେ । ଏଥିରେ ବୌଦ୍ଧସନ୍ଥମାନଙ୍କର ପୂର୍ବଜନ୍ମର ଶୁଭକର୍ମର ବର୍ଣ୍ଣନା

କରାଯାଇଛି । ତ୍ରିପିଟକ-ସାହିତ୍ୟରେ ଏହା ଏହିଠାରୁ ପରବର୍ତ୍ତୀ କାଳର ରଚନା, କିନ୍ତୁ ସଂସ୍କୃତରେ ଲିଖିତ ବୌଦ୍ଧ ଅବଦାନ ସାହିତ୍ୟଠାରୁ ଅତି ପ୍ରାଚୀନ ।

୧୪ ॥ **ବୁଦ୍ଧବଂଶ**—ଏହା ୨୮ କାଣ୍ଡରେ ବିଭକ୍ତ ଏଥିରେ ୨୪ ଜଣ ଅତୀତ ବୁଦ୍ଧଙ୍କ କଥା ବର୍ଣ୍ଣିତ ।

୧୫ ॥ **ଚରିୟା ପିଟକ**—ପଦ୍ୟବନ୍ଧ ୨୫ଟି ଜାତକର ସଂଗ୍ରହ ଅଟେ । ବୁଦ୍ଧତ୍ୱ ପ୍ରାପ୍ତ କରିବା ପୂର୍ବରୁ, ବୋଧିସତ୍ତ୍ୱାବସ୍ଥାରେ ବୁଦ୍ଧ କେତେ ପ୍ରକାରର ଦଶଟି ପାରମିତାକୁ ପୂର୍ଣ୍ଣ କରିଥିଲେ, ଏଗୁଡ଼ିକ ବୁଦ୍ଧଙ୍କ ଦ୍ୱାରା କଥିତ । ଏଥିରେ କବିତ୍ୱର ଅଭାବ ସ୍ପଷ୍ଟ ପରିଲକ୍ଷିତ । ଓ୍ୱିଣ୍ଟରନିଜ୍ ମହାଶୟଙ୍କ ମତାନୁସାରେ ଏହାର ରଚୟିତା କୌଣସି ସ୍ଥବିର ହୋଇପାରନ୍ତି ।

## ବିନୟ ପିଟକ

ବିନୟ ପିଟକରେ ସଂଘ ସଂଗଠନ ସମ୍ବନ୍ଧୀୟ ନିୟମାବଳୀ ଓ ବୌଦ୍ଧ ସନ୍ୟାସୀମାନଙ୍କ ଦୈନନ୍ଦିନ ନିୟମ ବର୍ଣ୍ଣିତ । ସଂକ୍ଷେପରେ ଏହାକୁ ସଂଘ ଶାସନ ସମ୍ବନ୍ଧୀୟ ନିୟମ କାନୁନର କୋଷ କହିଲେ ଅତ୍ୟୁକ୍ତି ହେବନାହିଁ । ବିନୟ ପିଟକର ନିମ୍ନଲିଖିତ ବିଭାଗ ରହିଛି —

୧ । ସୁତ୍ତବିଭଙ୍ଗ—(କ) ପାରାଜକ (ଖ) ପାଚିତ୍ତିୟ

୨ । ଖନ୍ଧକ— (କ) ମହାବଗ୍ଗ (ଖ) ଚୁଲ୍ଲବଗ୍ଗ

୩ । ପରିବାର

୧. **ସୁତ୍ତ ବିଭଙ୍ଗ**—ସୁତ୍ତବିଭଙ୍ଗ ବସ୍ତୁତଃ **'ପାତିମୋକ୍ଖ ସୁତ୍ତ'** (ପ୍ରାତିମୋକ୍ଷ ସୂତ୍ର)ର ବ୍ୟାଖ୍ୟା ମାତ୍ର । ଏଥିରେ ଭିକ୍ଖୁ-ପାତିମୋକ୍ଖ ତଥା ଭିକ୍ଖୁନୀ ପାତିମୋକ୍ଖର ଉଲ୍ଲେଖ କରାଯାଇଛି । ଏ ଦୁଇଟି ବିନୟ ପିଟକର ପ୍ରାମାଣିକ ଅଙ୍ଗ । ଉପୋସଥ ✝ ଅବସରରେ ସଂଘର ଉପୋସଥାଗାରରେ ଏକତ୍ରିତ ହୋଇ କୌଣସି ସ୍ଥାନବିଶେଷରେ ରହୁଥିବା ଭିକ୍ଷୁ ଓ ଭିକ୍ଷୁଣୀଙ୍କୁ ପାତିମୋକ୍ଖର ନିୟମ ଆବୃତ୍ତି କରିବା ଆବଶ୍ୟକ । ଏଥିରେ ଅପରାଧ ସ୍ୱୀକରଣ ସମ୍ବନ୍ଧୀୟ ନିୟମ ରହିଛି । ଅପରାଧ ମଧ୍ୟ ଗୁରୁତା ଅନୁସାରେ ବିଭକ୍ତ—ଯଥା : **ପାରାଜିକଧର୍ମ୍ମ** ଓ **ଅନ୍ୟଟି ସଂଘାଦିସେସଧର୍ମ୍ମ** । ସୁତ୍ତବିଭଙ୍ଗ ଦୁଇ ପ୍ରକାରର ଯଥା: ପାରାଜିକ ଓ ପାଚିତ୍ତିୟ । ଭିକ୍ଖୁପାତିମୋକ୍ଖ ତଥା ଭିକ୍ଖୁନୀ ପାତିମୋକ୍ଖରେ ଶିକ୍ଷାପଦର ସଂଖ୍ୟା ୨୨୭ ।

୨. **ଖନ୍ଧକ**—ବାସ୍ତବରେ ସୁତ୍ତବିଭଙ୍ଗର ପୂରକ ଅଟେ । ଏଥିରେ ଭିକ୍ଷୁମାନଙ୍କର ଦୈନିକ ଜୀବନ ସମ୍ବନ୍ଧୀୟ ନିୟମାବଳୀ ଉଲ୍ଲେଖ କରାଯାଇଛି । ଖନ୍ଧକ ପୁଣି ଦୁଇ ଭାଗରେ ବିଭକ୍ତ ଯଥା : ମହାବଗ୍‌ଗ ଓ ଚୁଲ୍ଲବଗ୍‌ଗ । ମହାବଗ୍‌ଗରେ ୧୦ଟି ଖନ୍ଧକ (ସ୍କନ୍ଧକ) ରହିଛି । ପ୍ରଥମ ମହାସ୍କନ୍ଧକରେ ବୁଦ୍ଧଙ୍କ ବୁଦ୍ଧତ୍ୱ ଲାଭ, ଶିଷ୍ୟ-ଉପାଧ୍ୟାୟର କର୍ତ୍ତବ୍ୟ ତଥା ଉପସମ୍ପଦାଦି ସମ୍ବନ୍ଧୀୟ ତତ୍ତ୍ୱର ବିମର୍ଷ ରହିଛି । ଦ୍ୱିତୀୟଟି : ଉପୋସଥ—ସ୍କନ୍ଧକରେ ଉପୋସଥ ଏବଂ ପ୍ରାତିମୋକ୍ଷର ବିଧାନ ଏବଂ ଆବୃତ୍ତି ଆଦି ସମ୍ବନ୍ଧୀୟ ନିୟମ,

---

✝ ପ୍ରତ୍ୟେକ ମାସର କୃଷ୍ଣ ଚତୁର୍ଦ୍ଦଶୀ ତଥା ପୂର୍ଣ୍ଣିମା ଦିନକୁ 'ଉପୋସଥ' କହନ୍ତି ।

ତୃତୀୟ 'ବର୍ଷୋପନାୟିକା ସ୍କନ୍ଧକ'ରେ ଭିକ୍ଷୁମାନଙ୍କ ବର୍ଷାବାସ ସମ୍ବନ୍ଧରେ, ଚତୁର୍ଥ 'ପ୍ରବାରଣା ସ୍କନ୍ଧକ'ରେ ପ୍ରବାରଣାରେ ସ୍ଥାନ, କାଳ ଓ ବ୍ୟକ୍ତି ସମ୍ବନ୍ଧୀୟ ନିୟମ, ପଞ୍ଚମ 'ଧର୍ମ-ସ୍କନ୍ଧକ'ରେ 'ଚରଣ-ପାଦୁକା' ଜୋତା ପିନ୍ଧିବା ନିୟମ, ଷଷ୍ଠ 'ଭୈଷଜ-ସ୍କନ୍ଧକ'ରେ ଔଷଧ ସମ୍ବନ୍ଧୀୟ, ସପ୍ତମ 'କଠିନ ସ୍କନ୍ଧକ'ରେ ବସ୍ତ୍ର ସମ୍ବନ୍ଧୀୟ ନିୟମ ବର୍ଣ୍ଣିତ । ବର୍ଷାବାସର ସମାପ୍ତି ପରେ ସମସ୍ତ ସଂଘର ସନ୍ମତିକୁ ସମ୍ମାନ ପ୍ରଦର୍ଶନ ନିମିତ୍ତ କୌଣସି ଭିକ୍ଷୁଙ୍କୁ ଯେଉଁ ବସ୍ତ୍ର ଦିଆଯାଏ ତାକୁ 'କଠିନ ଚୀବର' କହନ୍ତି । ଅଷ୍ଟମ 'ଚୀବର ସ୍କନ୍ଧକ'ରେ ଚୀବର ବସ୍ତ୍ର ସମ୍ବନ୍ଧୀୟ ନିୟମ, ନବମ 'ଚମ୍ପେୟ-ସ୍କନ୍ଧକ'ରେ କର୍ମ-ଅକର୍ମ ଏବଂ ନିୟମ ବିରୁଦ୍ଧ ତଥା ନିୟମାନୁକୂଳ ଦଣ୍ଡ ସମ୍ବନ୍ଧୀୟ ବ୍ୟବସ୍ଥା ରହିଛି । ଦଶମ 'କୌଶମ୍ବକ ସ୍କନ୍ଧକ'ର କୌଶାମ୍ବୀରେ ପ୍ରଣୀତ । ସେ ସମୟରେ ଭଗବାନ ବୁଦ୍ଧ କୌଶାମ୍ବୀରେ, ଘୋଷିତାରାମ'ରେ ବିହାର କରୁଥିଲେ । ଏଥିରେ ଭିକ୍ଷୁ ସଂଘରେ କଳହ ତଥା ଧର୍ମବାଦୀ ଓ ଅଧର୍ମବାଦୀ ଆଦି ସମ୍ବନ୍ଧୀୟ ବିବରଣ ରହିଛି ।

ମହାବଗ୍‌ଗ ପରେ ଏଥିରେ ଚୁଲ୍ଲବଗ୍‌ଗ ଆସେ । ଏଥିରେ ହିଁ 'କର୍ମ, ପାରିବାସିକ, ସମୁଚ୍ଚୟ, ଶମଥ, କ୍ଷୁଦ୍ରକ ବସ୍ତୁ, ଶୟନ-ଆସନ, ସଂଘଭେଦ, ବ୍ରତ, ପ୍ରାତିମୋକ୍ଷ, ସ୍ଥାପନ ତଥା ଭିକ୍ଷୁଣୀ' ଆଦି ଦଶ ସ୍କନ୍ଧକ ରହିଛି । ବିନୟ ପିଟକରେ ଏଗାର ଓ ବାର ସ୍କନ୍ଧକରେ କ୍ରମଶଃ ରାଜଗୃହର ପ୍ରଥମ ସଂଗୀତି (ସଭା) ତଥା ବୈଶାଳୀରେ ଅନୁଷ୍ଠିତ ଦ୍ୱିତୀୟ ସଂଗୀତି ସମ୍ବନ୍ଧୀୟ ବିବରଣୀ ରହିଛି । ଓଲ୍ଡେନବର୍ଗଙ୍କ ମତରେ—ଏହି ଦୁଇ ସ୍କନ୍ଧକ ବସ୍ତୁତଃ

ବିନୟପିଟକରେ ପରେ ସଙ୍କଳିତ ହୋଇଛି ଓ ଏକ ପ୍ରକାରର ପରିଶିଷ୍ଟ ଅଟେ । ପରିବାର ବସ୍ତୁତଃ ବିନୟ ପିଟକର ମାତୃକା (ସୂଚୀ) । ଏହାର ରଚନା କାଦାଚିତ୍ ଶ୍ରୀଲଙ୍କାରେ ହୋଇ-ଥିବ ଓ ବହୁତ ପ୍ରାଚୀନତମ ରଚନା ।

## ଅଭିଧମ୍ମ ପିଟକ

ସୂତ୍ର ପିଟକରେ ଉପଦିଷ୍ଟ ସିଦ୍ଧାନ୍ତର ଆଧାର ଉପରେ ହିଁ ବସ୍ତୁତଃ 'ଅଭିଧମ୍ମ ପିଟକ' ବିକାଶ ଲାଭ କରିଛି । ନିମ୍ନୋକ୍ତ ୭ଟି ଗ୍ରନ୍ଥ ଏହାର ଅନ୍ତର୍ଗତ :

(୧) ଧମ୍ମସଂଗିଣୀ (୨) ବିଭଙ୍ଗ (୩) କଥାବତ୍ଥୁ (୪) ପୁଗ୍ଗଲପଞ୍ଞତ୍ତି (୫) ଧାତୁକଥା ଅଥବା ଧାତୁକଥାପକରଣ ୬-ଯମକ . ୭-ପଟ୍ଠାନପ୍ପକରଣ ଅଥବା ମହାପଟ୍ଠାନ ।†

ଏଗୁଡ଼ିକୁ ବୌଦ୍ଧଧର୍ମର ଦର୍ଶନଗ୍ରନ୍ଥ କୁହାଯାଏ । କିନ୍ତୁ ଏଗୁଡ଼ିକ ବ୍ରାହ୍ମଣ ଦର୍ଶନ ଗ୍ରନ୍ଥମାନଙ୍କ ଭଳି ନୁହନ୍ତି । ବୌଦ୍ଧଧର୍ମ 'ଆତ୍ମା'ର ଅସ୍ତିତ୍ୱକୁ ସ୍ୱୀକାର କରେ ନାହିଁ । ତଦନୁସାରେ ମନୁଷ୍ୟ ଚିତ୍ତ (mind) ଓ ଶରୀର (matter)ର ସଂଘାତ ମାତ୍ର । ଶରୀରକୁ ହିଁ ରୂପ କୁହାଯାଏ ଓ ଚିତ୍ତର ଚାରୋଟି ଆକାର ରହିଛି ଯଥା : ବେଦନା (feeling), ସଂଜ୍ଞା (conceptual knowledge), ସଂସ୍କାର (Synthetic mental states) ବିଜ୍ଞାନ (consciousness) । ଏହି ସଂଘାତର ଅବସ୍ଥାକୁ ଧମ୍ମ କୁହାଯାଏ । ଅଭିଧମ୍ମ

† ସବିଶେଷ ବିବରଣୀ ପାଇଁ ଦ୍ରଷ୍ଟବ୍ୟ ଗାଇଗର୍—୨୨-୨୪ ପୃ.

ପିଟକର ସର୍ବାଧିକ ପ୍ରାଚୀନ ଏବଂ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । 'ଧମ୍ମସଂଗିଣି' ରେ ବୌଦ୍ଧ ଧର୍ମର ପୂର୍ଣ୍ଣ ବିଶ୍ଳେଷଣ ଏବଂ ବିଭାଜନ କରାଯାଇଛି, ଯେପରି "କୁସଲଧମ୍ମା", "ଅକୁସଲଧମ୍ମା", "ଅଖ୍ୟାକତାଧମ୍ମ" ଆଦି । ଅଭିଧମ୍ମ ପିଟକର ଶେଷ ଛ'ଟି ଗ୍ରନ୍ଥରେ ବୌଦ୍ଧ ଧର୍ମର ସ୍ୱରୂପ ତଥା ପରସ୍ପର ସମ୍ବନ୍ଧ ଉପରେ ବିଚାର କରାଯାଇଛି । ଏଣୁ ଧର୍ମର ବର୍ଗୀକରଣ ମଧ୍ୟ ସ୍ୱଚ୍ଛ ଭାବରେ କରାଯାଇଛି । ଏ ସମ୍ପର୍କରେ ନିମ୍ନୋକ୍ତ ଗାଥା ଉଲ୍ଲେଖଯୋଗ୍ୟ—

"ତତ୍ଥ ବୁତ୍ତାଭି ଧମ୍ମତ୍ଥା ଚତୁଧା ପରମତ୍ଥତୋ ।
ଚିତ୍ତଂ ଚେତସିକଂ ରୂପଂ ନିବ୍ବାଣମିତି ସବ୍ବଥା ॥"

ଅର୍ଥାତ୍, ପରମାର୍ଥର ଦୃଷ୍ଟିରେ ଅଭିଧର୍ମରେ ଚାରୋଟି ବିଷୟ ଉକ୍ତ ସ୍ତ—୧. (କୌଣସି ବସ୍ତୁକୁ ଜାଣିବା ଭଳି) ଚିତ୍ତ ୨. (ଚିତ୍ତ ସହ ସଂଯୁକ୍ତ ରହୁଥିବା) ଚୈତସିକ ୩. (ବିକାର ସ୍ୱଭାବ) ରୂପ ଓ ୪. (ତୃଷ୍ଣାରୁ ବିମୁକ୍ତ) ନିର୍ବାଣ ।

ଉପରେ ଅଭିଧମ୍ମ ପିଟକର ସାତୋଟି ଗ୍ରନ୍ଥରେ : କଥାବସ୍ତୁର ବି ନାମ ଉଲ୍ଲେଖ କରାଯାଇଛି । ପରମ୍ପରାନୁସାରେ କଥାବସ୍ତୁର ସଂଗାୟନ ବୌଦ୍ଧ ଧର୍ମର ତୃତୀୟ ସଂଗୀତିରେ ସମ୍ରାଟ ଅଶୋକଙ୍କ ଗୁରୁ ମୋଗଗଲପୁତ୍ତ ତିସ୍ସ କରିଥିଲେ । ବୌଦ୍ଧ ସଂଘରେ ଯେଉଁ ଅନେକ ଭ୍ରାନ୍ତଧାରଣା ପ୍ରଚଳିତ ହୋଇଥିଲା ତାର ନିରାକରଣ କରି ସେ 'ବିଭଜ୍ଜବାଦ'ର ସଂସ୍ଥାପନା କଲେ ।

୨

# ତ୍ରିପିଟକେତ୍ତର ପାଲିସାହିତ୍ୟ

**ପ୍ରଥମ ଯୁଗ :** ( ତ୍ରିପିଟକର ସମାପ୍ତିଠାରୁ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ )— **ଦ୍ୱିତୀୟ ଯୁଗ :** ( ୫ମ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ )— **ତୃତୀୟ ଯୁଗ :** ( ଦ୍ୱାଦଶ ଶତାବ୍ଦୀରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ।

## ପ୍ରଥମ ଯୁଗ

ଆରଣ୍ୟ ପରଂପରାନୁସାରେ ମହିନ୍ଦ (ମହେନ୍ଦ୍ର) ଆପଣାର ସିଂହଳ (ଶ୍ରୀଲଙ୍କା) ଯାତ୍ରାକାଳରେ ତ୍ରିପିଟକ ତଥା ଅଟ୍ଠ କଥା ସଙ୍ଗରେ ନେଇଥିଲେ । ଏହି ଅଟ୍ଠ କଥା ସାହିତ୍ୟର ଆଧାରରେ ବୁଦ୍ଧଘୋଷ ଆପଣାର ଅଟ୍ଠ କଥା ଲେଖିଥିଲେ ଓ ଦୀପବଂସ ତଥା ଅନ୍ୟ ଇତିହାସ ସମ୍ବନ୍ଧୀୟ ଗ୍ରନ୍ଥର ଆଧାରଭୂତ ଏହି ଅଟ୍ଠ କଥା ଗୁଡ଼ିକ । ଏଗୁଡ଼ିକର ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଶ୍ରୀଲଙ୍କାରେ ପ୍ରଚଳିତ ଥିବା କଥା ଅନୁମାନ କରାଯାଏ । ବିନୟପିଟକରେ ଅଟ୍ଠ କଥା 'ସମନ୍ତ ପାସାଦିକା'ର ଆରମ୍ଭର ଗାଥାରେ ବୁଦ୍ଧଘୋଷ ଆପଣା ଏହି ଗ୍ରନ୍ଥର ଆଧାର ଅଟ୍ଠ କଥା ବୋଲି ଉଲ୍ଲେଖ କରିଛନ୍ତି । ବୁଦ୍ଧ ଘୋଷଙ୍କ ଅନୁସାରେ ଏଗୁଡ଼ିକ ପ୍ରାଚୀନ ସିଂହଳ ଭାଷାରେ ଥିଲା ।

ବୁଦ୍ଧଶ୍ରୀ (=ବୁଦ୍ଧଶ୍ରୀ) ଥେର (=ସ୍ଥବିର) ଙ୍କ ପ୍ରେରଣାରେ ସେ ଏହି ଅଟ୍ଠ କଥାଗୁଡ଼ିକୁ ସିଂହଳୀରୁ ପାଲିକୁ ଅନୁବାଦ କଲେ ।*

ବୁଦ୍ଧଘୋଷଙ୍କ କୃତିର ମୁଖ୍ୟ ଆଧାର ଥିଲା ମହା-ଅଟ୍ଠ କଥା । ଏତଦ୍‌ଭିନ୍ନ ସେ 'ମହାପଚ୍ଚରୀ' ତଥା ତଥା କୁରୁଣ୍ଡୀ-ଅଟ୍ଠ କଥାରୁ ମଧ୍ୟ ସାହାଯ୍ୟ ନେଇଥିଲେ । 'ସଦ୍ଧମ୍ମ-ସଂଗହ' (୧୪ଶ ଶତାବ୍ଦୀ) ଅନୁସାରେ 'ସୁତ୍ତପିଟକ'ର 'ମହା ଅଟ୍ଠ କଥା', ଅଭିଧମ୍ମର 'ମହାପଚ୍ଚରୀ ଅଟ୍ଠ କଥା' ତଥା ବିନୟପିଟକର 'କୁରୁଣ୍ଡୀ ଅଟ୍ଠ କଥା' ଇତ୍ୟାଦିର ଉଲ୍ଲେଖ ଅଛି ।** ଗନ୍ଧବଂଶରେ ମଧ୍ୟ ଏହି ତିନି ଅଟ୍ଠ କଥାର ପ୍ରଣେତା ପୋରାଣ (ପ୍ରାଚୀନ ଆର୍ଯ୍ୟଗଣ) ବୋଲି କୁହାଯାଏ । ଏଥିରୁ ସ୍ପଷ୍ଟ ଉପଲବ୍‌ଧ ଯେ ଶେଷ ଦୁଇଟି ଅଟ୍ଠ କଥା ପରବର୍ତ୍ତୀ ରଚନା । ବର୍ତ୍ତମାନ ପ୍ରାଚୀନ ସିଂହଳୀରେ ଲିଖିତ ଅଟ୍ଠ କଥାର ଉପଲବ୍‌ଧି ନାହିଁ ।

ବୁଦ୍ଧ ଘୋଷଙ୍କ ପୂର୍ବର ଦୁଇଟି ପୁସ୍ତକ—'ନେତ୍ତିପ୍ପକରଣ' ଅଥବା 'ନେତ୍ତି' ଏବଂ "ପେଟକୋପଦେଶକୁ" ବର୍ମାରେ ତ୍ରିପିଟକା-

* ଦ୍ରଷ୍ଟବ୍ୟ : ଗାଇଗର୍—ପୃ ୨୫

**, ଦ୍ରଷ୍ଟବ୍ୟ : According to the Saddhammasamgaha (14th Century) the Maha-Attha Katha was the commentary on the Suttapitak, the Mahapaccari on the Abhidhamma, and Krunudi on Vinaya. ( ଗାଇଗର୍ ପୃ-୨୫ )

ଗ୍ରନ୍ଥ ବୋଲି ମାନନ୍ତି ।† ଏଗୁଡ଼ିକ ନାମରୁ ହିଁ ସ୍ପଷ୍ଟ ବୁଝାଯାଏ ଯେ ଏ ଦୁଇଟି ଗ୍ରନ୍ଥ ବସ୍ତୁତଃ ବୁଦ୍ଧଙ୍କ ଶିକ୍ଷାର ଭୂମିକା ମାତ୍ର । ଏହାର ପ୍ରଣେତା ବୁଦ୍ଧଙ୍କ ପ୍ରସିଦ୍ଧ ଶିଷ୍ୟ ମହାକଚ୍ଚାୟନ । କେତେକ ଏହାକୁ ଠିକ୍ ବୋଲି ଗ୍ରହଣ କରନ୍ତିନି । ସମ୍ଭବତଃ ଲେଖକଙ୍କ ନାମ କଚ୍ଚାୟନ ଯେହେତୁ ସେ ବୁଦ୍ଧଙ୍କ ପ୍ରସିଦ୍ଧ ଶିଷ୍ୟ ତେଣୁ କରି ସେ "ମହା କଚ୍ଚାୟନ" ନାମରେ ନାମିତ । E Hardy ଏହି ନେତ୍ତିର କାଳନିର୍ଣ୍ଣୟ ପ୍ରସଙ୍ଗରେ ଲେଖନ୍ତି ଏହା ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ରଚିତ' । 'ନେତ୍ତି' ତଥା 'ପେଟକ' ଗ୍ରନ୍ଥରେ ସୁତ୍ତ ସଂଗହର ଉଲ୍ଲେଖ ଆବଶ୍ୟକ । ଗ୍ରନ୍ଥ ସଂଗ୍ରହର ଲେଖକ ଓ ଏହାର କାଳ ନିର୍ଣ୍ଣୟ ଅଦ୍ୟାବଧି ଅଜ୍ଞାତ । ଏହାର ଉଲ୍ଲେଖ ଏହି କରାଗଲା କାରଣ ନେତ୍ତି ଓ ପେଟକ ଏବଂ ମିଲିନ୍ଦପଞ୍ହୋ ମଧ୍ୟ ସମସାମୟିକ ବର୍ମାରେ ଏହି ଗ୍ରନ୍ଥକୁ ଖୁଦ୍ଦକନିକାୟ ଅନ୍ତର୍ଗତ ବୋଲି କହନ୍ତି ।

**ମିଲିନ୍ଦ ପଞ୍ହୋ**—(ମିଲିନ୍ଦ ପ୍ରଶ୍ନ) ରାଜା ମିଲିନ୍ଦ ତଥା ଭିକ୍ଷୁ ନାଗସେନଙ୍କ ପ୍ରଶ୍ନୋତ୍ତର ବର୍ଣ୍ଣିତ । ଏହା ପୂର୍ଣ୍ଣଖଣ୍ଡରେ ସ୍ଥବିରବାଦୀ ଦୃଷ୍ଟିକୋଣରୁ ପ୍ରଣୀତ ଓ ବୌଦ୍ଧ ସମାଜରେ ଏହାର ଖୁବ୍ ପ୍ରଚାର ଦେଖାଯାଏ । ବୁଦ୍ଧଘୋଷ (୫ମ ଶତାବ୍ଦୀ) ପର୍ଯ୍ୟନ୍ତ "ମିଲିନ୍ଦ ପ୍ରଶ୍ନ" ଲୋକଙ୍କ ମଧ୍ୟରେ ପର୍ଯ୍ୟାପ୍ତ ପ୍ରସିଦ୍ଧି ଲାଭ କରିଥିଲା । ସମ୍ଭବତଃ ଏହା ପ୍ରଥମ ଖ୍ରୀଷ୍ଟାବ୍ଦରେ ଲିଖିତ, କାରଣ ସେ ସମୟରେ ମିଲିନ୍ଦଙ୍କ ନାମ ଉତ୍ତର ଭାରତରେ ସୁପରିଚିତ । ଏହାର ପ୍ରଣେତାଙ୍କ

---

† In Burma these two works are regarded as cano nical. M, Bode. Pali literature of Burma. ପୃ. ୪, ଗାଇଗର୍ ପୃ. ୨୬ ।

ନାମ ଅଦ୍ୟାବଧି ଅଜ୍ଞାତ । କେତେକ ବିଦ୍ୱାନଙ୍କ ମତରେ ଏହା ମୂଳତଃ ସଂସ୍କୃତ ଅଥବା ଅନ୍ୟ କୌଣସି ପ୍ରାକୃତରେ ଲେଖା ଯାଇଥିଲା । ଓ ପରେ ଏହାର ପାଲି ଅନୁବାଦ କରାଗଲା । ପାଲି ବ୍ୟତୀତ ମିଳିନ୍ଦ ପ୍ରଶ୍ନର ଏକ ସଂକ୍ଷିପ୍ତ ସଂସ୍କରଣ—ଚୀନ ଭାଷାରେ ମିଳେ । ବହୁ ବିସ୍ତୃତ ବିବରଣୀରୁ ସ୍ପଷ୍ଟ ହୁଏ ଯେ ମିଳିନ୍ଦ-ପ୍ରଶ୍ନ ସଂସ୍କୃତରେ ପ୍ରଥମେ ଲିଖିତ ଓ ପରେ ପାଲି ତଥା ଅନ୍ୟ ଚୀନ ଭାଷାରେ ଏହାର ଅନୁବାଦ କରାଗଲା । ମିଳିନ୍ଦ ପ୍ରଶ୍ନ ଛ' ଭାଗରେ ବିଭକ୍ତ : (୧) ପୂର୍ବଯୋଗ (୨) ମିଳିନ୍ଦ ପ୍ରଶ୍ନ (୩) ଲକ୍ଷଣ ପ୍ରଶ୍ନ (୪) ମେଣ୍ଡକ ପ୍ରଶ୍ନ (୫) ଅନୁମାନ ପ୍ରଶ୍ନ ଓ (୬) ଉପମା କଥା ପ୍ରଶ୍ନ । ପୁଣି ମିଳିନ୍ଦ ପ୍ରଶ୍ନର ଦୁଇଟି ଭାଗ ରହିଛି ଯଥା : ଲକ୍ଷଣ ଓ ବିମତିଚ୍ଛେଦନ ଓ ମେଣ୍ଡକ ପ୍ରଶ୍ନର ମଧ୍ୟାବର୍ତ୍ତ ଓ ଯୋଗୀ କଥା ।

ବୁଦ୍ଧ ଘୋଷରେ ବହୁପୂର୍ବରୁ ହିଁ ଏ ପୁସ୍ତକର ରଚନା ସରିଥିଲା । ମୂଳତଃ ଏହା ମହାସେନଙ୍କ ରାଜତ୍ୱକାଳ (ଖ୍ରୀ: ୩୨୫-୩୫୨ ପର୍ଯ୍ୟନ୍ତ)ର ଶ୍ରୀଲଙ୍କାର ଇତିହାସ ଅଟେ । ଯେହେତୁ ବୁଦ୍ଧଘୋଷ ଏହାକୁ ଜାଣିଥିଲେ ତେଣୁ ଏହାର ରଚନାକାଳ ଖ୍ରୀ. ୩୫୦-୪୫୦ ମଧ୍ୟରେ ହୋଇପାରେ । ସାହିତ୍ୟିକ ଦୃଷ୍ଟିକୋଣରୁ ଏହାର କୌଣସି ମହତ୍ତ୍ୱ ନାହିଁ କିନ୍ତୁ ଐତିହାସିକ ଦୃଷ୍ଟିକୋଣରୁ ଏହାର ମହତ୍ତ୍ୱ ଖୁବ୍ ଉଲ୍ଲେଖଯୋଗ୍ୟ । ଏହାର ପ୍ରଣେତା ଅଟ୍ଠକଥାରୁ କଥା ସାମଗ୍ରୀ ଉଦ୍ଧାର କରି ଏହି ରଚନା କରିଛନ୍ତି ।

ପ୍ରାଚୀନ ଭାରତୀୟ ପରମ୍ପରା ସଂପର୍କୀୟ ବହୁ ତଥ୍ୟ ରହିଥିବା ଯୋଗୁଁ ଏହାକୁ ଗାଇଗର୍—"the vehicle of an old historical tradition" ବୋଲି ମତ ଦିଅନ୍ତି ।

## ଦ୍ୱିତୀୟ ଯୁଗ

ପାଲି ସାହିତ୍ୟର ଦ୍ୱିତୀୟ ଯୁଗର ପ୍ରାରମ୍ଭ ତ୍ରିପିଟକର ଅଟ୍‌ଠକଥା ଠାରୁ ଆରମ୍ଭ ହୁଏ । ପାଲି-ଅଟ୍‌ଠକଥାର ଆଧାରରେ ପ୍ରାଚୀନ ସିଂହଳୀରେ ଲିଖିତ ଅଟ୍‌ଠକଥା ରହିଛି । ଏହି ଅଟ୍‌ଠକଥାର ପ୍ରଣେତା ଆଚାର୍ଯ୍ୟ ବୁଦ୍ଧଘୋଷ । ଶ୍ରୀଲଙ୍କାର ରାଜା ମହାନାମ (୪୫୮-୪୮୦)ଙ୍କ ଶାସନକାଳରେ ଭାରତରୁ ସେ ସିଂହଳ ଯାତ୍ରା କଲେ । ଅନୁରାଧାପୁରର ମହାବିହାରର ସେ ତ୍ରିପିଟକ ଗ୍ରନ୍ଥ ତାର ଅଟ୍‌ଠକଥାଗୁଡ଼ିକର ଗମ୍ଭୀର ତାତ୍ତ୍ୱିକ ଅଧ୍ୟୟନ କଲେ ଓ ପରେ ପାଲି ଅଟ୍‌ଠକଥାଗୁଡ଼ିକର ପ୍ରଣୟନ ପାଇଁ ପ୍ରବୃତ୍ତ ହେଲେ । ସେ ନିମ୍ନୋକ୍ତ ଅଟ୍‌ଠକଥାର ଲେଖକ :

୧. ବିନୟ ପିଟକ—(୧) ସମନ୍ତ ପାସାଦିକା-ବିନୟ ପିଟକର ଅଟ୍‌ଠକଥା ।
(୨) କଂଖାବିତରଣୀ— ପାତିମୋକ୍ଖର ଅଟ୍‌ଠକଥା ।

୨. ସୁତ୍ତ ପିଟକ— (୩) ସୁମଙ୍ଗଲ ବିଲାସିନୀ— ଦୀଘନିକାୟର ଅଟ୍‌ଠକଥା ।
(୪) ପପଞ୍ଚ ସୂଦନୀ-ମଜ୍‌ଝିମନିକାୟର ଅଟ୍‌ଠକଥା ।
(୫) ସାରତ୍ଥପକାସିନୀ—ସଂଯୁକ୍ତ ନିକାୟର ଅଟ୍‌ଠକଥା ।
(୬) ମନୋରଥ ପୂରଣୀ— ଅଙ୍ଗୁତ୍ତର ନିକାୟର ଅଟ୍‌ଠକଥା ।

(୭) ପରମତ୍ଥଜୋତିକା—ଖୁଦ୍ଦକନିକାୟର 'ଖୁଦ୍ଦକ ପାଠ' ତଥା ସୁତ୍ତ ନିପାତର ଅଟ୍ଠକଥା ।

୩. ଅଭିଧମ୍ମ ପିଟକ (୮) ଅଟ୍ଠସାଲିନୀ— ଧମ୍ମସଂଗଣୀର ଅଟ୍ଠକଥା

(୯) ସମ୍ମୋହ ବିନୋଦନୀ—ବିଭଙ୍ଗର ଅଟ୍ଠକଥା ।

(୧୦) ପଞ୍ଚପ୍ପକରଣ ଅଟ୍ଠକଥା—ଅଭିଧମ୍ମ ପିଟକର "ଧାତୁକଥା", "ପୁଗ୍ଗଲପଞ୍ଞତ୍ତି", "ପଟ୍ଠାନପ୍ପକରଣ"ର ଅଟ୍ଠକଥା ।

ଅଭିଧମ୍ମ ପିଟକର ଅଟ୍ଠକଥା ସାମାନ୍ୟ ରୂପରେ 'ପରମତ୍ଥକଥା' ନାମରେ ଅଭିହିତ କରାଯାଏ । ଏତଦ୍ ବ୍ୟତୀତ ଜାତକ, ଧମ୍ମପଦ ତଥା ଅପାଦାନର ଅଟ୍ଠକଥାର ପ୍ରଣେତା ବୁଦ୍ଧଘୋଷ ବୋଲି କୁହାଯାଏ । କଥିତ ଅଛି ଯେ ସିଂହଳ ଯିବା ପୂର୍ବରୁ ସେ 'ଞାଣୋଦୟ' 'ଅଟ୍ଠସାଲିନୀ'ର ପ୍ରଣୟନ କରି ନେଇଥିଲେ ।

ଅଟ୍ଠକଥା ବ୍ୟତୀତ ବୁଦ୍ଧଘୋଷଙ୍କ ସବୁଠାରୁ ପ୍ରସିଦ୍ଧ କୃତି "ବିସୁଦ୍ଧି ମଗ୍ଗ (ବିଶୁଦ୍ଧ ମାର୍ଗ)" ଅଟେ । ଏଥିରେ ବୌଦ୍ଧ ଧର୍ମର ସିଦ୍ଧାନ୍ତଗୁଡ଼ିକର ସ୍ପଷ୍ଟୀକରଣ କରାଯାଇଛି । ଏ ଗ୍ରନ୍ଥର ଆରମ୍ଭ ଅତ୍ୟନ୍ତ ରୋଚକପୂର୍ଣ୍ଣ । ଶ୍ରାବସ୍ତୀରେ ବିହାର କାଳରେ ଭଗବାନ ବୁଦ୍ଧଙ୍କ ସମୀପରେ ଦେବପୁତ୍ର କୌଣସି ରାତ୍ରରେ ଆସି ଆପଣା ଭ୍ରମ ମିଟାଇବା ପାଇଁ ନିମ୍ନୋକ୍ତ ପ୍ରଶ୍ନ ପଚାରିଥିଲେ—

ଅନ୍ତୋ ଜଟା ବହି ଜଟା ଜଟାୟ ଜଟିତା ପଜା ।
ତଂ ତଂ ଗୋତମ ପୁଚ୍ଛାମି କୋ ଇମଂ ବିଜଟୟେ ଜଟନ୍ତି ॥

ଏହାର ସଂକ୍ଷିପ୍ତ ଅର୍ଥ ହେଲା—ଭିତରେ ଓ ବାହାରେ ଥିବା ଜଟାରେ ( ଅର୍ଥାତ୍ ସ୍ୱାତ୍ମଭାବ ଓ ପରାତ୍ମଭାବରେ ତଥା ଆଧ୍ୟାତ୍ମିକତା ଓ ବାହ୍ୟଆସକ୍ତିରେ ) ପ୍ରଜାମାନେ ଜଡିତ । 'ହେ ଗୌତମ ! ହେ ବୁଦ୍ଧ ! ଏଇଥି ପାଇଁ ମୁଁ ଆପଣଙ୍କୁ ପଚାରୁଛି କି କିଏ ଏହି ଜଟାକୁ ବିଜଟିତ କରେ ?'

ଏ ପ୍ରଶ୍ନର ଉତ୍ତରରେ ସର୍ବଧର୍ମରେ ଅପ୍ରତିହତ ଜ୍ଞାନୀ, ଦେବଙ୍କ ଦେବ, ଇନ୍ଦ୍ରମାନଙ୍କ ଇନ୍ଦ୍ର, ବ୍ରହ୍ମାଙ୍କ ବ୍ରହ୍ମା, ଚତୁଃ-ବୈଶାରଦ୍ୟମାନଙ୍କ ମଧ୍ୟରେ ବିଶାରଦ, ଦଶବଳ ଧାରଣ କରିଥିବା ସର୍ବଜ୍ଞ, ସର୍ବଦ୍ରଷ୍ଟା ଭଗବାନ ବୁଦ୍ଧ କହିଲେ—

ସୀଲେ ପତିଟ୍ଠାୟ ନରୋ ସପଞ୍ଞୋ
ଚିତ୍ତଂ ପଞ୍ଞଞ୍ଚ-ଭାବୟଂ
ଆତାପୀ ନିପକୋ ଭିକ୍ଖୁ
ସୋ ଇମଂ ବିଜଟୟେ ଜଟନ୍ତି ।

ଅର୍ଥାତ୍, ଶୀଳରେ ପ୍ରତିଷ୍ଠିତ ହୋଇ ସମାଧି ତଥା ବିଦର୍ଶନାର ଭାବନା କରୁଥିବା ବୀର୍ଯ୍ୟବାନ୍ ତଥା ପ୍ରଜ୍ଞାବାନ୍ ଭିକ୍ଷୁ ଏହି ଜଟାକୁ ବିଜଟିତ କରିବାରେ ସମର୍ଥ ।

ଶୀଳ, ସମାଧି ଓ ପ୍ରଜ୍ଞା ଏହି ତିନି ବର୍ଗରେ ହିଁ ବିଶୁଦ୍ଧି ମଗ୍ଗ ବିଭକ୍ତ । ଏହି ଗ୍ରନ୍ଥ ସଂସ୍କୃତର ଶାସ୍ତ୍ରୀୟ ଶୈଳୀରେ ପାଲି ଭାଷାରେ ଲିଖିତ ।

## ଜାତକ ଓ ଜାତକଟ୍‌ଠ କଥା :

ତିପିଟକରେ ଯେଉଁ ଜାତକ (ଗ୍ରନ୍ଥ) ଉଦ୍ଦିଷ୍ଟ ତାହା କେବଳ ଗାଥା ସଂଗ୍ରହ ମାତ୍ର । ଯେପରି ଧମ୍ମପଦ୍ ଓ ଧମ୍ମପଦ ଅଟ୍‌ଠ ଗାଥା ଦୁଇଟି ଭିନ୍ନ ରଚନା ଠିକ୍ ସେହିପରି ଜାତକ ଓ ଜାତକଟ୍‌ଠକଥା ପୃଥକ୍ ରଚନା । ଧମ୍ମପଦର ଅର୍ଥ ଯେପରି ଧମ୍ମପଦ ଅଟ୍‌ଠକଥା ବ୍ୟତୀତ ଅସଂପୂର୍ଣ୍ଣ ବୋଧହୁଏ ଠିକ୍ ସେହିପରି ଜାତକଟ୍‌ଠ କଥା ବିନା ଜାତକର ମୂଲ୍ୟ ଅସଂପୂର୍ଣ୍ଣ ।

ଜାତକରେ କେବଳ ଭଗବାନ ବୁଦ୍ଧଙ୍କ ପୂର୍ବଜନ୍ମ ସମ୍ବନ୍ଧୀୟ ଗାଥା ଭରପୂର । 'ଜାତକଟ୍‌ଠକଥା'ରେ ଅଟ୍‌ଠକଥା ସମ୍ବିତ ପ୍ରକୃତ ଜାତକ କଥା ଆରମ୍ଭ ହେବା ପୂର୍ବରୁ ନିଦାନ କଥା ନାମକ ଏକ ଲମ୍ବା ଉପୋଦ୍‌ଘାତ ରହିଛି । ଏଥିରେ ସିଦ୍ଧାର୍ଥ ଗୌତମ ବୁଦ୍ଧଙ୍କ ଜୀବନ ଚରିତ ସହ ତାଙ୍କ ପୂର୍ବର ୨୭ ବୁଦ୍ଧଙ୍କ ଜୀବନ ଚରିତ ରହିଛି । ଏହା ବୁଦ୍ଧବଂସରୁ ଉଦ୍ଧୃତ କରାଗଲା ପରି ପ୍ରତୀତ ହୁଏ ।

ଜାତକଟ୍‌ଠକଥା ତିନି ଭାଗରେ ବିଭକ୍ତ, ଯଥା : ୧: ଦୂରେ ନିଦାନ, ୨. ଅବିଦୂରେ ନିଦାନ ଓ ୩. ସନ୍ତିକେ ନିଦାନ । ବୋଧିସତ୍ତ୍ୱ ଯେତେବେଳେ ସୁଭେଧ ତପସ୍ୱୀଙ୍କ ରୂପରେ ଜନ୍ମଗ୍ରହଣ କରି ଦୀପଙ୍କରଙ୍କ ଚରଣରେ ଜୀବନ ସମର୍ପଣ କଲେ । ସେ ସମୟରୁ ବୋଧିସତ୍ତ୍ୱଙ୍କ ଶରୀରତ୍ୟାଗ, ତୁଷିତ ସ୍ୱର୍ଗଲୋକରେ ଉତ୍ପନ୍ନ ହେବା ପର୍ଯ୍ୟନ୍ତ 'ଦୂରେ ନିଦାନ' କୁହାଯାଏ । ତୁଷିତ ଲୋକରୁ ଚ୍ୟୁତ ହୋଇ ମହାମାୟୀ ଦେବୀଙ୍କ ଗର୍ଭରେ ଉତ୍ପନ୍ନ ହୋଇ

ବୋଧିଗୟାରେ ବୁଦ୍ଧତ୍ୱ ପ୍ରାପ୍ତ ପର୍ଯ୍ୟନ୍ତ 'ଅବିଦୂରେ ନିଦାନ' ଭାବେ ପରିଚିତ । ଯେଉଁଠ ଭଗବାନ୍ ବୁଦ୍ଧ ବିହାର କାଳରେ ଜାତକ କଥା କହିଲେ ସେ ସ୍ଥଳରେ ଯେଉଁ ଉଲ୍ଲେଖ ରହିଛି ତାହା ସନ୍ତିକେ ନିଦାନ ଅଟେ ।

ଯେତେ ସବୁ ଜାତକ କଥା ରହିଛି ସେଗୁଡ଼ିକ 'ଦୂରେ ନିଦାନ' ଅନ୍ତର୍ଗତ । ପ୍ରତ୍ୟେକ ଜାତକ କଥା ଗୃଣ ଭାଗରେ ବିଭକ୍ତ । ପଚ୍ଚୁପ୍ପନ୍ନବତ୍ଥୁ, ଅତୀତବତ୍ଥୁ, ଅଟ୍‌ଠବଣ୍ଣନା ଓ ସମୋଧାନ ।

ଜାତକ କଥା ବସ୍ତୁତଃ ଭାରତର ପ୍ରାଚୀନତମ କଥା । ଏଥିରେ ଅଧିକାଂଶରେ ମୌଖିକ ପରମ୍ପରା ପ୍ରାଚୀନ କାଳରୁ ପର୍ଚ୍ଚିତ । ଏଣୁ ଏଥିରେ ବୌଦ୍ଧ ଓ ଅବୌଦ୍ଧ ସଂପ୍ରଦାୟର ସମାନ ଅଧିକାର ରହିଛି । ଭଦନ୍ତ ଆନନ୍ଦ କୌସଲ୍ୟାୟନଙ୍କ ମତରେ— "ପ୍ରାଚୀନ କାଳର କଥା ସାହିତ୍ୟ ଆଜକାଲିକା ଭଳି ବୌଦ୍ଧ ଓ ଅବୌଦ୍ଧ ବିଭାଗରେ ବିଭକ୍ତ ହୋଇଥିଲା । ସେ ସମୟରେ ଗୋଟିଏ କଥା ବୌଦ୍ଧ ସଂପ୍ରଦାୟ ହାତରେ ବୌଦ୍ଧରୂପ ଓ ଅବୌଦ୍ଧ କଳାକାରଙ୍କ ହାତରେ ଅବୌଦ୍ଧରୂପ ଧାରଣ କରୁଥିଲା ।"†

ଏହି ଜାତକଟ୍‌ଠକଥାର ରଚୟିତା ଅଥବା ସଂଗ୍ରହକର୍ତ୍ତା କିଏ ? ଗାଇଗର୍‌ଙ୍କ ଅନୁମାନ—ଏହାର ପ୍ରଣେତା ଶ୍ରୀଲଙ୍କାର

† ଆନନ୍ଦ କୌସଲ୍ୟାୟନ-ଜାତକ• (ପ୍ରଥମ ଖଣ୍ଡ)ର ଭୂମିକା ପୃ. ୨୫—୨୬ ।

କୌଣସି ସ୍ଥବିର ହୋଇଥାଇ ପାରନ୍ତି । ସମ୍ଭବତଃ ସେହି ଲେଖକ ବୁଦ୍ଧଘୋଷ ଅଥବା ତାଙ୍କ ସମସାମୟିକ କୌଣସି ବ୍ୟକ୍ତିଙ୍କ ମଧ୍ୟରୁ ଅନ୍ୟ କିଏ ହୋଇ ପାରନ୍ତି ।

**ଧମ୍ମପଦଟ୍ଠକଥା**—ବସ୍ତୁତଃ ଜାତକକଥା ପରବର୍ତ୍ତୀ ରଚନା । ଏହାର ପ୍ରଥମଗାଥାରୁ ସ୍ପଷ୍ଟ ପ୍ରମାଣିତ ଯେ ଏହାର ମୂଳ ସିଂହଳୀ ଅଟ୍ଠକଥାରୁ ହିଁ ପାଳିଭାଷାରେ ଅନୂଦିତ । କତିପୟ ବିଦ୍ୱାନଙ୍କ ମତ ଏହିକି ବୁଦ୍ଧଘୋଷ ଏହାର ରଚୟିତା ନୁହନ୍ତି, କିନ୍ତୁ ଖୁବ୍ ସମ୍ଭବ କୌଣସି ପୁରାତନ ଅଟ୍ଠକଥାର ଆଧାରରେ ଏହା ଲିଖିତ । ଧମ୍ମପଦଟ୍ଠକଥାରେ ପ୍ରତ୍ୟେକ ଗାଥା ଅଥବା ଗାଥାସମୂହର ରଚନା-ସ୍ଥାନ ତଥା ଅବସର ସମ୍ବନ୍ଧରେ ନିର୍ଦ୍ଦେଶ ମିଳେ । ପ୍ରଥମେ ଧର୍ମଦେସନା (ଧର୍ମୋପଦେଶ) ରୂପରେ ବୁଦ୍ଧ କାହାଣୀ କୁହନ୍ତି ଓ ଶେଷରେ ଗାଥାରୂପରେ କୁହନ୍ତି । ଧମ୍ମପଦଟ୍ଠକଥା ଜାତକଟ୍ଠକଥାର ମୂଳକ ଅଟେ । ଏହାର କାହାଣୀ ମଧ୍ୟରେ ବୌଦ୍ଧଧର୍ମ ସମ୍ବନ୍ଧୀୟ ଭାବନା ଅନ୍ତର୍ନିହିତ । ଏଥିରେ କିସା ଗୋତମୀ କଥା ରହିଛି । ଏଥିରେ ସ୍ଥଳବିଶେଷରେ ଜାତକ, ନିକାୟ, ବିମାନବତ୍ଥୁ, ପେତବତ୍ଥୁ, ଥେରୀଗାଥା ତଥା ବିନୟ ପିଟକର ଉଦ୍ଧରଣ ମିଳେ ।

ବୁଦ୍ଧଦତ୍ତ ବୁଦ୍ଧଘୋଷଙ୍କ ସମକାଳୀନ ବୁଦ୍ଧବଂସ ସହାୟତାରେ "ମଧୁରତ୍ଥବିଲାସିନୀ" ଅଥବା "ମଧୁରତ୍ଥପକାସିନୀ" ନାମକ ଅଟ୍ଠକଥାର ରଚନା କରିଥିଲେ । ଏହାଙ୍କ ଅନ୍ୟାନ୍ୟ କୃତି ମଧ୍ୟରେ ବିନୟବିନିଚ୍ଛୟ, ଉତ୍ତର ବିନିଚ୍ଛୟ, ଅଭିଧମ୍ମାବତାର ତଥା ଜିନାଲଙ୍କାର ଅନ୍ୟତମ । ଏଥି ମଧ୍ୟରେ 'ବିନୟବିନିଚ୍ଛୟ'

ଓ 'ଉତ୍ତର ବିନିଚ୍ଚୟ' ବିନୟ ପିଟକ ସମ୍ବନ୍ଧୀୟ ରଚନା । ସେହିପରି ଅଭିଧମ୍ମାବତାର ଅଭିଧମ୍ମପିଟକ ସମ୍ବନ୍ଧୀୟ । ବୁଦ୍ଧ ଦତ୍ତଙ୍କ ମତରେ ଆନନ୍ଦଙ୍କ ନାମ ଆସେ । ସେ ମୂଳଟୀକା ଅଥବା ଅଭିଧମ୍ମ ମୂଳଟୀକାର ରଚୟିତା । ଏହା ଅଭିଧମ୍ମ ଅଟ୍ଠକଥା ଉପରେ ରଚିତ ସବୁଠାରୁ ପ୍ରାଚୀନତମ ଟୀକା । ଆଚାର୍ଯ୍ୟ ବୁଦ୍ଧମିତ୍ରଙ୍କ ପ୍ରେରଣାରେ ବୁଦ୍ଧଦତ୍ତ ଏହି ଟୀକା ରଚନା କଲେ । ଆନନ୍ଦ ବୁଦ୍ଧଘୋଷଙ୍କ ସମକାଳୀନ ଅଟନ୍ତି ।

ଖୁଦ୍ଦକନିକାୟର କତିପୟ ଗ୍ରନ୍ଥ-ଉଦାନ, ଇତିବୁତ୍ତକ, ବିମାନ ଓ ପେତବତ୍ଥୁ, ଥେର ତଥା ଥେରୀଗାଥା ଏବଂ ଚରିୟା-ପିଟକ ସମ୍ବନ୍ଧୀୟ କୌଣସି ଟୀକା ବୁଦ୍ଧଘୋଷ ଲେଖି ନାହାନ୍ତି । ଅତଏବ ଧମ୍ମପାଲ ଏହା ସମ୍ପର୍କରେ "ପରମତ୍ଥଦୀପନୀ" ଟୀକା ଲେଖିଥିଲେ । ନିମ୍ନୋକ୍ତ କେତେକ ରଚନା ଧମ୍ମପାଲଙ୍କ କୃତି —

୧ ମହାଟୀକା ଅଥବା ପରମତ୍ଥ ମଂଜୁଷା — ବିସୁଦ୍ଧିମଗ୍ଗର ଟୀକା ।

୨ ନେତ୍ତିପ୍ପକରଣସ୍ସ ଅତ୍ଥ ବଣ୍ଣନା — ଏହା ନେତ୍ତିର ଟୀକା ।

୩ ଲୀନାତ୍ଥ ବଣ୍ଣନା ।

୪ ଲୀନାତ୍ଥ ପକାସିନୀ — ଏହା ଚାରି ନିକାୟ ଯଥା :- ଦୀଘ, ମଜ୍ଝିମ, ସଂଯୁତ୍ତ ଓ ଅଙ୍ଗୁତ୍ତରର ଅଟ୍ଠକଥା ଉପରେ ଟୀକା ।

୫ ଜାତକଟ୍ଠକଥା ।

୬ ବୁଦ୍ଧଦତ୍ତଙ୍କ ଅଟ୍ଠକଥାର ଅନୁଟୀକା । ଧମ୍ମପାଲ ବୁଦ୍ଧଘୋଷଙ୍କ ପରେ ପାଲି ସାହିତ୍ୟର ସର୍ବାଧିକ ପ୍ରସିଦ୍ଧ ଟୀକାକାର ।

ପାଲି ସାହିତ୍ୟର ପ୍ରାଚୀନ ଟୀକାକାରଙ୍କ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦତ୍ତ :

୧ **ଚୂଲ୍ଲଧମ୍ମପାଲ**—ଆନନ୍ଦଙ୍କ ଶିଷ୍ୟ ଓ 'ସଚ୍ଚସଂଖେପ' ( Elements of Truths)ର ଲେଖକ ।

୨ **ଉପସେନ**—'ନିଦ୍ଦେସ' ଉପରେ ଲିଖିତ 'ସଦ୍ଧମ୍ମପ୍ପଜୋତିକା' ବା 'ସଦ୍ଧମ୍ମଟ୍ଠିତିକା' ଟୀକାର ଲେଖକ ।

୩. **ମହାନାମ**—"ପଟିସମ୍ଭିଦାମଗ୍ଗ"ର ଟୀକା "ସଦ୍ଧମ୍ମପ୍ପକାସିନୀ"ର ରଚୟିତା ।

୪ **କସ୍ସପ**—'ମୋହବିଚ୍ଛେଦନୀ' ତଥା "ବିମତିଚ୍ଛେଦନୀ"ର ରଚୟିତା ।

୫ **ବଜିରବୁଦ୍ଧି**—"ସମନ୍ତପାସାଦିକା" ଉପରେ "ବଜିରବୁଦ୍ଧି" ଟୀକାର ରଚନା କରିଥିଲେ ।†

୬ **ଖେମ**—"ଖେମପ୍ପକରଣ"ର ପ୍ରଣେତା ।

୭ **ଅନୁରୁଦ୍ଧ**—"ଅଭିଧମ୍ମତ୍ଥ ସଂଗହ"ର ଲେଖକ । ଅଭିଧମ୍ମ ଉପରେ ଲିଖିତ ଏହି ଗ୍ରନ୍ଥ ପ୍ରସିଦ୍ଧ ଏବଂ ପ୍ରଚଳିତ । ଦ୍ୱାଦଶ ଶତାବ୍ଦୀର କେତେକ ପ୍ରସିଦ୍ଧ ସ୍ଥବିର, ଏହାର ଟୀକା କରିଛନ୍ତି । ଅନୁରୁଦ୍ଧ ଅଭିଧମ୍ମ ସମ୍ବନ୍ଧୀୟ ଆଉ ଦୁଇଟି ଗ୍ରନ୍ଥ 'ପରମତ୍ଥବିନିଚ୍ଛୟ' ଓ 'ନାମରୂପ ପରିଚ୍ଛେଦ'ର ମଧ୍ୟ ରଚନା କରିଥିଲେ ।

† ଦ୍ରଷ୍ଟବ୍ୟ : ଗାଇଗର ପୃ: ୩୫

ବିନୟ ପିଟକ ସମ୍ବନ୍ଧୀୟ ଦୁଇଟି ଗ୍ରନ୍ଥର ଉଲ୍ଲେଖ ଆବଶ୍ୟକ । ସେଗୁଡ଼ିକ ହେଲା ଧମ୍ମସିରିକୃତ 'ଖୁଦ୍ଦସିକ୍‌ଖା' ତଥା ମହାସାମିଙ୍କ ରଚିତ 'ମୂଲସିକ୍‌ଖା' । ଏ ଗ୍ରନ୍ଥଗୁଡ଼ିକରେ ଭିକ୍ଷୁମାନଙ୍କର ସଂଘ ସମ୍ବନ୍ଧୀୟ ନିୟମ କାନୁନ୍‌ର ବର୍ଣ୍ଣନା ରହିଛି ଓ ଘୋଷି ଘୋଷି ମନେ ରଖିବାର ସୁବିଧା ପାଇଁ ଏଗୁଡ଼ିକୁ ପଦ୍ୟ-ବଦ୍ଧ କରାଯାଇଛି । ସିଂହଳୀ ଭାଷାରେ ଏଗୁଡ଼ିକୁ ଅନୁବାଦ କରାଯାଇଛି ଓ ଏଗୁଡ଼ିକ ଉପରେ ଟୀକା ମଧ୍ୟ ଲେଖା ଯାଇଛି । ରାଜା ପରକ୍‌କମ ବାହୁ ପ୍ରଥମଙ୍କ ପୋଲୋନ୍ନରୁଅର ଜଲ ଭଣ୍ଡାରରେ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଏକ ଶିଳାଲେଖରେ ଏହି ଗ୍ରନ୍ଥର ଉଲ୍ଲେଖ ରହିଛି । ଅତଏବ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଏଗୁଡ଼ିକର ଲେଖା ସରିଲାଣି । ଏଣୁ ଏହା ଏକାଦଶ ଶତାବ୍ଦୀର ଶେଷ ଭାଗର ରଚନା ।

ପାଳି ସାହିତ୍ୟରେ 'ଦୀପବଂସ' ତଥା 'ମହାବଂସ' ଇତିହାସ ସମ୍ବନ୍ଧୀୟ ଦୁଇଟି ଗ୍ରନ୍ଥ । ଏଥିରେ ସିଂହଳ ଦେଶର ଇତିହାସ ବର୍ଣ୍ଣିତ । ମହାବଂସ, ଦୀପବଂସର ପରବର୍ତ୍ତୀ ରଚନା । ଏଗୁଡ଼ିକର ଭାବ, ବିଷୟ ପ୍ରାୟ ସବୁ ସମାନ; ଏଣୁ ଏଗୁଡ଼ିକର ରଚନା କୌଣସି ଗୁପ୍ତ ରଚନାବଳୀର ତଥା ସିଂହଳୀ ଭାଷାରେ ଲିଖିତ ଅଟ୍‌ଠକଥାର ଅନୁକରଣ ମାତ୍ର । ମହାବଂସର ଟୀକାରେ ଏହାର ଉଲ୍ଲେଖ ନିମ୍ନୋକ୍ତ ପ୍ରକାରେ—

"ଅସ୍ସଂହି ଆଚରିୟୋ ଏତ୍‌ଥ ପୋରାଣମ୍‌ହୀପବଂସ ଅଟ୍‌ଠକଥା ମହାବଂସେ ଅତିବିତ୍‌ଥାର ପୁନରୁତ୍ତ ଦୋସ ଭାବ ପହାୟଂ ତଂ ସୁଖଗ୍‌ଗହଣାଦି ପୟୋଜନଂ ସହିତଂ କତ୍ୱା କଥେସି । (ମହାବଂସ

କାଣ୍ଡୀ—ପୃ. ୨୨ —ଅର୍ଥାତ୍ ଆଗୃହୀ ପୁରାତନ ସିଂହଳ ଅଟ୍ଠ-କଥାରେ ଅଛି ଭାଷାର ଦୋଷ ପୁନରୁକ୍ତି ଦୋଷକୁ ବାଦ୍ ଦେଇ ସରଳ ବୋଧଗମ୍ୟ ହେବାଭଳି ମହାବଂସ' ଲେଖିଲେ ।

ପାଠକଙ୍କ ଦୃଷ୍ଟିରୁ ନିତାନ୍ତ ଶୁଷ୍କ କିନ୍ତୁ ମହାବଂସ ଏକ ମହତ ଓ ଶ୍ରେଷ୍ଠ ମହାକାବ୍ୟ ।† ଏହା ମହାନମନୀଙ୍କ ବଂଶର ପରିଚୟ ଦେଇଥିବାରୁ ଏହା ସ୍ୱୟଂ ହିଁ ମହାନ ।*

ମହାବଂସର ଲେଖକ କିଏ ତାହା ଅଦ୍ୟାବଧି ଅଜ୍ଞାତ, କିନ୍ତୁ ମହାବଂସର ଟୀକାକାରଙ୍କ ଅନୁସାରେ ଏହାର ପ୍ରଣେତାଙ୍କ ନାମ ମହାନାମ ସ୍ଥବିର ଥିଲା । ସେ ସ୍ଥବିର ଦୀଘସନ୍ଦଙ୍କ ଦ୍ୱାରା ନିର୍ମିତ ବିହାରରେ ରହୁଥିଲେ । ଦୀଘସନ୍ଦ ସେନାପତି ରାଜା ଦେବାନାଂ ପିୟ ତିସ୍ସ (ଖ୍ରୀଷ୍ଟପୂର୍ବ ୨୪୭-୨୦୭ ପର୍ଯ୍ୟନ୍ତ)ର ସେନାପତି ଥିଲେ । ଦେବାନାଂ ପିୟ ତିସ୍ସ ତଥା ଦୁଟ୍ଠଗାମଣୀ (ଖ୍ରୀ: ପୂ: ୧୦୧-୭୭) ଆଦି ଏହି ଦୁଇ ରାଜାଙ୍କ ବର୍ଣ୍ଣନା ମହାବଂସରେ ବିଶେଷରୂପରେ ବର୍ଣ୍ଣିତ । ମୂଳବଂସ ସପ୍ତତିଂସ ପରିଚ୍ଛେଦର ପଞ୍ଚାଶତମ ଗାଥାରେ ସମାପ୍ତ । ଗାଇଗରଙ୍କ ଅନୁସାରେ ଏହାର ରଚନା ଷଷ୍ଠ ଶତାବ୍ଦୀର ପ୍ରାରମ୍ଭରେ ରାଜା ଧାତୁସେନଙ୍କ ରାଜତ୍ୱକାଳରେ ହୋଇଥିଲା । ଏହା ପରେ ବି ମହାବଂସର ଲେଖିବା ପରମ୍ପରା ଖ୍ରୀଷ୍ଟାବ୍ଦ ୧୯୩୭ ପର୍ଯ୍ୟନ୍ତ ଜାରି ହୋଇ ସମାପ୍ତ ହୋଇଥିଲା ।

---

† ମହାନ୍ତାନଂ ବଂସୋ ତନ୍ତି ପବେଣି ମହାବଂସ ।
(ମହାବଂସ ଟୀକା ପୃ. ୧୯)

* ଦେଖ ପୂର୍ବୋକ୍ତ:
ମହନ୍ତାନଂ ବଂସ ପରିଦୀପକତ୍ତା, ସୟମେବ ମହନ୍ତତ୍ତା ଚ, ମହାବଂସୋ ନାମେସୋ ନାମ । (ପୃ—୭)

ବୈୟାକରଣ କଚ୍ଚାୟନ ବୁଦ୍ଧଘୋଷଙ୍କ ପରବର୍ତ୍ତୀ । ତାଙ୍କ ଲିଖିତ "କଚ୍ଚାୟନ ବ୍ୟାକରଣ" ଅଥବା "କଚ୍ଚାୟନ ଗନ୍ଧ" ପାଲି ଭାଷାର ପ୍ରାଚୀନତମ ବ୍ୟାକରଣ । R. O. Franke ଙ୍କ ଅନୁସାରେ ବୁଦ୍ଧଘୋଷ ଓ ଧମ୍ମପାଲଙ୍କ ପୂର୍ବରୁ ମଧ୍ୟ ବ୍ୟାକରଣ (ପାଲି ସାହିତ୍ୟରେ) ଥିଲା । ଏହି ବ୍ୟାକରଣ ଲେଖାର ପ୍ରଣାଳୀ କଚ୍ଚାୟନଙ୍କ ଠାରୁ ଢେର ଭିନ୍ନ ଓ ବୋଧିସତ୍ତ୍ୱଙ୍କ ବ୍ୟାକରଣ ଉପରେ ଆଧାରିତ ହୋଇଥାଇପାରେ । କଚ୍ଚାୟନ ବ୍ୟାକରଣର ସବୁଠାରୁ ବଡ଼ ଦୃଷ୍ଟି ବିନ୍ଦୁ ହେଉଛି ଯେ ସେ ସଂସ୍କୃତ ଓ ପାଲିର ଐତିହାସିକ ସମ୍ବନ୍ଧୀୟ ବିଷୟ ବର୍ଣ୍ଣନା କରିନାହାନ୍ତି । ଏହି କଚ୍ଚାୟନ ବୁଦ୍ଧଙ୍କ ଶିଷ୍ୟ ମହା-କଚ୍ଚାୟନଙ୍କ ଠାରୁ ଭିନ୍ନ କିମ୍ବା ପାଣିନୀୟ ବ୍ୟାକରଣର ବାର୍ତ୍ତି-କକାର କାତ୍ୟାୟନଙ୍କ ଠାରୁ ଭିନ୍ନ । ନେତ୍ତି ତଥା ପେଟକର ପ୍ରଣେତା କଚ୍ଚାୟନ ଠାରୁ ମଧ୍ୟ ଏ ଜଣକ ଭିନ୍ନ । କଚ୍ଚାୟନ ଆପଣା ବ୍ୟାକରଣ ରଚନାରେ କାତନ୍ତ୍ର ତଥା ପାଣିନିଙ୍କ ବ୍ୟାକରଣ ବ୍ୟତୀତ କାଶିକାଙ୍କ ବ୍ୟାକରଣର ମଧ୍ୟ ବ୍ୟବହାର କରିଛନ୍ତି । କାଶିକାଙ୍କ ରଚନାବଳୀ ସପ୍ତମ ଶତାବ୍ଦୀର । ଏହି ମହାବ୍ୟାକରଣ ବ୍ୟତୀତ କଚ୍ଚାୟନ 'ମହାନିରୁତ୍ତିଗନ୍ଧ' ତଥା 'ଚୂଲନିରୁତ୍ତିଗନ୍ଧ'ର ରଚୟିତା ଅଟନ୍ତି । କଚ୍ଚାୟନ ବ୍ୟାକରଣ ସମ୍ବନ୍ଧୀୟ ଗୁଡ଼ିଏ ଟୀକା ଲେଖି ଯାଇଥିଲେ । ଏଥି ମଧ୍ୟରୁ ବିମଲବୁଦ୍ଧିକୃତ 'ନ୍ୟାସ' ଅନ୍ୟତମ । ଏହାର ଅନ୍ୟ ନାମଟି 'ମୁଖମତ୍ତଦୀପନୀ' । ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ଏହା ଉପରେ ଛପଦ "ନ୍ୟାସ-ପ୍ରଦୀପ" ନାମକ ଟୀକା ଲେଖିଥିଲେ ।

## ତୃତୀୟ ଯୁଗ

ସିଂହଳର ରାଜା ପ୍ରଥମ ପରାକ୍ରମବାହୁ (୧୧୫୩-୧୧୮୬)ଙ୍କ ରାଜତ୍ୱ କାଳକୁ ପାଲି-ସାହିତ୍ୟର ସ୍ୱର୍ଣ୍ଣଯୁଗ କୁହାଯାଏ । ଏହାଙ୍କ ତତ୍ତ୍ୱାବଧାନରେ ମହାକସ୍ସପ ଥେର ବୁଦ୍ଧଘୋଷ କୃତ ମାଗଧୀ ଭାଷାରେ ଲିଖିତ ଅଟ୍‌ଠକଥାର ଟୀକା ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଗୋଟିଏ ସଂଗୀତି (ସଭା)ର ଆୟୋଜନ କରିଥିଲେ । ସେହି ଟୀକାଗୁଡ଼ିକ ହେଲା—

୧ **ସାରତ୍ଥଦୀପନୀ—** ବିନୟ ପିଟକର ଅଟ୍‌ଠକଥା, ସମନ୍ତ ପାସାଦିକାର ଟୀକା ।

୨ **ପଠମ-ସାରତ୍ଥମଂଜୁସା—** ଦୀଘନିକାୟର ଅଟ୍‌ଠକଥା, ସୁମଙ୍ଗଲ ବିଲସିନୀର ଟୀକା ।

୩ **ଦୁତୀୟ ସାରତ୍ଥମଂଜୁସା—** ମଜ୍‌ଝିମ ନିକାୟର ଅଟ୍‌ଠକଥା, ପପଞ୍ଚସୂଦନୀର ଟୀକା ।

୪ **ତତୀୟ ସାରତ୍ଥମଂଜୁସା—**ସଂଯୁକ୍ତ ନିକାୟର ଅଟ୍‌ଠକଥା, ସାରତ୍ଥ ପ୍ପକାସିନୀର ଟୀକା ।

୫ **ଚତୁତ୍ଥ ସାରତ୍ଥମଂଜୁସା—**ଅଙ୍ଗୁତ୍ତର ନିକାୟର ଅଟ୍‌ଠକଥା, ମନୋରଥ ପୂରଣୀର ଟୀକା

୬ **ପଠମ ପରମତ୍ଥ ପକାସିନୀ—**ଧମ୍ମସଙ୍ଗଣୀର ଅଟ୍‌ଠକଥା, ସାଲିନୀର ଟୀକା ।

୭ **ଦୁତିୟ ପରମତ୍ଥ ପ୍ପକାସନୀ**—ବଭଙ୍ଗର ଅଟ୍ଠ-
କଥା, ସମ୍ମୋହନ ବନୋଦନୀର ଟୀକା ।

୮ **ତତିୟ ପରମତ୍ଥ ପ୍ପକାସିନୀ**—ଧାତୁକଥା ଆଦିର
ଅଟ୍ଠକଥା, ପଞ୍ଚପ୍ପକରଣ ଟ୍ଠକଥାର ଟୀକା ।

ଏହି ଟୀକାଗୁଡ଼ିକ ମଧ୍ୟରେ ସାରିପୁତ୍ରକୃତ 'ସାରତ୍ଥଦୀପନୀ' ପାଣ୍ଡୁଲିପି ଆଜି ମଧ୍ୟ ସଂରକ୍ଷିତ । ଉପରୋକ୍ତ ଟୀକା 'ଲୀନାତ୍ଥ ପକାସିନୀ' ମଧ୍ୟ ବସ୍ତୁତଃ ସାରିପୁତ୍ରଙ୍କ ରଚନା । ମହାକସ୍ସପ ଦ୍ୱାରା ଆୟୋଜିତ ସଂଗୀତିର ବିବରଣ ମଧ୍ୟ ପ୍ରାଚୀନ ସଂଗୀତିଗୁଡ଼ିକର ବିବରଣ ସଦୃଶ । ଏହି ଟୀକା ସାହିତ୍ୟର ପ୍ରଭୂତ ଉନ୍ନତି ସାଧନରେ ସାରିପୁତ୍ର ତଥା ତାଙ୍କ ଶିଷ୍ୟମାନଙ୍କର ବିଶେଷ ଦାନ ଅତୁଳନୀୟ । ଉପରୋକ୍ତ ଦୁଇ ଗ୍ରନ୍ଥ ବ୍ୟତୀତ "ବିନୟ ସଂଗ୍ରହ"କୁ ମଧ୍ୟ ସାରିପୁତ୍ରଙ୍କ ରଚନାରୂପେ ଗ୍ରହଣ କରାଯାଏ । "ଗନ୍ଧବଂସ"ଙ୍କ ଅନୁସାରେ "ମନୋରଥ ପୂରଣୀ"ର ଟୀକା "ସାରତ୍ଥ ମଞ୍ଜୁସା" ମଧ୍ୟ ସାରିପୁତ୍ରଙ୍କ ରଚନା ।

ସାରିପୁତ୍ରଙ୍କ ଶିଷ୍ୟମାନଙ୍କ ବିଷୟରେ ନିମ୍ନରେ ସଂକ୍ଷିପ୍ତ ଆଲୋଚନା କରାଗଲା—

୧ **ସଂଘରକ୍ଖିତ**—ଖୁଦ୍ଦକସିକ୍ଖା ଟୀକାର ପ୍ରଣେତା । "ନୂତନ ଟୀକା" ମଧ୍ୟ ଏହାଙ୍କ ରଚନା ଓ ଏହାର ରଚନା-କାଳ ମହାୟସଙ୍କ ଦ୍ୱାରା ପ୍ରଣୀତ ପୋରାଣ (ପ୍ରାଚୀନ) ଟୀକାର ପରବର୍ତ୍ତୀ ।

୨ **ବୁଦ୍ଧନାଗ**— "କଂଖାବିତରଣୀ"ର ଟୀକା "ବିନୟତ୍ଥ ମଞ୍ଜୁସା"ର ରଚୟିତା । ଏହାର ପାଣ୍ଡୁଲିପି ଅଦ୍ୟାବଧି ସୁରକ୍ଷିତ ।

୩ **ବାଚିସ୍ସର**—ଗନ୍ଧବଂଶରେ ଏହାଙ୍କ ଲିଖିତ ୧୮ଟି ଗ୍ରନ୍ଥର ଉଲ୍ଲେଖ ମିଳେ । ଏଗୁଡ଼ିକ ମଧ୍ୟରୁ ଅନେକ ଗ୍ରନ୍ଥର ହସ୍ତ-ଲିଖିତାଂଶ ଅଦ୍ୟାବଧି ସୁରକ୍ଷିତ ।

(କ) **ମୂଲସିକ୍‌ଖା ଅଭିନବ ଟୀକା**—ବିମଲସାର କୃତ ପୋରାଣ ଟୀକାର ପରବର୍ତ୍ତୀ । (ଖ) ସୀମାଲଙ୍କାର ସଂଗ୍ରହ 'ବିନୟ' ସମ୍ବନ୍ଧୀୟ । ବିଭିନ୍ନ ପ୍ରାନ୍ତ ବିଶେଷରେ ରହୁଥିବା ଭିକ୍ଷୁମାନଙ୍କ ଧାର୍ମିକ କୃତ୍ୟମାନଙ୍କର ସଂଗ୍ରହ, ଯାହାକୁ ସେ ସଂଗ୍ରହରୂପରେ ଦେଖିଛନ୍ତି । (ଗ) ଖେମପ୍ପକରଣ ଟୀକା— "ଖେମଙ୍କ" ରଚିତ "ଖେମପ୍ପକରଣ"ର ଟୀକା । (ଘ) ନାମରୂପ ପରିଚ୍ଛେଦ ଟୀକା—ଅନୁରୁଦ୍ଧଙ୍କ ରଚିତ । "ନାମରୂପ ପରିଚ୍ଛେଦ"ର ଟୀକା । (ଙ) ସଚ୍ଚସଂଖେପ ଟୀକା—ସଚ୍ଚସଂଖେପ ଉପରେ ଆଧାରିତ ସୁମଙ୍ଗଳଙ୍କ ଟୀକାଠାରୁ ପୁରାତନ । (ଚ) ଅଭିଧମ୍ମାବତାର ଟୀକା—ବୁଦ୍ଧଦତ୍ତଙ୍କ ପ୍ରସିଦ୍ଧ କୃତି । ଅଭିଧମ୍ମାବତାର'ର ଟୀକା । (ଛ) ରୂପାରୂପ ବିଭାଗ—ଏହାର ଅଭିଧମ୍ମ ସହ ସମ୍ବନ୍ଧ ରହିଛି ।

ଏତଦ୍‌ଭିନ୍ନ "ବିନୟ ବିନିଚ୍ଛୟ", ଉତ୍ତର ବିନିଚ୍ଛୟ ଟୀକା ଏବଂ "ଖୁଦ୍ଦକସିକ୍‌ଖା" ଉପରେ ଆଧାରିତ 'ସୁମଙ୍ଗଲପ୍ପସାଦନୀ' ତଥା 'ବୋହାରବିନିଚ୍ଛୟ' ଓ 'ପଚ୍ଚୟସଂଗ୍ରହ' ଆଦି ଗ୍ରନ୍ଥର ଉଲ୍ଲେଖ ରହିଛି ।

୪ **ସୁମଙ୍ଗଲ**-ଅନୁରୁଦ୍ଧଙ୍କ ଅଭିଧମ୍ମତ୍ଥ ସଂଗହ ଉପରେ ଅଭି-ଧମ୍ମତ୍ଥ ବିଭାବନୀ ଏବଂ 'ଅଭିଧମ୍ମାବତାର' ଉପରେ 'ଅଭିଧମ୍ମତ୍ଥ ବିକାସିନୀ' ନାମକ ଟୀକାର ରଚୟିତା । ଏହାଛଡ଼ା ସଚ୍ଚସଂଖେପ ଟୀକାର ମଧ୍ୟ ପ୍ରଣେତା । ଏହାର ଅନ୍ୟନାମ ହେଉଛି "ଅଭିନବ ଟୀକା" । ଏହି ତିନୋଟିଯାକ ଗ୍ରନ୍ଥର ହସ୍ତଲିଖିତାଂଶ ଆଜି ମଧ୍ୟ ସୁରକ୍ଷିତ ।

ସଧମ୍ମ ଜୋତିପାଲ ଅଥବା ଛ'ପଦ ସାରିପୁତ୍ରଙ୍କ ଶିଷ୍ୟ-ମଣ୍ଡଳୀ ମଧ୍ୟରୁ ଅନ୍ୟତମ । ସେ ବର୍ମାନିବାସୀ ଓ ସିଂହଳରେ ଖ୍ରୀ: ୧୧୭୦ ରୁ ୧୧୮୦ ପର୍ଯ୍ୟନ୍ତ ଶିକ୍ଷା ଗ୍ରହଣ କରିବାକୁ ଯାଇ-ଥିଲେ । ତାଙ୍କ ରଚିତ (କ) ବିନୟ ସମୁଟ୍ଠାନ ଦୀପନୀ (ଖ) ପାତିମୋକଖ ବିସୋଧନୀ (ଗ) ବିନୟ ଗୂଢ଼ତ୍ଥ ଦୀପନୀ । ଏଥିରେ ବିନୟ ପିଟକର କଠିନାଂଶର ମୀମାଂସା କରାଯାଇଛି । ଏହା ବ୍ୟତୀତ ସେ (ଘ) ସୀମାଲଂକାର ସଂଗହ ଟୀକା (ଙ) ମାତିକତ୍ଥ ଦୀପନୀ (ଚ) ପଟ୍ଠାନ ଗଣନାସୂ (ଛ) ନାମଚାର ଦୀପ ଗ୍ରନ୍ଥ (ଜ) ଅଭିଧମ୍ମତ୍ଥ ସଂଗହ ସଂଖେପ ଟୀକା ଓ (ଝ) ଗନ୍ଧସାର ମଧ୍ୟରୁ ଅନୁରୁଦ୍ଧଙ୍କ ପ୍ରଣୀତ "ଅଭିଧମ୍ମତ୍ଥ ସଂଗହ'ର ଆଧାରଭୂତ 'ଅଭି-ଧମ୍ମତ୍ଥ ସଂଗହ ସଂଖେପ ଟୀକା' ସର୍ବପ୍ରସିଦ୍ଧ । ଗନ୍ଧସାର ତିପି-ଟକର କେତେକାଂଶର ସଂକଳନ ମାତ୍ର ।

ସାରିପୁତ୍ରଙ୍କ ଶିଷ୍ୟଗଣ ବୌଦ୍ଧଧର୍ମ ଓ ତଥା ସାହିତ୍ୟ କ୍ଷେତ୍ରରେ ଅଗ୍ରଗଣ୍ୟ ।

୧ **ଧମ୍ମକିତ୍ତି**—"ଦାଠାବଂଶ"ର ରଚନା କରିଥିଲେ ଓ ଏହି ରଚନା ଶେଷରେ ନିଜକୁ ସାରିପୁତ୍ରଙ୍କ ଶିଷ୍ୟରୂପେ ଘୋଷଣା

କରିଥିଲେ । ଏହା ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ଲିଖିତ । ଏଥିରେ ବୁଦ୍ଧଙ୍କ 'ଦନ୍ତ-ଧାତୁ' କଥା ରହିଛି । ମହାବଂଶରେ ଏ ସଂପର୍କୀୟ ଯେଉଁ ସାମଗ୍ରୀ ରହିଛି, ତାହାର ଆଧାର ସମ୍ଭବତଃ ସିଂହଳର ପରଂପରାନୁକ୍ରମେ ପ୍ରଚଳିତ ଦନ୍ତକଥା ଅଟେ । "ଦାଠା-ବଂସ"ରେ ଏ ସମସ୍ତ ସାମଗ୍ରୀର ଉପଯୋଗ କରାଯାଇଛି ।

୨ **ବାଚସ୍ସର—** ସାରିପୁତ୍ତଙ୍କ ଶିଷ୍ୟ ଓ "ଥୂପବଂସ"ର ରଚୟିତା । ଏହା ଏକ ଗଦ୍ୟ ଗ୍ରନ୍ଥ । ଏଥିରେ "ନିଦାନକଥା" ସମନ୍ତ ପାସାଦିକା ତଥା ଟୀକା ସହିତ ମହାବଂଶର କିଛି ଅଂଶ ସନ୍ନିବିଷ୍ଟ । ତ୍ରୟୋଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହା ରଚିତ ।

୩ **ବୁଦ୍ଧ-ରକ୍ଖିତ—**"ଜିନାଲଂକାର"ର ରଚୟିତା । ଏହା ପଦ୍ୟରେ ଲିଖିତ ଓ ଏହି ଗ୍ରନ୍ଥର ଶୈଳୀ ନିତାନ୍ତ କୃତ୍ରିମ ଏବଂ ଅଳଙ୍କାର ପୂର୍ଣ୍ଣ । ଏହା ପ୍ରାରମ୍ଭରୁ ସମ୍ଯକସମ୍ବୁଦ୍ଧ ହେବା ପର୍ଯ୍ୟନ୍ତ ଭଗବାନ ବୁଦ୍ଧଙ୍କ ଜୀବନ ଚରିତ ଓ ଏହି ଗ୍ରନ୍ଥର ଶେଷରେ ଏହାଙ୍କ ନାମ ଓ ରଚନା କାଳ ସମ୍ବତ୍ ୧୭୦୦ (ବୁଦ୍ଧାବ୍ଦ = ୧୧୫୬) ବୋଲି ଉଲ୍ଲିଖିତ । ବୁଦ୍ଧଦତ୍ତ ଲିଖିତ "ଜିନାଲଂକାର" ସହ ଏହାର କୌଣସି ସମ୍ବନ୍ଧ ନାହିଁ ।

୪ **ମେଧଂକର—**"ଜିନ ଚରିତ"ର ପ୍ରଣେତା । ଶୈଳୀ ଅତ୍ୟନ୍ତ କୃତ୍ରିମ । ଗ୍ରନ୍ଥର ଶେଷଭାଗରେ ସେ ଲେଖିଛନ୍ତି— ରାଜା ବିଜୟବାହୁଙ୍କ ଦ୍ୱାରା ନିର୍ମିତ ପାରିବେଣରେ ଏହି ଗ୍ରନ୍ଥର ରଚନା କରିଥିଲି । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ମେଧଂକର ରାଜା ବିଜୟବାହୁଙ୍କ ସମକାଳୀନ ।

ସିଂହଳର ପରମ୍ପରାଗତ ଉପଲବ୍ଧ ସାମଗ୍ରୀ ଦୃଷ୍ଟିରୁ "ମହାବଂଶ"ର ଟୀକା "ବଂଶତ୍ଥ ପ୍ରକାଶିନୀ" ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହାର ଲେଖକଙ୍କ ନାମ ଓ କାଳ ଅଦ୍ୟାବଧି ଅଜ୍ଞାତ । ସମ୍ଭବତଃ ଏହା ଦ୍ୱାଦଶ ଶତାବ୍ଦୀର ଲେଖା । ଏଥିରେ ଅଟ୍ଠକଥା-ଗୁଡ଼ିକର ସାମଗ୍ରୀ ସମାବେଶ ହୋଇଥିବାରୁ ଖୁବ୍ ମହତ୍ତ୍ୱପୂର୍ଣ୍ଣ ।

ବୈଦେହ ଥେରଙ୍କ ସମୟ ତ୍ରୟୋଦଶ ଶତାବ୍ଦୀ । ଏହାଙ୍କ ଜନ୍ମ ବପ୍ପଗାମର କଶ୍ୟପ ବ୍ରାହ୍ମଣ ବଂଶରେ । ସେ ଆନନ୍ଦ ଥେରଙ୍କ ଅନ୍ତେବାସୀ । ଏହାଙ୍କ ରଚନା ସମନ୍ତକୂଟ ବଣ୍ଣନା ଓ ରସବାହିନୀ ସୁପ୍ରସିଦ୍ଧ । ଏଥି ମଧ୍ୟରୁ ପ୍ରଥମ ଗ୍ରନ୍ଥଟି ପଦ୍ୟବଦ୍ଧ ଓ ଏଥିରେ ବୁଦ୍ଧଙ୍କ ଜୀବନୀ ତଥା ବୁଦ୍ଧଙ୍କ ତୃତୀୟ ଥର ପାଇଁ ସିଂହଳ ଯାତ୍ରା ଓ ପଦାର୍ପଣ ବିଷୟ ବର୍ଣ୍ଣିତ । ତୃତୀୟ ଯାତ୍ରାକାଳରେ ଭଗବାନ ବୁଦ୍ଧ ସମନ୍ତ କୂଟରେ ଆପଣା ବାମ ପାଦର ଚିହ୍ନ ପକାଇଲେ ଯାହା ଶ୍ରୀପଦ ନାମରେ ପରିଚିତ । ଦ୍ୱିତୀୟ ଗ୍ରନ୍ଥ ରସ-ବାହିନୀ ଗଦ୍ୟରେ ଲିଖିତ ଏକ କଥା ସଂଗ୍ରହ । ଏଥିରେ ମୂଳ ସିଂହଳରୁ ପାଳି ଭାଷାର ଅନୁବାଦ ରହିଛି । ମୂଳତଃ ଏହାକୁ ମହାବିହାରର ରଟ୍ଠପାଳ ପାଳିରେ ଅନୁବାଦ କରିଥିଲେ । କିନ୍ତୁ ପରେ ବୈଦେହଥେର ଏହାର ସଂଶୋଧନ ସଂସ୍କରଣ କରିଥିଲେ । ରସବାହିନୀରେ ସମୁଦାୟ ୧୦୩ଟି କାହାଣୀ ସଂଗ୍ରହ ସନ୍ନିବିଷ୍ଟ । ଏଥି ମଧ୍ୟରୁ ୪୦ଟି ଜମ୍ବୁଦ୍ୱୀପ ଓ ୬୩ଟି ଲଙ୍କା ଦ୍ୱୀପ ସଂପର୍କୀୟ । ସହସ୍ସବତ୍ଥୁପ୍ପକରଣରେ ଏକ ସହସ୍ର କାହାଣୀ ରହିଛି । କଥିତ ଅଛି ଯେ ଏଗୁଡ଼ିକ ବର୍ମାରୁ ସିଂହଳକୁ ଆନୀତ ।

ବୁଦ୍ଧପପ୍ପୁଯୁ—ବୈଦେହ ଥେରଙ୍କ 'ସମସାମୂିକ । ପଜ୍ଜମଧୁ କାବ୍ୟର ରଚୟିତା । ଏହି କାବ୍ୟଟି ୧୦୪ ପଦବିଶିଷ୍ଟ । ଏଥିରେ ଭଗବାନଙ୍କ ସୌନ୍ଦର୍ଯ୍ୟ ଓ ଜ୍ଞାନର ବର୍ଣ୍ଣନା ରହିଛି । ଗ୍ରନ୍ଥର ଶେଷରେ ପୂର୍ବବର୍ତ୍ତୀ ଗାଥାରେ ସେ ନିଜକୁ ଆନନ୍ଦଙ୍କ ଶିଷ୍ୟରୂପେ ପରିଚିତ କରିଛନ୍ତି ।

"ଅତ୍ତନଗଲୁବିହାରବଂସ"ର ରଚନା ସମ୍ଭବତଃ ତ୍ରୟୋଦଶ ଶତାବ୍ଦୀର ଉତ୍ତରାର୍ଦ୍ଧ । ଏଥିରେ ଗଦ୍ୟ ଓ ପଦ୍ୟର ଖୁବ୍ ସୁନ୍ଦର ସମ୍ମିଶ୍ରଣ ଘଟିଛି । ଏଥିରେ ସଂଘବୋଧି ଏବଂ ତାଙ୍କ ପତ୍ନୀଙ୍କ ମୃତ୍ୟୁ ବିଷୟ ଉପଲବ୍ଧ । ତାଙ୍କର ମୃତ୍ୟୁ ସ୍ଥାନଠାରେ ଅତ୍ତନଗୁଲବିହାରର ନିର୍ମାଣ କରାଯାଇଛି । ଏହାର ଲେଖକଙ୍କ ନାମ ଅଜ୍ଞାତ ।

ମହାନାମ କୃତ 'ମହାବଂସ' ବିଶେଷ ରୂପରେ 'ଚୂଲବଂଶ' ନାମରେ ବିଖ୍ୟାତ । ଏହା ସିଂହଳ ଦେଶର ଇତିହାସ । ପରମ୍ପରାନୁସାରେ ଏହାର ମୂଳ ଲେଖକ ଧମ୍ମକିତ୍ତି ଥେର । ମହାବଂସଙ୍କ ଅନୁସାରେ ସେ ଦ୍ୱିତୀୟ ପରାକ୍କମବାହୁ (ତ୍ରୟୋଦଶ ଶତାବ୍ଦୀର ପୂର୍ବାର୍ଦ୍ଧ)ଙ୍କ ଶାସନ କାଳରେ ବର୍ମାରୁ ସିଂହଳକୁ ଆସିଥିଲେ । ଚତୁର୍ଥ ପରକ୍କମବାହୁଙ୍କ ସମୟରେ ମହାବଂସର ନୂତନ ସାମଗ୍ରୀର ସମାବେଶ ହୋଇଛି । ମହାବଂସର ଦ୍ୱିତୀୟ ଖଣ୍ଡର ୩୭ରୁ ୯୦ ଅଧ୍ୟାୟ ମଧ୍ୟରେ ପ୍ରଥମ ପରକ୍କମବାହୁ (୧୧୫୩–୧୧୮୬)ଙ୍କ ଶାସନ ବର୍ଣ୍ଣିତ । ଅଷ୍ଟାଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ରାଜା କୀର୍ତ୍ତିଶ୍ରୀ ଆପଣା ଯୁଗର ଇତିହାସ ମହାବଂସରେ ସନ୍ନିବିଷ୍ଟ କଲେ । ଏହାର ୧୦୧ମ ଅଧ୍ୟାୟରେ ସିଂହଳରେ ଇଂରେଜ ଆଗମନ ପର୍ଯ୍ୟନ୍ତ ବର୍ଣ୍ଣନା ମିଳେ ।

ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀର ସନ୍ଧିକାଳରେ ପାଲି ସାହିତ୍ୟର ବିକାଶ ପଥରେ ଯେଉଁ ଗ୍ରନ୍ଥ ଓ ଗ୍ରନ୍ଥପ୍ରଣେତାମାନେ ସହଯୋଗ କରିଥିଲେ ସେଗୁଡ଼ିକ ହେଲା—

୧. **ସାର ସଂଗ୍ରହ**—ଧର୍ମ ସମ୍ବନ୍ଧୀୟ ଏହି ଗ୍ରନ୍ଥର ପ୍ରଣେତା ସିଦ୍ଧତ୍ଥ । ଗ୍ରନ୍ଥ ଶେଷରେ ଲେଖକ ନିଜକୁ ବୁଦ୍ଧପିୟଙ୍କ ଶିଷ୍ୟରୂପେ ସ୍ୱୀକାର କରିଛନ୍ତି । "ମୋଗଲ୍ଲାନ ପଞ୍ଚିକାପଦୀପ"ରେ ସାରସଂଗ୍ରହର ଉଲ୍ଲେଖ ରହିଛି । ପଦୀପର ରଚନାକାଳ ଖ୍ରୀଷ୍ଟୀୟ ୧୪୫୭ ଅତଏବ ନିଶ୍ଚିତ ଭାବେ କୁହାଯାଇପାରେ ଯେ ଏହା ପଦୀପର ପୂର୍ବବର୍ତ୍ତୀ ରଚନା ।

୨. **ସଦ୍ଧମ୍ମ ସଂଗହ**—ଧମ୍ମକିତ୍ତି ମହାସାମିନ ଏହାର ପ୍ରଣେତା । ପାଲିଗ୍ରନ୍ଥ ମଧ୍ୟରେ ସେ ହେଉଛନ୍ତି ଶେଷ ଧମ୍ମକିତ୍ତି । ଏହାଙ୍କ ନବମ ଅଧ୍ୟାୟରେ ଅନେକ ଗ୍ରନ୍ଥ ଏବଂ ଗ୍ରନ୍ଥକାରଙ୍କ ନାମୋଲ୍ଲେଖ ରହିଛି । ଏଥି ମଧ୍ୟରୁ ଅନ୍ତିମ ରଚନାର ରଚନାକାଳ ହେଉଛି ତ୍ରୟୋଦଶ ଶତାବ୍ଦୀ । ଏହା ୪୦ଟି ଅଧ୍ୟାୟବିଶିଷ୍ଟ । ବାସ୍ତବରେ ଏହା ପ୍ରଥମ ସଂଗୀତିରୁ ଆରମ୍ଭ କରି ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧଧର୍ମର ଇତିହାସ ଓ ବୌଦ୍ଧଧର୍ମ ସମ୍ବନ୍ଧୀୟ କେତେକ ନୂତନ ତଥ୍ୟର ଉଲ୍ଲେଖ ରହିଛି ।

ଚତୁର୍ଦ୍ଦଶ ଶତାବ୍ଦୀରେ ନିମ୍ନୋକ୍ତ ଗ୍ରନ୍ଥର ପ୍ରଣୟନ କରାଯାଇଛି :

୧. **ଲୋକପ୍ପଦୀପସାର**— ସାସନବଂସ ଅନୁସାରେ ଏହାର ରଚୟିତା ବର୍ମାର ଭିକ୍ଷୁମେଧଙ୍କର । ସେ ସିଂହଳରେ

ବୌଦ୍ଧଧର୍ମ ତଥା ପାଲିଭାଷା ଓ ସାହିତ୍ୟର ଗଭୀର ଅଧ୍ୟୟନ କରିଥିଲେ । ଏଥିରେ 'ସଂଖାରଲୋକ'ରେ ନରକ, ପ୍ରେତ, ପଶୁ ଏବଂ ମାନବଯୋନିଙ୍କ ତଥା 'ସତ୍ତ୍ୱଲୋକ' ଏବଂ 'ଓକାଲୋକ'ରେ ବିବିଧ ଯୋନିର ବର୍ଣ୍ଣନା ରହିଛି ।

୨. **ପଞ୍ଚଗତିଦୀପନ**--ଏହା ୧୧୪ ଗାଥାବିଶିଷ୍ଟ । ଏହି ଗାଥାଗୁଡ଼ିକରେ ପୁନର୍ଜନ୍ମରୂପରେ ପଶୁ, ପ୍ରେତ, ମାନବ ଆଦି ଭେଦ-ଯୋନିର ବର୍ଣ୍ଣନା ରହିଛି । ଏହାର ପ୍ରଣେତା ଓ ଏହାର ରଚନାକାଳ ଅଦ୍ୟାବଧି ଅଜ୍ଞାତ ।

୩. **ବୁଦ୍ଧଘୋଷୁପ୍ପତ୍ତି**— ମହାମଙ୍ଗଳ ଏହାର ପ୍ରଣେତା । ସେ ଏହି ବ୍ୟକ୍ତି ବେଯ୍ୟାକରଣକାର ମଙ୍ଗଳ ହେବେ ଏହାଙ୍କ ସମୟ ଚତୁର୍ଦ୍ଦଶ ଶତାବ୍ଦୀ । ଏହା ବୁଦ୍ଧଘୋଷଙ୍କ ଜୀବନ ଚରିତ ମାତ୍ର । ପୂର୍ବାଚାର୍ଯ୍ୟମାନେ ବୁଦ୍ଧଘୋଷଙ୍କ ଜୀବନ ଚରିତ ସମ୍ବନ୍ଧୀୟ ଯେଉଁ ସାମଗ୍ରୀ ସଂଗ୍ରହ କରିଥିଲେ ତାର ଆଧାରରେ ଏହି ଗ୍ରନ୍ଥ ଲିଖିତ ।

ଏଠାରେ ଆଉ ଦୁଇଟି ଗ୍ରଂଥର ବିବରଣୀ ଉପସ୍ଥାପନ କରିଗଲେ ଯାହାର ଲେଖକ ଓ ରଚନାକାଳ ଅଜ୍ଞାତ । (କ) ସଦ୍ଧମୋପାୟନ—୬୨୧ ଗାଥାବିଶିଷ୍ଟ ଏହି ଗ୍ରଂଥ ୯ଟି ଅଧ୍ୟାୟରେ ବିଭକ୍ତ । ଏଥିରେ ବୌଦ୍ଧଧର୍ମର ପ୍ରଶଂସାମାନ କରାଯାଇଛି । ଏହାର ପ୍ରାରମ୍ଭରେ ଆଠ 'ଅକ୍‌ଖଣ' ଏବଂ 'ଅକୁସଲାନ' (ଦଶ ଅକୁଶଳ ଧର୍ମ) ତଥା ପ୍ରେତଯୋନିର ଦୁଃଖ ବର୍ଣ୍ଣନା ରହିଛି । ଏତଦ୍‌ଭିନ୍ନ ଏଥିରେ ପୁଣ୍ୟଫଳ ଏବଂ ଦାନଶୀଳର ବର୍ଣ୍ଣନା ସୁସ୍ପଷ୍ଟ ।

(ଖ) ତେଲକଟାହ ଗାଥା—ଏହାର ରଚୟିତା ଜଣେ ସ୍ଥବିର । ତାଙ୍କୁ ଫୁଟନ୍ତା ତେଲ କରେଇରେ ଥିବା ଫୁଟନ୍ତା ତେଲ ମଧ୍ୟକୁ ଦୋଷୀ ଭାବେ ସାବ୍ୟସ୍ତ କରାଯାଇ ନିକ୍ଷେପ କରାଯାଇଥିଲା ଯେହେତୁ ସେ କଲ୍ୟାଣୀର ରାଜା ତିସ୍‌ସଙ୍କ ପତ୍ନୀଙ୍କ ଏକ ଷଡଯନ୍ତ୍ରକୁ ସାହାଯ୍ୟ କରୁଥିଲେ । ଏହି କଥା ବେଦେହଙ୍କ କଥାଚନ୍ଦ ତଥା ମହାବଂଶରେ ଉଲ୍ଲେଖ ରହିଛି । ଫୁଟନ୍ତା ତେଲରେ ପଡ଼ି ସୁଦ୍ଧା ତାଙ୍କର କୌଣସି ଶାରୀରିକ କ୍ଷତି ଘଟି ନଥିଲା । କାରଣ ସେ ସଦାସର୍ବଦା ଗାଥା ପାଠ କରୁଥିଲେ । ଏ ଗାଥାଗୁଡ଼ିକରେ ବୌଦ୍ଧ ଧର୍ମର ସିଦ୍ଧାନ୍ତକୁ ପ୍ରକଟ କରୁଥିବା ମୃତ୍ୟୁ, ଜୀବନର କ୍ଷଣଭଙ୍ଗୁରତା, ଦୁଃଖ ଏବଂ ଅନାତ୍ମ-ସମ୍ବନ୍ଧୀୟ ବର୍ଣ୍ଣନା ରହିଛି ।

ପଞ୍ଚଦଶ ଶତାବ୍ଦୀରେ ପାଲି ସାହିତ୍ୟର ପ୍ରଭୂତ ଉନ୍ନତି ବର୍ମାର ଭିକ୍ଷୁମାନଙ୍କ ଦ୍ୱାରା ହୋଇଥିଲା । ସେମାନେ 'ଅଭିଧର୍ମ'ର ଗଭୀର ତାତ୍ତ୍ୱିକ ଆଲୋଚନା କରିଥିଲେ ।

୧. **ଅରିୟବଂସ**—ନରପତି (୧୪୪୨-୬୮ ଖ୍ରୀ:)ଙ୍କ ରାଜତ୍ୱ-କାଳରେ ଆବାରେ ବସବାସ କରୁଥିଲେ । ସେ ନିମ୍ନଲିଖିତ ଗ୍ରନ୍ଥର ଲେଖକ ।
(କ) ମଣିସାର ମଂଜୁସା—ଏହା ସୁମଙ୍ଗଲ କୃତ ଅଭିଧମ୍ମଥ ବିଭାବନୀର ଟୀକା । (ଖ) ମଣିଦୀପଟୀକା—ବୁଦ୍ଧଘୋଷଙ୍କ କୃତ ଅଟ୍ଠସାଲିନୀର ଟୀକା । (ଗ) ଜାତକ ବିସୋଧନ—ଜାତକ ସମ୍ବନ୍ଧୀୟ ଗ୍ରନ୍ଥ ।

୨. **ସଦ୍ଧମ୍ମପାଲସିରି**— ଅରିୟବଂସଙ୍କ ସମକାଳୀନ ଓ ନେତ୍ତିର ଟୀକା । 'ନେତ୍ତିଭାବନୀ'ର ପ୍ରଣେତା ।

୩. **ସୀଲବଂସ**—ଉପରୋକ୍ତ ବର୍ଷଙ୍କ ପରବର୍ତ୍ତୀ । ସେ ବୁଦ୍ଧାଳଙ୍କାର କାବ୍ୟ ଗ୍ରନ୍ଥର ରଚୟିତା ଓ ଏହା ନିଦାନକଥାର ସୁମେଧ ସମ୍ବନ୍ଧୀୟ ।

୪. **ରଟ୍ଠସାର**— ସେ ଜାତକକୁ ପଦ୍ୟବଦ୍ଧ କରିଥିଲେ । ଏହି ପଞ୍ଚଦଶ ଶତାବ୍ଦୀର "ଜିନଚରିତଗାଥା"ର ରଚନା କରଯାଇଥିଲା । ଏହାର ଲେଖକଙ୍କ ନାମ ଅଜ୍ଞାତ ।

୫. **ସଦ୍ଧମ୍ମାଲଙ୍କାର**—ଷୋଡ଼ଶ ଶତାବ୍ଦୀର "ପଟ୍ଠାନଦୀପନୀ" ପ୍ରଣୟନ କରିଥିଲେ । ଏହା ଅଭିଧମ୍ମ ସମ୍ବନ୍ଧୀୟ ।

ଏହି ଶତାବ୍ଦୀରେ ବୁଦ୍ଧଘୋଷ ବରଗୁରୁଧମ୍ମସତ୍ଥଙ୍କ ଦ୍ୱାରା ତେଲୁଗୁ ଭାଷାରେ ଲିଖିତ "ମନୁସାର" ପୁସ୍ତକର ପାଲି ଅନୁବାଦ କରିଥିଲେ । ବାସ୍ତବରେ ଏହି ମୂଳଗ୍ରନ୍ଥଟି ତ୍ରୟୋଦଶ ଶତାବ୍ଦୀର ରଚନା । ଏହା ମନୁସାର ବର୍ମାଙ୍କ ସଂପର୍ଣ୍ଣ ବିଧି ସାହିତ୍ୟର ଆଧାର । ଏହି ଭିକ୍ଷୁବନ୍ତୁ ଆଧାରରେ ବର୍ମା ଏବଂ ପାଲି ଆଦି ଦୁଇ ଭାଷାରେ ଆଇନ୍ କାନୁନ୍ ସମ୍ବନ୍ଧୀୟ ଗ୍ରନ୍ଥର ପ୍ରଣୟନ ହୋଇଥିଲା । ପାଲିଗ୍ରନ୍ଥରେ ଅଷ୍ଟାଦଶ ଶତାବ୍ଦୀର 'ମନୁବଣ୍ଣନା' ଏବଂ ଊନବିଂଶ ଶତାବ୍ଦୀର 'ମୋହବିଚ୍ଛେଦନୀ'ର ନାମୋଲ୍ଲେଖ ରହିଛି ।

ସପ୍ତଦଶ ଶତାବ୍ଦୀର ପାଲିଗ୍ରନ୍ଥ ସମୂହର ବର୍ଣ୍ଣନା ନିମ୍ନୋକ୍ତ ପ୍ରକାରେ—

୧. **ତିପିଟକାଲଙ୍କାର**— (କ) ବିସନ୍ତ ବଣ୍ଣନା—ଏହା ଅଟ୍ଠସାଲିନୀର ପ୍ରାରମ୍ଭିକ ୨୦ଟି ପଦର ଟୀକା (ଖ) ଯସବଡ୍ଢନବତ୍ଥୁ ତଥା (ଗ) ବିନୟାଲଂକାର ଏ ଦୁଇଟି ପାରପୂର୍ଣ୍ଣ କୃତ ବିନୟ ସଂଗ୍ରହର ଟୀକା ।

ତଲୋକ ଗୁରୁ—ଆପଣ କମ୍ମଟ୍ଠାନ ପୁସ୍ତକର ରଚୟିତା

(କ) ଧାତୁ କଥା—ଟୀକା ବଣ୍ଣନା

(ଖ) 'ଧାତୁ କଥା ଅନୁଟୀକା ବଣ୍ଣନା' ଏ ଦୁଇଟି ଧାତୁ କଥାର ଟୀକା ।

(ଗ) ଯମକ ବଣ୍ଣନା ତଥା (ଘ) 'ପଟ୍ଠାନ ବଣ୍ଣନା' ଅଭିଧମ୍ମ ପଟ୍ଠାନର ଟୀକା ।

୩. ସାରଦସ୍ସନ— ଆପଣ "ଧାତୁକଥା ଯୋଜନା"ର ପ୍ରଣେତା ।

୪. ମହାଜୟପ —"ଅଭିଧମ୍ମତ୍ଥଗଣ୍ଠିପଦ"ର ରଚନା କରିଥିଲେ । ଏଥିରେ ଅଭିଧମ୍ମର ବ୍ୟାଖ୍ୟା କରାଯାଇଛି ।

୫. ଞାଣାଭିବଂସ—ବର୍ମାର ସଂଘରାଜ ଓ ସେ ଅନେକ ଗ୍ରନ୍ଥ ରଚନା କରିଥିଲେ—

(କ) ପେଟକାଲଂକାର—ନେତ୍ତିର ଟୀକା । (ଖ) ସାଧୁବିଲାସିନୀ—ଦୀଘନିକାୟର ଗୋଟିଏ ଭାଗର ଟୀକା । (ଗ) ଏହାଙ୍କ ଧର୍ମ ସମ୍ବନ୍ଧୀୟ କଥା ସଂଗ୍ରହ 'ଚତୁସାମଣେରବତ୍ଥୁ' ଏବଂ 'ରାଜବାଦବତ୍ଥୁ' ନାମରେ ପ୍ରସିଦ୍ଧ । (ଘ) ରାଜାଧିରାଜ ବିଲାସିନୀ ଏକ ଉଣିଷ୍ଟକୃତ । ଏଥିରେ ରାଜା ବୋଡୋପେୟାଙ୍କ ପ୍ରଶଂସାଗାନ କରାଯାଇଛି । ଏହା ଏକ ଶ୍ରେଷ୍ଠ ସାହିତ୍ୟକୃତ ଓ ଏଥିରେ ବୌଦ୍ଧ କଥା ବ୍ୟତୀତ ଜାତକର ଉଦ୍ଧରଣ ମିଳେ ।

ଏହା ଛଡ଼ା "ମାଲାଲଂକାର" ଅନ୍ୟତମ ପ୍ରସିଦ୍ଧ ସାହିତ୍ୟ-କୃତି ଯାହାର ପ୍ରଣେତାଙ୍କ ନାମ ଅଜ୍ଞାତ । ନିମ୍ନରେ କେତୋଟି ଊନବିଂଶ ଶତାବ୍ଦୀର ରଚନାବଳୀର ସଂକ୍ଷିପ୍ତ ପରିଚୟ ଦିଆ-ଗଲା—

୧. **ନଲାଟ-ଧାତୁବଂସ**— ଲେଖକଙ୍କ ନାମ ଓ ରଚନାକାଳ ଅଜ୍ଞାତ । ଭଗବାନ ବୁଦ୍ଧଙ୍କ ଲଲାଟର ପବିତ୍ର ଧାତୁ ବର୍ଣ୍ଣନା ହୋଇଛି । ଏହି ସିଂହଳୀ ଭାଷାରେ ପ୍ରାପ୍ତ ଧାତୁବଂଶର ପାଲିରୂପ । ସିଂହଳୀ ଧାତୁବଂସ ଓ ଏଥିରେ ଥିବା ଅଧ୍ୟାୟ ସଂଖ୍ୟା ସମାନ । ସମ୍ଭବତଃ ଏହା ସିଂହଳୀ ଧାତୁବଂସର ମୂଳରୂପ ।

୨. **ଛକେସଧାତୁବଂସ**— ଏହା ମଧ୍ୟ ଭଗବାନ ବୁଦ୍ଧଙ୍କ ପବିତ୍ର ଧାତୁ ସମ୍ବନ୍ଧୀୟ ଓ ଆଧୁନିକ ବର୍ମୀୟ କୌଣସି ଭିକ୍ଷୁ ଏହାର ଲେଖକ ହୋଇଥିବା ଅନୁମାନ କରାଯାଏ । ଏହା ଏକ ଗଦ୍ୟଗ୍ରନ୍ଥ ଓ ଏଥିରେ ଭଗବାନ ବୁଦ୍ଧଙ୍କ ଛ'ଟି କେଶର ବର୍ଣ୍ଣନା ହୋଇଛି । ଯେଉଁ କେଶଗୁଡ଼ିକ ଭଗବାନ ବୁଦ୍ଧ ସ୍ୱୟଂ ଜୀବିତ ଅବସ୍ଥାରେ ଆଠ'ଜଣ ଶିଷ୍ୟଙ୍କ ମଧ୍ୟରେ ବିତରଣ କରିଥିଲେ ଏବଂ ମୃତ୍ୟୁ ପରେ କେତେକ ସ୍ଥାନରେ ସ୍ତୂପଗୁଡ଼ିଏ ନିର୍ମିତ ହୋଇଥିଲା ।

୩. **ସନ୍ଦେସ କଥା** ତଥା ୪. ସୀମାବିବାଦ ବିନିଚ୍ଛୟ କଥା— ଏ ଦୁଇଟି ଆଧୁନିକ ରଚନା । ଏ ଗୁଡ଼ିକର ରଚନା ଯଥାକ୍ରମେ ୧୮୦୦ ଓ ୧୮୦୧ ଖ୍ରୀଷ୍ଟାବ୍ଦର ରଚନା ।

୫. **ଗନ୍ଧବଂସ**—ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ଅଟେ । ଏହା ବର୍ମାରେ ପ୍ରଣୀତ । ଏଥିରେ ବହୁ ଗ୍ରନ୍ଥ ଓ ଗ୍ରନ୍ଥ-

କାରଙ୍କ ନାମୋଲ୍ଲେଖ ରହିଛି । ମଙ୍ଗଳାଚରଣ ପରେ ସର୍ବପ୍ରଥମେ ଏଥିରେ ବିପିଟକର ବର୍ଣ୍ଣନା କରାଯାଇଛି । ତତ୍ପରେ ସେ "ମୋଗ୍ଗଲୀପୁତ୍ତ ତିସ୍ସ" ଏବଂ ତୃତୀୟ ସଙ୍ଗୀତିରେ ସ୍ଥବିରଙ୍କ ବର୍ଣ୍ଣନା ହେଉଛି ଯେ କି 'ବୁଦ୍ଧବଚନ' ସଂଗ୍ରହ କରିଥିଲେ । ଏହି ସ୍ଥବିର 'ଅଟ୍ଠକଥାଚରିୟ' (ଅଟ୍ଠକଥା ଗ୍ରନ୍ଥକର ଆଚାର୍ଯ୍ୟ ଅଥବା ପ୍ରଣେତା) ମଧ୍ୟ ଅଟନ୍ତି । ଗ୍ରନ୍ଥ ବଂଶରେ 'ମହାକଚ୍ଚାୟନ' ଙ୍କ ପ୍ରସିଦ୍ଧ କଚ୍ଚାନ ବ୍ୟାକରଣ', "ମହା ଏବଂ ଚୂଲ୍ଲନିରୁତ୍ତି" ଏବଂ 'ନେତ୍ତି', 'ପେଟକୋପଦେସ' ତଥା "ବଣ୍ଣନୀତି"ର ପ୍ରଣେତା ରୂପେ ଉଲ୍ଲେଖ କରାଯାଇଛି । ତାଙ୍କୁ ଅତ୍ୟନ୍ତ ଆଦର ସହକାରେ "ବୁଦ୍ଧ ନାମକା ଚରିୟା" ପଦବୀରେ ଭୂଷିତ କରିଛନ୍ତି । ଏହା ପରେ "ଗନ୍ଧାଚରିୟା"ର ସୂଚୀ ମଧ୍ୟ ପ୍ରଦତ୍ତ । ଏତଦ୍ ବ୍ୟତୀତ ବହୁ ଅଜ୍ଞାତ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ଏକ ସୁସଜ୍ଜିତ ସୂଚୀ ଦିଆଯାଇଛି । ସେମାନଙ୍କ ମଧ୍ୟରେ ବହୁ ପ୍ରସିଦ୍ଧ ଲେଖକ ତଥା ବୁଦ୍ଧଘୋଷ, ବୁଦ୍ଧଦତ୍ତ, ଆନନ୍ଦ ଏବଂ ଧମ୍ମପାଲଙ୍କ ନାମୋ-ଲ୍ଲେଖ ରହିଛି । ଲଙ୍କା ଓ ଜମ୍ବୁଦ୍ୱୀପର ଲେଖକମାନଙ୍କର ପରିଚୟ ଦିଆଯାଇଛି । ସର୍ବାଶେଷରେ ଯେଉଁ ଲେଖକଗୁଡ଼ିକ ଅନ୍ୟ ସାଧା-ରଣ ଲୋକଙ୍କ ପ୍ରେରଣାରେ ଗ୍ରନ୍ଥ ପ୍ରଣୟନ କରିଥିଲେ ସେମାନଙ୍କର ମଧ୍ୟ ନାମ ଦିଆଯାଇଛି ।

୫. **ସାସନବଂସ**—ପଞ୍ଜସାମିନ ଏହାର ପ୍ରଣେତା । ଏହା ଖ୍ରୀଷ୍ଟୀୟ ୧୮୬୧ର ରଚନା । ଏହା ପ୍ରାଚୀନ ସାହିତ୍ୟର ଆଧାରରେ ଲିଖିତ ହୋଇଥିବା ଯୋଗୁଁ ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଏଥିରେ ସନ୍ନିବିଷ୍ଟ ଦଶଟି ଅଧ୍ୟାୟରେ ଅଶୋକଙ୍କ ଠାରୁ ତୃତୀୟ ସଂଗୀତି ତଥା ସିଂହଳ ଓ ଅନ୍ୟ ଦେଶରେ ବୌଦ୍ଧଧର୍ମର ପ୍ରଚାର ନିମିତ୍ତ ପ୍ରେରିତ ପ୍ରଚାରକମାନଙ୍କ ପୂର୍ଣ୍ଣ ବିବରଣୀ ରହିଛି । ଏହାର ଷଷ୍ଠ ଅଧ୍ୟାୟରେ

"ଅଟ୍ଠକଥା" [illegible] ବର୍ମାରେ ବୌଦ୍ଧ ଧର୍ମର ଇତିହାସ ବିଷୟକ ସମ୍ୟକ୍ ତଥ୍ୟ [illegible] । ଦୀପବଂଶ ତଥା ମହାବଂଶଙ୍କ ମତାନୁସାରେ [illegible] ପ୍ରଚାର ନିମିତ୍ତ ନଅଟି ଦେଶକୁ ଧର୍ମ ପ୍ରଚାରକମାନଙ୍କୁ [illegible] କରାଯାଇଥିଲା । ବର୍ମାର ପରମ୍ପରା-ନୁସାରେ ଏଥି ମଧ୍ୟରୁ ପାଞ୍ଚୋଟି ବୃହତ୍ତର ଦେଶ ମଧ୍ୟରେ ଭାରତ ଅନ୍ୟତମ । ଅନ୍ୟାନ୍ୟ ଦେଶଗୁଡ଼ିକ ହେଲା ସ୍ୱର୍ଣ୍ଣଭୂମି, ବନ-ବାସୀ, ଅପରେନ୍ତ, ଯୋନକ ଓ ମହାରଟ୍ଠ । ଏଥିରେ ସୋତ, ସମନ୍ତପାସାଦିକା, ଦୀପବଂଶ, ମହାବଂଶ, ତଥା ବର୍ମାର ଇତିହାସ ସାଙ୍ଗକୁ ଅଟ୍ଠକଥାର ମଧ୍ୟ ଉଲ୍ଲେଖ ମିଳେ ।

ସିଂହଳ ତଥା ବର୍ମାରେ ଭାଷା-ବିଜ୍ଞାନ କ୍ଷେତ୍ରରେ ପର୍ଯ୍ୟାପ୍ତ କାର୍ଯ୍ୟ ସମ୍ପାଦିତ । ଯାହାର ଉଦାହରଣ ସ୍ୱରୂପ ଏ ଦୁଇ ଦେଶରେ ବହୁ ବ୍ୟାକରଣ, କୋଷ ଓ ଛନ୍ଦ ସମ୍ପର୍କୀୟ ଗ୍ରନ୍ଥର ସୂଚନା ମିଳେ ।

ଅଧ୍ୟୟନର ସୁବିଧା ଦୃଷ୍ଟିରୁ ବ୍ୟାକରଣ ବିଷୟକ ଗ୍ରନ୍ଥ-ମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି ।

୧ । କଚ୍ଚାୟନ ଶାଖା— ବାଲବତାର ଓ ରୂପସିଦ୍ଧି ଏହି ଶାଖାନ୍ତର୍ଗତ ।

୨ । ମୋଗଲ୍ଲାନ ଶାଖା—ପୟୋଗସିଦ୍ଧି ଏବଂ ପଦସାଧନା ଏହା ଅନ୍ତର୍ଗତ ।

୩ । ସଦ୍ଦନୀତି— ଚୁଲ୍ଲସଦ୍ଦନୀତି ଏହା ଅନ୍ତର୍ଗତ ।

ଏହି ଶବ୍ଦବର୍ଗ ବା ଶ୍ରେଣୀର ତିନୋଟି ଧାତୁପାଠ ରହିଛି । ଯଥା: ଧାତୁମଂଜୁଷା, ଧାତୁପାଠ ଏବଂ ଧାତ୍ୱର୍ଥଦୀପନୀ । କୋଷ ଗ୍ରନ୍ଥମାନଙ୍କ ମଧ୍ୟରେ 'ଅଭିଧାନପ୍ପଦୀପିକା'ର ନାମ ଉଲ୍ଲେଖଯୋଗ୍ୟ । ଏତଦ୍ ବ୍ୟତୀତ ଛନ୍ଦଶାସ୍ତ୍ର ସମ୍ବନ୍ଧୀୟ କତିପୟ ଗ୍ରନ୍ଥ ମଧ୍ୟ ପ୍ରାପ୍ତ ।

ଉପରୋକ୍ତ ସମସ୍ତ ବ୍ୟାକରଣର ସହାୟତାରେ R. O. Franke "ପାଲି ଗ୍ରାମାର" ଲେଖିଛନ୍ତି । କଚ୍ଚାୟନ ଶାଖା ବ୍ୟାକରଣ ଉପରେ ଯେଉଁ ଟୀକା ଲିଖିତ ତାହା 'ନ୍ୟାସ' ନାମରେ ପ୍ରସିଦ୍ଧ । ଏହି ଶାଖାର ବିଶିଷ୍ଟ ଗ୍ରନ୍ଥ— (୧) ଛପଦକୃତ ସୁତ୍ତନିଦ୍ଦେସ । ଏହାର ରଚନାକାଳ ୧୧୮୧ । ଏହା କଚ୍ଚାୟନର ଟୀକା ଅଟେ (୨) ସଂଘରକ୍ଷିତ କୃତ 'ସମ୍ବନ୍ଧ ଚିନ୍ତା' । (୩) ସଦ୍ଧମ୍ମସିରି କୃତ 'ସଦ୍ଦତ୍ଥ ଭେଦଚିନ୍ତା' । (୪) ରୂପସିଦ୍ଧି ଅଥବା ପଦରୂପସିଦ୍ଧି । ଏହା କଚ୍ଚାୟନ ବ୍ୟାକରଣର ସଂଶୋଧିତ ରୂପ । ଗ୍ରନ୍ଥ ଶେଷରେ ଲେଖକ ନିଜ ନାମ ବୁଦ୍ଧପ୍ପିୟଦୀପଙ୍କର ଓ ନିଜକୁ ଆନନ୍ଦ ଥେରଙ୍କ ଶିଷ୍ୟରୂପେ ସ୍ୱୀକାର କରିଛନ୍ତି । ସମ୍ଭବତଃ ସେ 'ପଜ୍ଜମଧୁ'ର ପ୍ରଣେତା । ଏହାର ରଚନାକାଳ ତ୍ରୟୋଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ । ଏହା ସାତୋଟି ଅଧ୍ୟାୟରେ ବିଭକ୍ତ ।

୫ । ବାଳାବତାର—ଏହା ସଂସ୍କୃତ ବ୍ୟାକରଣ ଲଘୁକୌମୁଦୀ ପରି ପ୍ରବନ୍ଧ । ଏହାର ସର୍ବାଧିକ ପ୍ରଚଳନ ବର୍ମା ଓ ଶ୍ୟାମ ଦେଶରେ ଦେଖାଯାଏ । ଏହା କଚ୍ଚାୟନ ବ୍ୟାକରଣର ଲଘୁ ରୂପ ହେଲେ ମଧ୍ୟ ବିନ୍ୟାସଶୈଳୀ କିଞ୍ଚିତ ଭିନ୍ନ । ପରଂପରାନୁସାରେ 'ସଦ୍ଧମ୍ମସଂଗ୍ରହ'ର ପ୍ରଣେତା । ଧମ୍ମକିତ୍ତି ଏହାର

ଲେଖକ । ଏହା ଚତୁର୍ଦ୍ଦଶ ଶତାବ୍ଦୀର ଶେଷପ୍ରାନ୍ତର ଲେଖା । କିନ୍ତୁ ଗନ୍ଧବଂସ ଅନୁସାରେ ଏହାର ପ୍ରଣେତା ସପ୍ତୋଦଶ ଶତାବ୍ଦୀର ବାଚସ୍ସର ଅଟନ୍ତି ।

୬ । **ସଦ୍ଦସାରତ୍ଥ ଜାଲିନୀ**—ବର୍ମାର ଲେଖକ କଣ୍ଣକ ଖିପ ନାଗିତ ଏହାର ପ୍ରଣେତା । ଏହାର ରଚନାକାଳ ୧୩୫୬ । ଏହି ସମୟରେ ଅଭିଧାନପ୍ପଦୀପିକର ମଧ୍ୟ ରଚନା କରି ଯାଇଥିଲି । ଏହାର **ବିନ୍ୟାସ** କଚ୍ଚାୟନ ବ୍ୟାକରଣ ସଦୃଶ୍ୟ ।

କଚ୍ଚାୟନ ଶାଖାନ୍ତର୍ଗତ ଅନ୍ୟାନ୍ୟ ବ୍ୟାକରଣ :

୭ । **କଚ୍ଚାୟନ ଭେଦ**—ଚତୁର୍ଦ୍ଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଲିଖିତ ଏହି ରଚନା ମହାୟସ **ଥେରଙ୍କକୃତ** ଟୀକା ଅଟେ । ଫାସବୋଲଙ୍କ ଅନୁସାରେ ଏହାର ରଚୟିତା ରସ୍ସଂଥେର । ଏହାର ଦୁଇଟି ଟୀକା 'ସାରତଥ୍ ବିକାସିନୀ ଓ କଚ୍ଚାୟନ ଭେଦ ମହାଟୀକା' ।

୮ । **ସଦ୍ଦବିନ୍ଦୁ**—ସମ୍ଭବତଃ ଏହା **ପଞ୍ଚ**ଦଶ ଶତାବ୍ଦୀର ଉତ୍ତରାର୍ଦ୍ଧର ରଚନା । ସାସନବଂସ ଅନୁସାରେ ଅଣମଦ୍ଦନ (ବର୍ମା)ର ରାଜା କ୍ୟଚ୍ଚ୍ୱା ଏହାର ପ୍ରଣେତା ।

୯ । **ବାଲପ୍ପବୋଧନ**—ଏହାର ଲେଖକଙ୍କ ନାମ ଓ ରଚନା କାଳ ଅଜ୍ଞାତ । ଏହାର ସମ୍ପାଦକ ସୁଧମାଲଙ୍କାରଙ୍କ ଅନୁସାରେ ଏହା ଖ୍ରୀଷ୍ଟୀୟ ଷୋଡଶ ଶତାବ୍ଦୀର ରଚନା । ଏହା କଚ୍ଚାୟନ ଭେଦ ଓ ସଦ୍ଦତ୍ଥ ଭେଦଚିନ୍ତାର ପରବର୍ତ୍ତୀ ରଚନା ।

**ଅଭିନବ**—ଚୂଳନିରୁତ୍ତି- ସିରିମଙ୍ଗଳାଚାରିଙ୍କ ରଚିତ । ଏଥିରେ
କଚ୍ଚାୟନଙ୍କ ଅପବାଦ ଗୁଡ଼ିକର ବର୍ଣ୍ଣନା କରାଯାଇଛି ଓ
ରଚନାକାଳ ଅଦ୍ୟାବଧି ଅଜ୍ଞାତ ।

୧୧ । **କଚ୍ଚାୟନ ବଣ୍ଣନା**—ବର୍ମାର ଥେର ମହାବିଜିତା-
ବିନଙ୍କ ବିରଚିତ । ଏହା କଚ୍ଚାୟନଙ୍କ 'ସନ୍ଧିକପ୍ପ'ର
ଟୀକା । 'ରୂପସିଦ୍ଧି'ର ମଙ୍ଗଳାଚରଣରେ ଏହି ବିଷୟରେ
ଲିଖିତ । ଏହା କଚ୍ଚାୟନବଣ୍ଣନା ଠାରୁ ଭିନ୍ନ ।

କଚ୍ଚାୟନଙ୍କ ବ୍ୟତୀତ ମୋଗ୍ଗଲ୍ଲାନ ଅଥବା ମୋଗ୍ଗଲ୍ଲାନ
ଅଭିନବ ବ୍ୟାକରଣର ଶାଖାର ପ୍ରବର୍ତ୍ତକ ଅଟନ୍ତି । ତାଙ୍କ କୃତିର
ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ :

୧ । ମୋଗ୍ଗଲ୍ଲାୟନ ବ୍ୟାକରଣ—ଏହାର ଅନ୍ୟ ନାମ
'ସଦ୍ଦଲକ୍ଖଣ' ।

୨ । ମୋଗ୍ଗଲ୍ଲାୟନ ପଞ୍ଚିକା— ଏହା ଲେଖକଙ୍କ
ସ୍ୱରଚନାର ଟୀକା ବିଶେଷ । ବିଦ୍ୱାନଙ୍କ ମତରେ କଚ୍ଚାୟନଙ୍କ
ଅପେକ୍ଷା ମୋଗ୍ଗଲ୍ଲାୟନଙ୍କ କୃତି ଖୁବ୍ ଉଚ୍ଚକୋଟୀର । କିନ୍ତୁ
ମୋଗଗଲ୍ଲାୟନ ବ୍ୟାକରଣ ଅନ୍ୟାନ୍ୟ ବ୍ୟାକରଣ ଭଳି ତ୍ରୁଟିମୁକ୍ତ
ନୁହଁ । ଏହାର ସୂତ୍ରଗୁଡ଼ିକର ବିନ୍ୟାସ ଓ ବର୍ଗୀକରଣ କଚ୍ଚାୟନଙ୍କ
ଅପେକ୍ଷା ଭିନ୍ନ । ପ୍ରାଚୀନ ପାଲିବ୍ୟାକରଣ୍ୟାକାରଙ୍କ ଏବଂ ପାଣିନିଙ୍କ
ବ୍ୟତୀତ ମୋଗ୍ଗଲ୍ଲାୟନ ଆପଣା ଏହି କୃତିର ପ୍ରଣୟନରେ ଚନ୍ଦ୍ର-
ଗୋମିନ ବ୍ୟାକରଣର ଅଧିକ ସାହାଯ୍ୟ ନେଇଛନ୍ତି । ଗ୍ରନ୍ଥ ଶେଷରେ
ସେ ଗ୍ରନ୍ଥ ରଚନାର ସମୟ ପରକ୍କମଭୁଜଙ୍କ ରାଜତ୍ୱକାଳ

ବୋଲି ବ୍ୟକ୍ତ କରନ୍ତି । ଏହି ପରକକମଭୁଜ, ପରକକ୍ମବାହୁ ପ୍ରଥମଙ୍କ ବ୍ୟକ୍ତିତ ଆଉ କଏ ନୁହଁ । ଏହାଙ୍କ ରଚନାକାଳ ଖ୍ରୀ: ୧୧୫୩—୧୧୮୬ ।

କଚାୟନ ବ୍ୟାକରଣ ପର ମୋଗ୍ଗଲ୍ଲାୟନ ଶାଖାରେ ମଧ୍ୟ ଅନେକ ବ୍ୟାକରଣ ଗ୍ରନ୍ଥ ମିଳେ—

୧ । ପଦସାଧନ—ଏହା ପିୟଦସ୍ସିନଙ୍କ ରଚିତ । ସେ ମୋଗ୍ଗଲ୍ଲାନଙ୍କ ଶିଷ୍ୟ, ସମ୍ଭବତଃ ଏହାଙ୍କ ସମୟ ଦ୍ୱାଦଶ ଶତାବ୍ଦୀର ଅନ୍ତିମ ଚରଣ । ସିଂହଳୀ ସାହିତ୍ୟର ପ୍ରସିଦ୍ଧ ବ୍ୟକ୍ତି ଶ୍ରୀରଥ-ଗାମ-ନିବାସୀ ରାହୁଲ ଏହି ଟୀକା 'ପଦସାଧନ-ଟୀକା' ଅଥବା 'ବୁଦ୍ଧିପ୍ପସାଦନୀ'ର ପ୍ରଣେତା ।

୨ । ପୟୋଗସିଦ୍ଧି—ବନରତନ ମେଧଙ୍କର ଏହାର ପ୍ରଣେତା । ଏହା ମୋଗ୍ଗଲ୍ଲାନ ଶାଖାର ସର୍ବୋତ୍କୃଷ୍ଟ ବ୍ୟାକରଣ । ଉକ୍ତର ଜୋଏସାଙ୍କ ଅନୁସାରେ ମୋଗ୍ଗଲ୍ଲାନ ଶାଖାରେ ଏହାର ସ୍ଥାନ, କଚାୟନ ଶାଖାର ରୂପସିଦ୍ଧିର ସ୍ଥାନ ଭଳି ଉତ୍କୃଷ୍ଟ ସ୍ତରର ।

୩ । ମୋଗ୍ଗଲ୍ଲାୟନ ପଞ୍ଚିକାପଦୀପ— ଏହା ମୋଗ୍ଗଲ୍ଲାୟନ-କୃତ ଅପ୍ରାପ୍ୟ ପଞ୍ଚିକାର ଟୀକା । ପଦସାଧନାର ଟୀକାକାର ରାହୁଲ ଏହାର ରଚୟିତା । ଏହି ଟୀକାର କିଛି ଅଂଶ ପାଲି ଭାଷା ଓ ଅନ୍ୟ କିଛି ଅଂଶ ସିଂହଳୀ ଭାଷାରେ ମିଳେ । ଡକ୍ଟର ଜୋଏସାଙ୍କ ମତାନୁସାରେ ଏହା ହେଉଛି ପାଲି ବ୍ୟାକରଣ ସଂବନ୍ଧୀୟ ଏକ ଉତ୍କୃଷ୍ଟ ଏବଂ ଉନ୍ନତ ଧରଣର କୃତି । ଲେଖକ ଏହା ଲେଖିବାକୁ ପ୍ରାୟ ପଚାଶ ଗୋଟି ବ୍ୟାକରଣ ସାହାଯ୍ୟ ନେଇଛନ୍ତି । ସେଗୁଡ଼ିକ

ମଧ୍ୟରେ ଚନ୍ଦ୍ରକୃତ ସଂସ୍କୃତ ବ୍ୟାକରଣ ଅନ୍ୟତମ । ଏହି ଗ୍ରନ୍ଥର ରଚନାକାଳ ଖ୍ରୀ: ୧୪୫୭ ।

୪. ସଦ୍ଦନୀତି—ଅଗ୍ଗବଂସ ଏହାର ପ୍ରଣେତା । ପ୍ରାଚୀନ ଥେରବାଦ ମୂଲ୍ୟାଙ୍କନ ନିମିତ୍ତ ଏହି ଗ୍ରନ୍ଥ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଅଗ୍ଗବଂସ ବର୍ମାର ଅରିମଦ୍ଦନ ସ୍ଥାନର ବାସିନ୍ଦା । ସିଂହଳଠାରୁ ଦୂରରେ ରହି ବର୍ମାରେ ବ୍ୟାକରଣ ସମ୍ବନ୍ଧୀୟ ଯେଉଁ ଅଧ୍ୟୟନ ହୋଇଥିଲା ତାହା ଏହି ଗ୍ରନ୍ଥ ଦ୍ୱାରା ପରିଲକ୍ଷିତ । ଏହାର ପ୍ରସିଦ୍ଧିର କାରଣ ଏହିକି ବ୍ୟାକରଣ କ୍ଷେତ୍ରରେ ବର୍ମାର ଭିକ୍ଷୁମାନେ ଯେଉଁ ଗମ୍ଭୀର ଅଧ୍ୟୟନ କରିଥିଲେ ତାହାର ସୂଚନା ଏଥିରେ ମିଳେ । ଏହାର ରଚନା କାଳ ଖ୍ରୀ: ୧୧୫୪ । R. O. Frankeଙ୍କ ମତାନୁସାରେ ସଦ୍ଦନୀତିର ଆଧାର କଚ୍ଚାୟନ ବ୍ୟାକରଣ ।

ବିଷୟବସ୍ତୁ ଦୃଷ୍ଟିକୋଣରୁ ସଦ୍ଦନୀତିକୁ କଚ୍ଚାୟନ ଶାଖାରୁ ପୃଥକ୍ କରିବା ଉଚିତ ନୁହେଁ । କିନ୍ତୁ ସ୍ୱ ବ୍ୟାକରଣ ରଚନାରେ ଅଗ୍ଗବଂସ ପାଣିନି ତଥା ଅନ୍ୟାନ୍ୟ ସଂସ୍କୃତ ବ୍ୟାକରଣ ରଚନାର ସାହାଯ୍ୟ ନେଇଥିଲେ । ମୋଗ୍ଗଲ୍ଲାନ ବ୍ୟାକରଣ ବିଷୟରେ ସେ ଜାଣିନଥିଲେ । କାରଣ ତାହାର ରଚନା ପରବର୍ତ୍ତୀକାଳର । ସଦ୍ଦନୀତି ୨୭ ଅଧ୍ୟାୟବିଶିଷ୍ଟ । ପ୍ରାରମ୍ଭର ୧୮ ଗୋଟି ଅଧ୍ୟାୟକୁ ମହାସଦ୍ଦନୀତି ଓ ଶେଷ ନ'ଟିକୁ ଚୂଳ୍ଳସଦ୍ଦନୀତି କୁହାଯାଏ ।

ପ୍ରାଚୀନ କାଳରୁ ପାଳି ସାହିତ୍ୟରେ କେବଳ ଗୋଟିଏ ଅଭିଧାନ ଉପଲବ୍ଧ ଓ ତାହା ମୋଗ୍ଗଲ୍ଲାନ କୃତ ଅଭିଧାନ-ଦୀପିକା । କୋଷକାର ଓ ବୈୟାକରଣ ମୋଗ୍ଗଲ୍ଲାନ ଦୁଇ ଭିନ୍ନ ବ୍ୟକ୍ତି । ଏହି କୋଷର ଶେଷରେ କୁହାଯାଇଛି ଯେ ଏହାର ପ୍ରଣେତା ପୁଲତ୍ଥିପୁରସ୍ଥିତ ଜେତବନ ବିହାରର ଜଣେ ସଦସ୍ୟ ।

କନ୍ତୁ ବୈୟାକରଣ ମୌଗ୍ଗଲ୍ଲାନ ଅନୁରାଧାପୁରସ୍ଥ ଥୂପାରାମବହାରର ସଦସ୍ୟ । ଗନ୍ଧବଂଶରେ ମଧ୍ୟ ଏ ଦୁହିଙ୍କ ପାର୍ଥକ୍ୟ ଦର୍ଶାଇବା ବେଳେ କୋଷକାର—ମୋଗ୍ଗଲ୍ଲାନଙ୍କୁ ନବ-ମୋଗ୍ଗଲ୍ଲାନ ନାମରେ ଅଭିହିତ କରାଯାଇଛି । ଅଭିଧାନପ୍ପଦୀପିକାର ଶେଷରେ ପରକ୍କମ-ଭୁଜଙ୍କ ପ୍ରଶସ୍ତି ରହିଛି । ଏଥିରୁ ସ୍ପଷ୍ଟ ହୁଏ ଯେ ଏହାର ରଚନା ତାଙ୍କ ରାଜତ୍ୱକାଳ ( ଖ୍ରୀ: ୧୧୫୭—୧୧୮୬ ) ମଧ୍ୟବର୍ତ୍ତୀ । ଏହିପରି ଏହାର ରଚନାକାଳ ଦ୍ୱାଦଶ ଶତାବ୍ଦୀର ଶେଷଭାଗ ବୋଲି ଧରାଯାଏ । ଏହି କୋଷ ତିନି ଭାଗରେ ବିଭକ୍ତ ଯଥା : ପର୍ଯ୍ୟାୟବାଚୀ, ସମାନବାଚୀ ଏବଂ ନିପାତ । ଏଥିରେ ୧୨୦୩ଟି ପଦ ତଥା ଏହା ଅମରକୋଷ ଆଦର୍ଶରେ ଲିଖିତ । ଅଧିକାଂଶ ପର୍ଯ୍ୟାୟବାଚୀ ଶବ୍ଦକୁ ଅମରକୋଷରୁ ନିଆଯାଇଛି । ଅମରକୋଷର ଅଧିକାଂଶ ଶବ୍ଦକୁ କୋଷକାର ପାଳିକୁ ରୂପାଂ-ତରିତ କରିଛନ୍ତି । R. O. Frankeଙ୍କ ଅନୁସାରେ ଏହାର ରଚନାରେ ସଂସ୍କୃତର ଅନ୍ୟାନ୍ୟ କୋଷଗୁଡ଼ିକର ସାହାଯ୍ୟ ନିଆ ଯାଇଛି । ଅଭିଧାନପ୍ପଦୀପିକାର ଟୀକା ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ-ଭାଗରେ ଲିଖିତ । 'ଏକକ୍ଖର କୋସ'ର ଉଲ୍ଲେଖ ଆବଶ୍ୟକ । ଏହା ବର୍ମାର ଭିକ୍ଷୁ ସଦ୍ଧମ୍ମକିତ୍ତିଙ୍କ ଦ୍ୱାରା ରଚିତ ଓ ଏହାର ରଚନାକାଳ ଖ୍ରୀ: ୧୪୬୫ ।

ଧାତୁପାଠ ବିଷୟକ ଗ୍ରନ୍ଥ :

୧. ଧାତୁମଂଜୁସା—ଏହାର କଚ୍ଚାୟନ ଶାଖା ସହ ସମ୍ପର୍କ ରହିଛି । ତେଣୁ ଏହାର ଅନ୍ୟ ନାମ "କଚ୍ଚାୟନ ଧାତୁ ମଂଜୁସା" । ଏହି ଗ୍ରନ୍ଥର ଲେଖକ 'ସିଲବଂସ' ଅକ୍ଖିଢ଼ିଲେନ ବିହାରର ସଦସ୍ୟ ଅଟନ୍ତି । ଏହା ପଦ୍ୟବଦ୍ଧ ତଥା ୧୫୦ଟି ପଦ

ବିଶିଷ୍ଟ । ସଭୂତିଙ୍କ ଅନୁସାରେ ଏହାର ରଚନା ବୋପଦେବ କୃତ କବିକଲ୍ପଦ୍ରୁମର ଅନୁସାରେ । ଏହାର ଧାତୁଗୁଡ଼ିକ କଚ୍ଚାୟନଙ୍କ ଗଣ ପାଠର କ୍ରମାନୁସାରେ ସଜ୍ଜିତ । ଏଣୁ ଏହାକୁ କଚ୍ଚାୟନ ଶାଖାଭୁକ୍ତ କଲେ ଭୁଲ ହେବନାହିଁ ।

୨. **ଧାତୁପାଠ** —ଏହାର ଆଧାର ମୋଗ୍‌ଗଲ୍ଲାନ କୃତ ଗଣପାଠ । ଏହାର ଲେଖକ ଓ ଲେଖକଙ୍କ ସମୟ ଅଜ୍ଞାତ ।

୩. **ଧାତ୍ୱତ୍ଥଦୀପନୀ**—R. O. Fronkeଙ୍କ ଅନୁସାରେ ଏହା ସଦ୍ଦନୀତିର ଏକ ଅଧ୍ୟାୟର ଧାତୁ ପଦର ପଦ୍ୟବଦ୍ଧ ସୂଚୀ । ଏହା ସଦ୍ଦନୀତିଙ୍କ 'ଗଣପାଠ' ଅନୁସାରେ । ଏହି ଲେଖକ ପାଣିନିଙ୍କ ଧାତୁପାଠର ମଧ୍ୟ ବ୍ୟବହାର କରିଛନ୍ତି ।

ପାଲି ସାହିତ୍ୟରେ ଅଳଙ୍କାର ଶାସ୍ତ୍ର ସମ୍ବନ୍ଧୀୟ ଗ୍ରନ୍ଥଗୁଡ଼ିକ ମଧ୍ୟରେ ସଙ୍ଘରକ୍ଖିତଙ୍କ 'ସୁବୋଧାଲଂକାର' ପ୍ରସିଦ୍ଧ ।

ନିମ୍ନରେ ବ୍ୟାକରଣ ସମ୍ବନ୍ଧୀୟ କତିପୟ ଗ୍ରନ୍ଥର ଉଲ୍ଲେଖ କରାଯାଇଛି । ଏଗୁଡ଼ିକ ସମ୍ବନ୍ଧରେ ସୁଭୂତିଙ୍କ ପ୍ରସ୍ତୁତ ବିବରଣ ଦ୍ରଷ୍ଟବ୍ୟ ।

(କ) **ବଚ୍ଚାବଚକ**—ଏହାର ଲେଖକ ବର୍ମାର ଅରିମଦ୍ଦନ ସ୍ଥାନ ନିବାସୀ ସାମନ୍ତଙ୍କର ଧମ୍ମଦସ୍ସିନ । ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ ଲିଖିତ ଏହି ଗ୍ରନ୍ଥଟି ୧୦୦ ପଦ ବିଶିଷ୍ଟ ।

(ଖ) **ଗନ୍ଧଟ୍ଠି**—ଚତୁର୍ଦ୍ଦଶ ଶତାବ୍ଦୀର ଏହି ରଚନା ମଂଗଲଙ୍କ ଲିଖିତ ନିପାତ ବିଷୟକ ଗ୍ରନ୍ଥ ।

(ଗ) **ଗନ୍ଧାଭରଣ**—୧୫୩୬ରେ ଲିଖିତ ଏହି କପାଡ ସମ୍ବନ୍ଧୀୟ ବ୍ୟାକରଣ ଗ୍ରନ୍ଥ ଅରୀୟବଂସଙ୍କ ଦ୍ୱାରା ଲିଖିତ ।

(ଘ) **ବିଭତ୍ୟର୍ଥ-ଟୀକା**—କାରକ ବିଷୟକ ଏହି ଗ୍ରନ୍ଥ ୩୭ ଶ୍ଳୋକବିଶିଷ୍ଟ । ଏହାର ରଚୟିତା ବର୍ମାର ରଜା କ୍ୟାଚ୍‌ବାଙ୍କ କନ୍ୟା ବୋଲି ମନେ କରାଯାଏ । ସୁଭୂତିଙ୍କ ଅନୁସାରେ ଏହାର ରଚନା କାଳ ଖ୍ରୀ: ୧୪୮୧ ।

(ଙ) **ସଂବଣ୍ଣନାନୟଦୀପନୀ**—ଏହାର ରଚନା ଜମ୍ବୁଧଜ ଖ୍ରୀ: ୧୬୫୧ରେ କରିଛନ୍ତି । ଏହି ଲେଖକଙ୍କ ଅନ୍ୟ ଦୁଇଟି କୃତି ମଧ୍ୟରେ ନିରୁତ୍ତିସଂଗ୍ରହ ଏବଂ ସଙ୍ଖ୍ୟାପାପକାସକ ଅନ୍ୟତମ ।

(ଚ) **ସଦ୍ଦବୁତ୍ତି**—ଏହାର ପ୍ରଣେତା ସଦ୍ଧମଗୁରୁ ଓ ଏହା ୧୬୫୬ରେ ରଚିତ । ବର୍ମାର ସାରିପୁତ୍ତ ଏହା ସମ୍ବନ୍ଧୀୟ ଏକ ଟୀକା ଲେଖିଛନ୍ତି ।

(ଛ) **କାରକପୁପ୍ଫମଂଜରୀ**—ବାକ୍ୟ-ବିଗ୍ରହ ସମ୍ବନ୍ଧୀୟ ଏହି ଗ୍ରନ୍ଥର ରଚୟିତା ହେଉଛନ୍ତି ଟେଙ୍ଗୀର ଅତ୍ତରଗମ ବଣ୍ଡାର ରାଜଗୁରୁ । ଏହା ରଜା କୀର୍ତ୍ତି ଶ୍ରୀ ରାଜସିଂହ (ଖ୍ରୀ: ୧୭୪୭—୧୭୮୦)ଙ୍କ ସମସାମୟିକ ରଚନା । ଏ ଲେଖକଙ୍କ ଅନ୍ୟ ଏକ ରଚନା 'ସୁଧୀର ମୁଖମଣ୍ଡନ' ପାଲି ଭାଷାରେ ଲିଖିତ ସମାସ ବିଷୟରେ ଆଧାରିତ ।

(ଜ) **ନୟଲକ୍ଖଣ ବିଭାବନୀ**—ଏହାର ପ୍ରଣେତା ବର୍ମାର ଭିକ୍ଷୁ ବିଚିତ୍ତାଚାର ଓ ଏହାଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ।

# ଜୈନ ଆଗମ ସାହିତ୍ୟ

ଭାରତର ସାଂସ୍କୃତିକ ଇତିହାସରେ ଜୈନ ସାହିତ୍ୟର ଦାନ ଅତି ମହତ୍ତ୍ୱପୂର୍ଣ୍ଣ । ଯେପରି ବୌଦ୍ଧମାନେ ପାଲି ମାଧ୍ୟମରେ ନିଜ ଧର୍ମତତ୍ତ୍ୱ ପରିବେଷଣ କରୁଥିଲେ ଜୈନମାନେ ମଧ୍ୟ ପ୍ରାକୃତ ଅପଭ୍ରଂଶରେ ସେହି ପ୍ରକାରେ ନିଜର ଧର୍ମତତ୍ତ୍ୱର ପର ପ୍ରଚାର କରୁଥିଲେ । ଭଗବାନ ମହାବୀର ଅର୍ଦ୍ଧମାଗଧୀରେ ସ୍ୱୀୟ ଉପଦେଶ ପ୍ରଦାନ କରିଥିଲେ । "ଭଗବଂଚ ଣଂ ଅଦ୍ଧମଗ୍ଧୀ ଭସାଏ ଧମ୍ମମାଇ-କ୍ଖଇ" । ସେ ଶୌରସେନୀ ଓ ମହାରାଷ୍ଟ୍ରୀର ମିଶ୍ରଣରେ ଏହାକୁ ଏକ ଶକ୍ତିଶାଳୀ ଭାଷାରେ ପରିଣତ କରିଥିଲେ । ଏହି ଶିଷ୍ୟ ପରଂ-ପରା କ୍ରମେ ଏହାହିଁ ଶିକ୍ଷାର ବା ପ୍ରଚାରର ମାଧ୍ୟମ ଥିଲା । ତାଙ୍କ ସମ-ସାମୟିକ ଗଣଧର (ଶିଷ୍ୟ) ମାନଙ୍କ ମଧ୍ୟରେ ଶ୍ରୀ ସୁଧର୍ମି ସ୍ୱାମୀ ଅନ୍ୟତମ ।

**ସିଦ୍ଧାନ୍ତ**—ଜୈନ ଆଗମଗୁଡ଼ିକୁ ଶ୍ରୁତ ଜ୍ଞାନ କିମ୍ବା ସିଦ୍ଧାନ୍ତ କୁହାଯାଇ ଥାଏ । ଜୈନ ପରଂପରା ଅନୁସାରେ ଅର୍ହତ ଭଗବାନ ହିଁ ଆଗମର ପ୍ରରୂପଣ କରିଥିଲେ ଏବଂ ତାହାଙ୍କ ଗଣ-ଧର ମାନେ ଏଗୁଡ଼ିକୁ ସୂତ୍ରରୂପରେ ନିବଦ୍ଧ କଲେ । ଆଗମଗୁଡ଼ିକର ସଂଖ୍ୟା ୪୬, ୧୨ଟି ଅଙ୍ଗ-ଆୟାରଙ୍ଗ, ସୂୟଗଡଙ୍ଗ, ନାୟାଧମ୍ମ କହାଓ, ଉବାସଗଦସାଓ, ଅନ୍ତଗଡଦସାଓ, ଅଣୁତ୍ତରୋ

ବବାଇୟ୍ୟବସାଓ, ପଣ୍ହବାଗଗରଣୀଇଂ, ଵବାଗୟ୍ଯୁ, ଦଂସ୍ଠିବାସୁ (କ୍ଷୁଦ୍ରିକା) ୧୨ଟି ଉପାଂଗ । ୧୦ଟି ପଇନ୍ନା ୬ଟି ଛେଦସୁତ୍ତ ୪ଟି ମୂଳସୁତ୍ତ ଏବଂ ନନ୍ଦୀ ଓ ଅନୁଯୋଗଦାର । ଏଗୁଡ଼ିକ ଶ୍ୱେତାମ୍ବର ଓ ଦିଗମ୍ବର ଉଭୟ ସଂପ୍ରଦାୟ ଆଗମ ରୂପେ ଗ୍ରହଣ କରିଥିଲେ ହେଁ ଦିଗମ୍ବରମାନେ କାଳକ୍ରମରେ ଏଗୁଡ଼ିକ ଦୂଷିତ ହୋଇ-ଯାଇଛନ୍ତି ବୋଲି ମନେ କରନ୍ତି ।*

ପ୍ରାଚୀନକାଳରେ ସମସ୍ତ ସିଦ୍ଧାନ୍ତ ୧୪ଟି ପୂର୍ବରେ ଅନ୍ତ-ର୍ନିହିତ ଥିଲା । ମହାବୀର ସ୍ୱୀୟ ୧୧ ଜଣ ଗଣଧରଙ୍କୁ ଏହାର ଉପଦେଶ ଦେଲେ । ଧୀରେ ଧୀରେ କାଳଦୋଷରୁ ଏ ସବୁ ନଷ୍ଟ ପ୍ରାୟ । କେବଳ ଜଣେ ଗଣଧର ଏଗୁଡ଼ିକୁ ଜାଣିଥିଲେ ଏବଂ ସେହି ଜ୍ଞାନ ଛ'ପୁରୁଷ ପର୍ଯ୍ୟନ୍ତ ରହିଥିଲା ।

**ତିନୋଟି ବାଚନା**—ଜୈନ ପରଂପରାନୁଯାୟୀ ମହା-ବୀର ନିର୍ବାଣର ପ୍ରାୟ ୧୬୦ ବର୍ଷ ପରେ (ଖ୍ରୀ: ପୂ: ୩୬୭) ମଗଧରେ ଭୀଷଣ ଦୁର୍ଭିକ୍ଷ ଦେଖା ଦେଇଥିଲା । ଫଳତଃ ଅନେକ ଜୈନଭିକ୍ଷୁ ଭଦ୍ରବାହୁଙ୍କ ନେତୃତ୍ୱରେ ସମୁଦ୍ର ତଟବର୍ତ୍ତୀ ଦେଶକୁ ଗମନକଲେ । ଅବଶିଷ୍ଟ ଭିକ୍ଷୁ ସ୍ଥୂଳଭଦ୍ରଙ୍କ ନେତୃତ୍ୱରେ ସେହି ସ୍ଥାନରେ ହିଁ ଅବ-ଚଳିତ ରହିଲେ । ଦୁର୍ଭିକ୍ଷ ପରେ ପାଟଳୀପୁତ୍ରରେ ସ୍ଥୂଳଭଦ୍ରଙ୍କ ନେତୃତ୍ୱକୁ ସ୍ୱୀକାର କରୁଥିବା ଶ୍ରମଣମାନଙ୍କର ସମ୍ମେଳନରେ ଶ୍ରୁତଜ୍ଞାନକୁ ବ୍ୟବସ୍ଥିତ କରିବାକୁ ଖଣ୍ଡ ଖଣ୍ଡ କରି ଏଗାରଟି ଅଙ୍ଗରେ ସଂକଳନ କଲେ । ଚତୁର୍ଦଶୀ ପୂର୍ବଧାରୀ ଭଦ୍ରବାହୁ ନେପାଳରେ ଅବସ୍ଥାନ କରୁଥିବାରୁ କେତେକ ସାଧୁ ତାଙ୍କ ନିକଟକୁ

* ପ୍ରା: ସା: ଇ ପୃ— ୩୩, ୩୪ ଓ ୩୫ ।

ଯାଇ ସେଠାରୁ ଯାହା କିଛି ପାଇଲେ ପାଟଳୀପୁତ୍ର ସମ୍ମେଳନରେ ସେ ସବୁକୁ ସି ାନ୍ତ ରୂପରେ ସଂକଳିତ କରିନେଲେ । ଏହା ହେଉଛି ପାଟଳିପୁତ୍ର ବାଚନା ।

**ମାଥୁର ବାଚନା**--ମହାବୀର ନିର୍ବାଣର ୮୨୭ କିମ୍ବା ୮୪୦ ବର୍ଷ ପରେ (ଖ୍ରୀ: ୩୦୦—୩୧୩)ର ଦୁର୍ଭିକ୍ଷ ପରେ ଆଗମଗୁଡ଼ିକୁ ସୁବ୍ୟବସ୍ଥିତ ରୂପ ଦେବା ପାଇଁ ମଥୁରାରେ ଏକ ସମ୍ମିଳନୀ ଆହୂତ ହୋଇଥିଲା । ଯାହା କିଛି ସ୍ମରଣ ଥିଲା ସେ-ଗୁଡ଼ିକୁ ଏଠାରେ କାଳିକ ଶ୍ରୁତ ରୂପରେ ଏକତ୍ରିତ କରାଗଲା ।

ଠିକ୍ ଏହି ସମୟରେ ନାଗାର୍ଜୁନଙ୍କ ନେତୃତ୍ୱରେ ବଲଭୀ ସମ୍ମେଳନରେ ବିସ୍ମୃତ ସୂତ୍ରାବଳୀକୁ ସ୍ମରଣ କରି ସୂତ୍ରାନ୍ତର ସଙ୍ଘଟନାତ୍ମକ ସିଦ୍ଧାନ୍ତର ଉଦ୍ଧାର କରାଗଲା । ଏହା ହେଲା ବଲଭି ବାଚନା ।

ପରେ ଖ୍ରୀ: ୪୫୩—୪୬୬ ମଧ୍ୟରେ ବଲଭୀରେ ଦ୍ୱିତୀୟ ସମ୍ମେଳନ ହୋଇ ବିବିଧ ପାଠାଂତର ଓ ବାଚନା ଭେଦ ପ୍ରଭୃତିର ସମନ୍ୱୟ କରି ମାଥୁରୀ ବାଚନାର ଆଧାରରେ ଆଗମଗୁଡ଼ିକୁ ସଂକଳିତ କରି ସେଗୁଡ଼ିକୁ ଲିପିବଦ୍ଧ କରାଗଲା । ଏହା ଜୈନ ଆଗମ ଗୁଡିକର ଅନ୍ତିମ ବାଚନା ! ଶ୍ୱେତାମ୍ବର ସମ୍ପ୍ରଦାୟ ଦ୍ୱାରା ମାନ୍ୟ ବର୍ତ୍ତମାନ ଆଗମ ଏହି ସଂକଳନର ହିଁ ପରିଣାମ ।

ବର୍ତ୍ତମାନ ଆଗମଗୁଡ଼ିକର ଭାଷା ଭଗବାନ ମହାବୀରଙ୍କ ଭାଷା ରୂପରେ ସୁରକ୍ଷିତ ହୋଇ ପାରିନାହିଁ । କାରଣ ମହାବୀର ନିର୍ବାଣର ୧୦୦୦ ବର୍ଷର ଦୀର୍ଘ ସମୟ ମଧ୍ୟରେ ଆଗମ ସାହିତ୍ୟ ଯଥେଷ୍ଟ କ୍ଷତଗ୍ରସ୍ତ ହୋଇ ଯାଇଛି ।

ଟୀକାକାର—ଅଭୟ ଦେବ ଓ ମଲୟଗିରି ଭାଷା ସମ୍ବନ୍ଧୀୟ ବହୁଧତା ଦର୍ଶାଇଛନ୍ତି । ମୁନିଜନ ବିଜୟଙ୍କ ଠାରୁ ଜ୍ଞାତ ଯେ ଭଗବତୀ ସୂତ୍ର ଆଦି ପ୍ରାଚୀନ ପୋଥିର ମହାବୀର ସ୍ଥାନରେ ମାଧବୀରେ ଏବଂ ଦେବେନ୍ଦ୍ର ସ୍ଥାନରେ ଦେବେନ୍ଦ୍ର ଆଦି ପାଠ ମିଳେ । ଦ୍ରଷ୍ଟବ୍ୟ :- (ହେମା ୮/୧/୧୭୭) ଆଚାରଙ୍ଗ ସୂତ୍ରକୃତାଙ୍ଗ, ଉତ୍ତରାଧ୍ୟୟନ, ଦଶବୈକାଳିକ, ନଶୀଥ, ବ୍ୟବହାର ଏବଂ ବୃହତ କଳ୍ପ ସୂତ୍ର ପ୍ରଭୃତି ଆଗମଗୁଡ଼ିକର ଭାଷା ଖୁବ୍ ପ୍ରାଚୀନ କହିଲେ ଅତ୍ୟୁକ୍ତି ହେବ ନାହିଁ ।*

ନାନା ବିଷୟବସ୍ତୁ ଭିତର ଦେଇ ଗତି କରିଥିଲେ ହେଁ ଆଗମ ସାହିତ୍ୟର ଅବଶିଷ୍ଟ ଅଂଶର ଯଥେଷ୍ଟ ମହତ୍ତ୍ୱ ରହିଅଛି । ଏଥିରେ ପ୍ରାଚୀନତମ ଜୈନ ପରମ୍ପରା, କିମ୍ବଦନ୍ତୀ, ଲୋକକଥା, ତତ୍‌କାଳୀନ ରୀତିନୀତି, ଧର୍ମୋପଦେଶ ପଦ୍ଧତି, ଆଚାର ବିଚାର, ସଂଯମ-ପାଳନ ଇତ୍ୟାଦିର ବିଧିବିଧାନ ଦେଖିବାକୁ ମିଳେ । ଉଦାହରଣସ୍ୱରୂପ ବ୍ୟାଖ୍ୟା ପ୍ରଜ୍ଞପ୍ତିରେ ସାମାଜିକ ସ୍ଥିତିର ପୂର୍ଣ୍ଣ ଚିତ୍ର ଦେଖିବାକୁ ମିଳେ । ପୁନଶ୍ଚ କଳ୍ପ ସୂତ୍ରରେ ମହାବୀରଙ୍କ ଜୀବନୀ, ତାଙ୍କର ବିହାରଚର୍ଯ୍ୟା ଏବଂ ଜୈନ ଶ୍ରମଣମାନଙ୍କ ସ୍ଥବିରାବଳୀ ସ୍ଥାନ ପାଇଛି ।

ଜ୍ଞାତୃଧର୍ମ କଥାରେ ନିର୍ଗ୍ରନ୍ଥ ପ୍ରବଚନର ଉଦ୍‌ବୋଧକ ବହୁ ଭାବପୂର୍ଣ୍ଣ କଥା କାହାଣୀ, ଉପମା ଏବଂ ଦୃଷ୍ଟାନ୍ତ ଛଳରେ ସଂଗୃହୀତ, ସେହିପରି ରେ ମହାବୀରଙ୍କ ସରଳ ଉପଦେଶ ସଙ୍କଳିତ ଉପରେ

* ପ୍ରା: ସା: ଇ ପୃ—୩୯ - ୪୧ ।

ଆଲୋକପାତ କରାଯାଇଛି । ଆଚାରାଙ୍ଗ, ସୂତ୍ରକୃତାଙ୍ଗ, ଉତ୍ତରାଧ୍ୟୟନ ଏବଂ ଦଶ ବୈକାଳିକ ସୂତ୍ରମାନଙ୍କ ଅଧ୍ୟୟନ ଦ୍ୱାରା ଜୈନ ମୁନିମାନଙ୍କର ପ୍ରଥମ କାଳର ଆଚାର ବିଚାର ପରିଚୟ ମିଳେ । ରାଜପ୍ରଶ୍ନୀୟ, ଜୀବାଭିଗମ ଏବଂ ପ୍ରଜ୍ଞାପନା ଇତ୍ୟାଦିରେ ବାସ୍ତୁଶାସ୍ତ୍ର, ସଙ୍ଗୀତ, ନାଟ୍ୟ, ବିବିଧ କଳା, ପ୍ରାଣିବିଜ୍ଞାନ, ବନସ୍ପତି ବିଜ୍ଞାନ ଇତ୍ୟାଦି ବହୁ ବିଷୟର ବର୍ଣ୍ଣନା ମିଳେ । ଛେଦସୂତ୍ର ପ୍ରାଚୀନତମ ଆଗମ ସାହିତ୍ୟର ଅନ୍ତର୍ଗତ । ଏହା ନିର୍ଗ୍ରନ୍ଥ ଶ୍ରମଣମାନଙ୍କର ଆହାର-ବିହାର, ଗମନାଗମନ, ରୋଗଚିକିତ୍ସା, ବିଦ୍ୟାମନ୍ତ୍ର, ସ୍ୱାଧ୍ୟାୟ, ଉପସର୍ଗ, ଦୁର୍ଭିକ୍ଷ, ମହାମାରୀ, ତପ, ଉପବାସ, ପ୍ରାୟଶ୍ଚିତ୍ତ (ଆଦି) ସମ୍ବନ୍ଧୀୟ ବିପୁଳ ସାମଗ୍ରୀରେ ଭରପୂର । ଭଗବାନ ମହାବୀରଙ୍କ ଦ୍ୱାରା ଉପଦିଷ୍ଟ ବୃହତ୍କଳ୍ପ ସୂତ୍ରରେ ଭିକ୍ଷୁ, ଭିକ୍ଷୁଣୀମାନଙ୍କର ବିହାର ସ୍ଥାନ ବର୍ଣ୍ଣିତ । ପୂର୍ବରେ ଅଙ୍ଗ ମଗଧ ପର୍ଯ୍ୟନ୍ତ, ଦକ୍ଷିଣରେ କୌଶାମ୍ବୀ, ପଶ୍ଚିମରେ ଥୂଣା (ସ୍ଥାନେଶ୍ୱର) ଏବଂ ଉତ୍ତରରେ କୁଣାଳ (ଉତ୍ତର କୋଶଳ) ପର୍ଯ୍ୟନ୍ତ ବିସ୍ତୃତ । ଭାଷାଶାସ୍ତ୍ର ଦୃଷ୍ଟିରୁ ମଧ୍ୟ ପ୍ରାକୃତ ଭାଷାର ଏହି ପ୍ରାଚୀନତମ ସାହିତ୍ୟ ଅତ୍ୟନ୍ତ ଉପଯୋଗୀ ଏବଂ ମହତ୍ତ୍ୱପୂର୍ଣ୍ଣ ।

ଏହି ଆଗମଗୁଡ଼ିକର ସମୟ ନିର୍ଦ୍ଧାରଣ ସହଜସାଧ୍ୟ ନୁହେଁ । କେତେକ ଅଂଶକୁ ମହାବୀରଙ୍କ ସମସାମୟିକ ବୋଲି ଧରି ନିଆଯାଇ ପାରେ କିନ୍ତୁ କେଉଁ ଅଂଶ ସାକ୍ଷାତ୍ ମହାବୀରଙ୍କ ରଚନା ତାହା କହିବା ସମ୍ଭବପର ନୁହେଁ । ଅଂଗ, ମୂଳସୂତ୍ର ଏବଂ ଛେଦସୂତ୍ର ବିଷୟ ଓ ଭାଷା ଦୃଷ୍ଟିରୁ ପ୍ରାଚୀନ ବୋଲି ଜଣାଯାଏ । ତତ୍ପରବର୍ତ୍ତୀ ସାହିତ୍ୟ ଉପାଙ୍ଗ, ପ୍ରକୀର୍ଣ୍ଣକ ତଥା ନନ୍ଦୀ । ଅନୁଯୋଗ ଦ୍ୱାରା ଆଗମ-ଗୁଡ଼ିକର ଅନ୍ତିମ ସଂକଳନ ସମୟ ୫ମ ଖ୍ରୀଷ୍ଟାବ୍ଦକୁ ହିଁ ଏହାର

ଶେଷ ସମସ୍ତ ବୋଲି ଗ୍ରହଣ କରାଯାଇ ପାରେ । ଦ୍ୱାଦଶାଙ୍ଗ ସବୁଠାରୁ ପ୍ରାଚୀନ । ଏହାକୁ ବେଦ କୁହାଯାଏ । ଏହାର ଅନ୍ୟନାମ ଗଣିପିଟକ । ଏହି ଅଙ୍ଗଗୁଡ଼ିକ ମହାବୀରଙ୍କ ଗଣଧର (ଶିଷ୍ୟ) ସୁଧର୍ମା ସ୍ୱାମୀଙ୍କ ରଚିତ ( ଦେଖ, ସମବାୟାଙ୍ଗ ନନ୍ଦୀସୂତ୍ର) ।

## ଅଂଗ

**ପ୍ରଥମ ଅଂଗ** :—ଆୟାରଙ୍ଗ ସୁତ୍ତ (ଆଚାରଙ୍ଗ ସୂତ୍ର) : ଏଥିରେ ଜୈନ ମୁନିମାନଙ୍କର ଆଚାର ବ୍ୟବହାର ସମ୍ପର୍କୀୟ ବିଧିବିଧାନ ବର୍ଣ୍ଣିତ । ଏହା ଦୁଇ ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡଟି ପ୍ରାଚୀନ ଓ ମହତ୍ତ୍ୱପୂର୍ଣ୍ଣ । ଏଥିରେ ଗଦ୍ୟ ଓ ପଦ୍ୟ ଉଭୟର ବ୍ୟବହାର ଦେଖାଯାଏ । ଏହାର ଶୈଳୀ ପ୍ରାଚୀନତମ ଜୈନ-ଗ୍ରନ୍ଥମାନଙ୍କ ମଧ୍ୟରେ ଅନ୍ୟତମ । ଏଥିରେ ଅନୁଷ୍ଟୁଭ୍ ଛନ୍ଦରେ ରଚିତ କତିପୟ ଗାଥା ପରିଦୃଷ୍ଟ ହୁଏ ।

ମୃତ୍ୟୁ ସମ୍ବନ୍ଧରେ ବ୍ୟକ୍ତ କରନ୍ତି ଯେ : "ନତ୍ଥି କାଲସ୍ସ-ଣାଗମୋ । ସବ୍ବେପାଣା ପିୟା ଉୟା, ସୁହସାୟା, ଦୁକ୍ଖ ପଡିକ୍କୂଲା ଅପ୍ପିୟବହା, ପିୟଜୀବିଣୋ ଜୀବିଉକାମା । ସବ୍ବେସିଂ ଜୀବିୟଂ ପିୟଂ ।" ଅର୍ଥାତ୍ ମୃତ୍ୟୁର ଆଗମନ ନିଶ୍ଚିତ । ସମସ୍ତ ପ୍ରାଣୀଙ୍କର ନିଜ ନିଜର ଜୀବନ ଅତ୍ୟନ୍ତ ପ୍ରିୟ । ସମସ୍ତେ ସୁଖ ଚାହାନ୍ତି । ଦୁଃଖ କେହି ଚାହାନ୍ତି ନାହିଁ, ମରଣ ସମସ୍ତଙ୍କର ଅପ୍ରିୟ, ସମସ୍ତେ ବଂଚି ରହିବାକୁ ଚାହାନ୍ତି । ପ୍ରତ୍ୟେକ ପ୍ରାଣୀ ଜୀବନ ପ୍ରତି ଆସକ୍ତ, ସମସ୍ତଙ୍କୁ ଜୀବିତ ରହିବାକୁ ଭଲ ଲାଗେ ।

ଶୀତୋଷ୍ଣୀୟ ଅଧ୍ୟୟନରେ ଭିକ୍ଷୁ ମୁନିର ସ୍ୱରୂପ, ସମ୍ୟକଦର୍ଶୀର ଲକ୍ଷଣ ଏବଂ କଷାୟ-ତ୍ୟାଗ ଇତ୍ୟାଦିର ପ୍ରତିପାଦନ ଦ୍ରଷ୍ଟବ୍ୟ ।

ଧ୍ୟାନର ଓ ସ୍ୱାଧ୍ୟାୟର ସମନ୍ୱୟ ରଖିବାପାଇଁ ଉପଦେଶରେ —କା ଅରଈ ? କେ ଆଣଂଦେ ; ଇତ୍ଥଂପି ଅଗ୍ଗଇଚରେ ସବ୍ବଂ ହାସଂ ପରିଚ୍ଚଜ୍ଜ ଆଲୀନ ଗୁତ୍ତୋ ପରିବ୍ବଏ ॥ ଅର୍ଥାତ୍ ଅରତି କଣ ? ଆନନ୍ଦ ବା କଣ ? ଏଥିରେ ଆସକ୍ତି ନରଖି ସଂଯମ ପୂର୍ବକ ବିଚରଣ କର । ସମସ୍ତ ପ୍ରକାର ହାସ୍ୟ ପରିତ୍ୟାଗ କର । ଏବଂ କାୟ-ମନୋବାକ୍ୟର ଗୋପନ କରି ସଂଯମ ଚେଷ୍ଟା କର ।

ଉପଧାନ-ଶ୍ରୁତ ଅଧ୍ୟୟନରେ ମହାବୀରଙ୍କ କଠୋର ସାଧନାର ବର୍ଣ୍ଣନା ରହିଛି । ସେ ନଗ୍ନ ଶରୀର ନେଇ ବୁଲୁଥିଲେ ଲୋକେ ତାଙ୍କୁ ମାରନ୍ତି, ତଡ଼ାନ୍ତି, କିନ୍ତୁ ସେ (ମହାବୀର) ବରାବର ଧ୍ୟାନମଗ୍ନ ରହନ୍ତି । ଲାଢ ନିବାସୀ ତାଙ୍କୁ କଷ୍ଟ ଦେଲେ, କୁକୁର କାମୁଡ଼ାଇଲେ, ଲାଠି ଓ ମୁଷ୍ଟି ପ୍ରହାର କଲେ, ତାଙ୍କ ଉପରେ ଫଳ, ଢେଲା ଓ ପଥର ପକାଇଲେ ଓ ତାଙ୍କୁ ବହୁ କଷ୍ଟ ଦେଲେ । କିନ୍ତୁ ଯୁଦ୍ଧଙ୍କର ପରି ମହାବୀର ଅଟଳ ରହିଲେ । × × ପ୍ରାୟଃ ମାସ ମାସ ଧରି ସେ ପାଣି ପିଉ ନଥିଲେ, ଷଷ୍ଠ, ଅଷ୍ଟମ କିମ୍ବା ଦଶମ ଦିନରେ କେବେ ଖାଦ୍ୟ ଖାଉଥିଲେ ଏବଂ ଧ୍ୟାନରେ ନିରନ୍ତର ମଗ୍ନ ରହୁଥିଲେ ।

**ଦ୍ୱିତୀୟ ଅଂଗ**—'ଚୂଳ' (ପରିଶିଷ୍ଟ ରୂପରେ) ରେ ଭିକ୍ଷା, ପର୍ଯ୍ୟଟନ, ଭାଷଣାଦି ସମ୍ବନ୍ଧୀୟ ନିୟମ ବର୍ଣ୍ଣିତ ।

ସୂୟଗଡଂଗ (ସୂତ୍ର କୃତାଙ୍ଗ) ସୂତଗଡ, ସୂତ୍ରକଡ ଅଥବା ସୂୟଗଡଂ ନାମ ମଧ୍ୟ ପ୍ରଚଳିତ । ସ୍ୱସମୟ ଓ ପର ସମୟ ଦର୍ଶାଉ ଥିବାରୁ ଏହା ସୂତ୍ର କୃତାଙ୍ଗ ନାମରେ ଖ୍ୟାତ । ଏଥିରେ ଦୁଇଟି ଶ୍ରୁତସ୍କନ୍ଧ ଅଛି ।*

---

* ହରମନ ଜାକୋବି, ସେକ୍ରେଡ୍ ବୁକ୍ସ ଅବ୍ଦ ଇଷ୍ଟ, ଭାଗ ୪୫ ।

ପ୍ରଥମ ଶ୍ରୁତସ୍କନ୍ଧରେ ସ୍ୱସମୟ ଏବଂ ପର ସମୟର ନିରୂପଣ କରାଯାଇଛି । ପଞ୍ଚଭୂତବାଦୀ, ଅଦ୍ୱୈତବାଦୀ, ଜୀବ ଓ ଶରୀରକୁ ଅଭିନ୍ନ ମାନିବା, ଜୀବକୁ ପୁଣ୍ୟ ପାପର ଅକର୍ତ୍ତା ମାନିବା, ପଞ୍ଚଭୂତଗୁଡ଼ିକ ସହ ଆତ୍ମାକୁ ଷଷ୍ଠଭୂତ ସ୍ୱୀକାର କରିବା ତଥା କୌଣସି କ୍ରିୟାକୁ ଫଳରେ ବିଶ୍ୱାସ ନ କରିବା, ଲୋକଙ୍କ ସମ୍ବନ୍ଧରେ ବିବେଚିତ ନିୟତିବାଦ, ଅଜ୍ଞାନବାଦ, ଜଗତ୍‌କର୍ତ୍ତୃତ୍ୱ-ବାଦ ଏବଂ ଲୋକବାଦର (ନିରସନ) ବହିଷ୍କାର କରାଯାଇଛି । ଶରୀରର ଅନିତ୍ୟତା, ଉପସର୍ଗ ସହନ (ଦୁର୍ଯୋଗ ଆଦି), କାମ ପରିତ୍ୟାଗ ଏବଂ ଅଶରଣତ୍ୱ ଇତ୍ୟାଦିର ପ୍ରରୂପଣ ଦ୍ରଷ୍ଟବ୍ୟ । ସ୍ତ୍ରୀ ପରିଜ୍ଞା ଅଧ୍ୟୟନରେ କିପରି ସାଧୁମାନଙ୍କୁ ସ୍ତ୍ରୀ ଜନ୍ୟ ଉପସର୍ଗ (ଦୁଃଖ, ଅବସାଦ, ଗ୍ଳାନି) ସହିବାକୁ ପଡିଥାଏ ତାହା ବର୍ଣ୍ଣିତ । କୌଣସି ସାଧୁ କୌଣସି ସ୍ତ୍ରୀର ବଶୀଭୂତ ହେଲେ ନିଜ ମସ୍ତକରେ ତାର ପଦାଘାତ ସହନ କରିବାକୁ ପଡ଼େ । ସ୍ତ୍ରୀ ସାଧୁକୁ ତା ପାଇଁ ସବୁ ପ୍ରକାର କୁତ୍ସିତ କର୍ମ କରିବାକୁ ବାଧ୍ୟ କରେ । ସମାଧି ଅଧ୍ୟୟନରେ ଦର୍ଶନ, ଜ୍ଞାନ, ଚରିତ୍ର ଏବଂ ତପରୂପ ସମାଧିର ଉପାଦେୟତା ଲକ୍ଷିତ । ମାର୍ଗ ଅଧ୍ୟୟନରେ ମହାବିବେକ ମାର୍ଗ, ଯଥା ତଥା ଅଧ୍ୟୟନରେ ଉତ୍ତମ ସାଧୁ ଆଦିର ଲକ୍ଷଣ ଗ୍ରନ୍ଥ ଅଧ୍ୟୟନରେ ସାଧୁମାନଙ୍କ ଅନ୍ତର-ବାହ୍ୟରର ବର୍ଣ୍ଣନା, ଆଦାନ ଅଧ୍ୟୟନରେ ସ୍ତ୍ରୀ ସେବନାଦିର ତ୍ୟାଗ ବିଧାନ, ଏବଂ ଗାଥା ଅଧ୍ୟୟନରେ ମାହଣ (ବ୍ରାହ୍ମଣ), ଶ୍ରମଣ, ଭିକ୍ଷୁ ଏବଂ ନିର୍ଗ୍ରନ୍ଥର ବ୍ୟାଖ୍ୟା ରହିଛି । ବ୍ରାହ୍ମଣ ମାନ୍ୟତାର ଆକ୍ଷେପରେ :

"ଆଚମନ କଲେ ଯଦି ମୁକ୍ତି ମିଳେ, ତାହାହେଲେ ମାଛ, କଇଁଛ, ସର୍ପ ଇତ୍ୟାଦିକୁ ପରମ ମୁକ୍ତି ମିଳିବ । ଯଦି ଜଳରେ ପାପ

ଧୋଇ ହୋଇଯାଏ, ତେବେ ପୁଣ୍ୟ ମଧ (ତା ସଙ୍ଗେ) କାହିଁକି ଧୋଇ ନ ହେବ ? ଯଦି ଅଗ୍ନି ଜଳବାତରେ ମୁକ୍ତି ମିଳେ, ତାହାହେଲେ କମାର ?? ତଥା ଅନ୍ୟ କାରିଗରମାନଙ୍କୁ ମୁକ୍ତି ହିଁ ବୁଝିବା ଉଚିତ ।”

ଭାଷା ଓ ଭାବ ଦୃଷ୍ଟିରୁ ଉପରୋକ୍ତ ଦୁଇ ଅଙ୍ଗ ମହତ୍ତ୍ୱପୂର୍ଣ୍ଣ ।

**ତୃତୀୟ ଓ ଚତୁର୍ଥ ଅଙ୍ଗ :**—ଠାଣାଙ୍ଗ (ସ୍ଥାନାଙ୍ଗ) ଓ ସମବାୟାଙ୍ଗର ସାହିତ୍ୟିକ ମହତ୍ତ୍ୱ ନାହିଁ । ସମବାୟାଙ୍ଗରେ ବାର ଅଙ୍ଗ ଓ ଚଉଦ ପୂର୍ବମାନଙ୍କ ବର୍ଣ୍ଣନ ତଥା ବ୍ରାହ୍ମୀ ପ୍ରଭୃତି ଅଠରଟି ଲିପିର ଓ ନାଳୀବୃତ୍ତର ଉଲ୍ଲେଖ ରହିଛି । ଏହି ଅଂଗରେ ଅର୍ଧ-ମାଗଧୀ ଭାଷା ସମ୍ବନ୍ଧରେ କୁହାଯାଇଛି ଯେ ଏହା ଆର୍ଯ୍ୟ ଅନାର୍ଯ୍ୟ ତଥା ପଶୁ ପକ୍ଷୀମାନଙ୍କର ସୁଦ୍ଧା ବୋଧଗମ୍ୟ ।

**ପଞ୍ଚମ ଅଙ୍ଗ :**—‘ବିୟାହପଣ୍ଣତ୍ତି’ (ବ୍ୟାଖ୍ୟା ପ୍ରଜ୍ଞପ୍ତି) ଏହାର ଅନ୍ୟନାମ ଭଗବତୀ ସୂତ୍ର । ଜୀବାଦି ପଦାର୍ଥମାନଙ୍କର ବ୍ୟାଖ୍ୟାଗୁଡ଼ିକର ପ୍ରରୂପଣ ହୋଇଥିବାରୁ ଏହାକୁ ବ୍ୟାଖ୍ୟା ପ୍ରଜ୍ଞପ୍ତି କୁହାଯାଏ । ଗୌତମ ଗଣଧର ଭଗବାନ୍ ମହାବୀରଙ୍କୁ ଜୈନ ସିଦ୍ଧାନ୍ତ ସମ୍ବନ୍ଧୀୟ ପ୍ରଶ୍ନ ପଚାରନ୍ତି ଏବଂ ମହାବୀର ତାର ଉତ୍ତର ଦିଅନ୍ତି ।

ମହାବୀରଙ୍କ ସମ୍ବନ୍ଧରେ କେତେକ ଐତିହାସିକ ତଥ୍ୟ ଏଥିରେ ମିଳେ । ମହାବୀର ବୈଶାଳୀ ନିବାସୀ ଏବଂ ତାଂକ ଶ୍ରାବକଗଣଙ୍କୁ ବେସାଲିୟସାବୟ (ବୈଶାଳୀୟଂକ ଅର୍ଥାତ୍ ମହାବୀରଂକ ଶ୍ରାବକ) ରୂପରେ ଉଲ୍ଲେଖ କରାଯାଇଛି । ଶ୍ରମଣୋ-

ପାସକମାନଂଙ୍କ ବର୍ଣ୍ଣନରେ ତୁଙ୍ଗିୟା ନଗରରେ ବହୁ ଶ୍ରମଣୋପାସକ ରହୁଥିଲେ । ସେମାନଂକର ବିଶାଳ ଓ ବିସ୍ତୃତ ଭବନ ଥିଲା । ଶୟନ, ଆସନ, ଯାନବାହନ ଯଥେଷ୍ଟ ପରିମାଣରେ ଥିଲା । ପ୍ରଚୁର ଧନ ଓ ସୁନାରୁପା ଥିଲା । ଟଙ୍କା ସୁଧରେ ଦେଇ ପ୍ରଚୁର ଧନ ଅର୍ଜନ କରୁଥିଲେ । ଅନେକ ପ୍ରକାରର ବ୍ୟଞ୍ଜନ ପ୍ରସ୍ତୁତ ହେଉଥିଲା । ବହୁ ଦାସଦାସୀ, ଗାଈ, ମହିଷ, ମେଣ୍ଢା ପ୍ରଭୃତି ସମ୍ପତ୍ତିର ପ୍ରାଚୁର୍ଯ୍ୟ ଥିଲା । ସେମାନେ ଜୀବ ଓ ଅଜୀବଙ୍କର ସ୍ୱରୂପକୁ ଭଲଭାବେ ବୁଝିଥିଲେ । ପୁଣ୍ୟ-ପାପର ମଧ୍ୟ ସମ୍ୟକ୍ ଜ୍ଞାନ ଥିଲା । ଆସ୍ରବ, ସଂବର, ନିର୍ଜରା, କ୍ରିୟା, ଅଧିକରଣ, ବନ୍ଧ ଏବଂ ମୋକ୍ଷ ପ୍ରଭୃତିର ସ୍ୱରୂପ ଜାଣିଥିଲେ । ନିର୍ଗ୍ରନ୍ଥ ପ୍ରବଚନରେ ଶଙ୍କା ରହିତ, ଆକାଙ୍କ୍ଷା ରହିତ ଏବଂ ବିଚିକିତ୍ସା-ରହିତ ଥିଲେ । ଶାସ୍ତ୍ରାର୍ଥକୁ ସେମାନେ ଗ୍ରହଣ କରିଥିଲେ । ଅଭିଗତ କରିଥିଲେ । କେବଳ ନିର୍ଗ୍ରନ୍ଥପ୍ରବଚନ ଛଡ଼ା ଅନ୍ୟ ସବୁକୁ ନିଷ୍ପ୍ରୟୋଜନ ମାନୁଥିଲେ । ସେମାନଙ୍କ ଉଦାରତା ହେତୁ ସେମାନଙ୍କ ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥିଲା । ଯେ କୌଣସି ଗୃହ କିମ୍ବା ଅନ୍ତଃପୁରକୁ ଗଲେ ସେଠି ଆନଂଦ ଉତ୍ପନ୍ନ କରୁଥିଲେ । ଶୀଳବ୍ରତ, ଗୁଣବ୍ରତ, ବିରମଣ, ପ୍ରତ୍ୟାଖ୍ୟାନ, ପ୍ରୋଷଧ ଓ ଉପବାସ ଇତ୍ୟାଦି ଦ୍ୱାରା ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟା ଏବଂ ପୂର୍ଣ୍ଣିମା ଦିନମାନଙ୍କରେ ପୂର୍ଣ୍ଣ ପ୍ରୋଷଧ ପାଳନ କରୁଥିଲେ ।

ପାର୍ଶ୍ୱନାଥଙ୍କଠାରୁ ମହାବୀର ପର୍ଯ୍ୟନ୍ତ ସମସ୍ତ ତୀର୍ଥଙ୍କରଙ୍କ ଜୀବନ—ଘଟଣାବଳୀ, ବିରୋଧୀ ସମ୍ପ୍ରଦାୟମାନଙ୍କର ବୃତ୍ତାନ୍ତ, ଆହର୍ତମାନଂକ ଭଗବତଂକ ସ୍ୱର୍ଗ-ସୁଖ ବର୍ଣ୍ଣନା କାବ୍ୟାତ୍ମକ

ଢ଼ଙ୍ଗରେ ହୋଇଛି । ଉଦାହରଣ, ଦୃଷ୍ଟାନ୍ତ, ଉପମା ଓ ରୂପକାଦି ସାହାଯ୍ୟରେ ଗମ୍ଭୀର ବିଷୟଗୁଡ଼ିକୁ ଏଥିରେ ବିଶଦ୍‌ଭାବରେ ବୁଝାଇ ଦିଆଯାଇଛି ।

**ଷଷ୍ଠ ଅଙ୍ଗ** :—'ଣାୟାଧମ୍ମ କହାଓ' (ନ୍ୟାୟ ଧର୍ମକଥା କିମ୍ବା ଜ୍ଞାତାଧର୍ମ କଥା) ର ଜ୍ଞାତାର ଅର୍ଥ 'ଉପମା, ଉଦାହରଣ, ଦୃଷ୍ଟାନ୍ତ । ଏହି ଗ୍ରନ୍ଥରେ ସଂଯମ, ତପ ତ୍ୟାଗାଦିକୁ ଉଦାହରଣ ତଥା ଲୋକ ପ୍ରଚଳିତ କଥାମାନଙ୍କ ଦ୍ୱାରା ପ୍ରଭାବଶାଳୀ ଏବଂ ରୋଚକ ଶୈଳୀରେ ବୁଝାଇ ଦିଆଯାଇଛି ।'

ପ୍ରଥମ ଶ୍ରୁତାଙ୍ଗରେ ୧୯ଟି ଅଧ୍ୟୟନରେ ଜ୍ଞାତ କଥାମାନ ଏବଂ ଦ୍ୱିତୀୟରେ ୧୦ଟି ବର୍ଗରେ ଧର୍ମ କଥାମାନ ରହିଛି । ଏହି କଥାଗୁଡ଼ିକ ପରସ୍ପର ସଂଯୁକ୍ତ ହେଲେହେଁ ସ୍ୱତନ୍ତ୍ର ଅସ୍ତିତ୍ୱ ରକ୍ଷା କରିଛନ୍ତି । ସବୁଗୁଡ଼ିକର ଲକ୍ଷ୍ୟ ଏକ—ସଂଯମ, ତପ ଏବଂ ତ୍ୟାଗ । ଏତଦ୍‌ବ୍ୟତୀତ ଏଗୁଡିକ ବିବିଧ ପରଲୋକର ଯାତ୍ରା ବର୍ଣ୍ଣନା, ବୈରାଗ୍ୟୋଦ୍ଦୀପକ ଓ ଧାର୍ମିକ ତତ୍ତ୍ୱ ସମ୍ବଳିତ ।

ରାଜଗୃହ ନଗରର ରାଜା ଶ୍ରେଣିକଙ୍କ ପୁତ୍ର ଅଭୟକୁମାର ରାଜମନ୍ତ୍ରୀ ପଦରେ ରହିଥିଲେ । ରାଣୀ ଧାରିଣୀ ଗର୍ଭବତୀ ହୋଇଥିଲେ । ତାଙ୍କୁ ସ୍ୱପ୍ନରେ ଜଣାଗଲା ଯେ ପୁତ୍ରଲାଭ ହେବ । ପୁତ୍ରର ନାମ ହେଲା ମେଘକୁମାର । ଆଠ ବର୍ଷ ବୟସରେ ସେ କଳାଚାର୍ଯ୍ୟଙ୍କ ନିକଟକୁ ବିଦ୍ୟାଶିକ୍ଷା ଉଦ୍ଦେଶ୍ୟରେ ଗଲେ ।

ଯୁବାବସ୍ଥାରେ ରାଜକନ୍ୟାମାନଙ୍କ ସହ ତାଙ୍କର ବିବାହ ସମାହିତ ହେଲା । ଥରେ ଭଗବାନ ମହାବୀର ରାଜଗୃହ

ଅସିଥିଲେ । ମେଘକୁମାର ମହାବୀରଙ୍କ ଦର୍ଶନ ପାଇଁ ଗଲେ ଏବଂ ମହାବୀରଙ୍କ ଧର୍ମଶ୍ରୁତି ପ୍ରବ୍ରଜ୍ୟା ହେବାକୁ ତାଙ୍କର ଇଚ୍ଛା ହେଲା । ମେଘକୁମାରଙ୍କ ମାଁ ଏହା ଶୁଣି ମୂର୍ଚ୍ଛିତା ହୋଇ ପଡ଼ିଲେ । ଏବଂ ଚେତନା ଲାଭ କଲାପରେ ମେଘକୁମାରଙ୍କୁ ନିର୍ଗ୍ରନ୍ଥ ଧର୍ମର କଠୋରତା ପ୍ରତିପାଦନ କରୁଥିବା ବିଭିନ୍ନ ଉଦାହରଣ ଦେଇ ପ୍ରବ୍ରଜ୍ୟା ଗ୍ରହଣରୁ ବିରତ କରାଇବାକୁ ଚେଷ୍ଟା କଲେ । କିନ୍ତୁ ମେଘକୁମାର ସେସବୁକୁ କର୍ଣ୍ଣପାତ କଲେ ନାହିଁ । ସାଧୁ ଅବସ୍ଥାରେ ବେଳେବେଳେ କଠିନ କାର୍ଯ୍ୟସାଧନ କରିବାକୁ ପଡ଼ିବାରୁ ସେ ଅନାଥର ଧର୍ମ ତ୍ୟାଗ କରି ଗୃହସ୍ଥ ଧର୍ମକୁ ଫେରି ଆସିବାକୁ ଚାହିଁଲେ । କିନ୍ତୁ ମହାବୀର ଭଗବାନ୍ ମେଘକୁମାରଙ୍କୁ ପୂର୍ବଭବ କଥା ଶୁଣାଇବା ଯୋଗୁ ସେ ଉକ୍ତ ଚିନ୍ତାରୁ କ୍ଷାନ୍ତ ହେଲେ । ଏହି କାହାଣୀର କଥୋପକଥନ ଯେ ଅତୀବ ମର୍ମସ୍ପର୍ଶୀ ଏହା ନିମ୍ନଲିଖିତ ଉଦାହରଣରୁ ସୁସ୍ପଷ୍ଟ ।

"ମାତା— ହେ ପୁତ୍ର ! ଆମେ କ୍ଷଣକପାଇଁ ତୁମର ବିୟୋଗ ସହ୍ୟ କରିପାରିବୁ ନାହିଁ । ଅତଏବ ହେ ପୁତ୍ର ଆମେ ଜୀଇଁଥିବା ପର୍ଯ୍ୟନ୍ତ ବିପୁଳ ମାନବୀୟ କାମ ଭୋଗାଦି ଉପଭୋଗ କର । ପରିଣତ ଅବସ୍ଥାରେ ସଂସାରରୁ ଉଦାସୀନ ହୋଇ ଭଗବାନ ମହାବୀରଙ୍କ ସମୀପରେ ମୁଣ୍ଡିତ ହୋଇ ପ୍ରବ୍ରଜ୍ୟା ଗ୍ରହଣ କର ।"

ମେଘକୁମାର କହିଲେ—ସଂସାରରୁ ଉଦାସୀନ ପ୍ରବ୍ରଜ୍ୟା ଗ୍ରହଣ କରିବାକୁ ତୁମେ କହିଲ, କିନ୍ତୁ ଏହି ମନୁଷ୍ୟ ଜନ୍ମ ଅଧ୍ରୁବ; ଅନିତ୍ୟ, ଅଶାଶ୍ୱତ ଏବଂ ଶତ୍ରୁ,ଶତ ଦୁଃଖ ଉପଦ୍ରବାକ୍ରାନ୍ତ, ବିଦ୍ୟୁତ୍ ସମାନ ଚଞ୍ଚଳ, ଜଳ ବୁଦ୍‌ବୁଦ୍ ପରି ନଶ୍ୱର । ଏପରି ଅବସ୍ଥାରେ

କିଏ ଜାଣେ କିଏ ପ୍ରଥମେ ମରିବ, କିଏ ପରେ ମରିବ । ଏଣୁ ଆପଣମାନଙ୍କ ଅନୁମତି ପୂର୍ବକ ଶ୍ରମଣ ଭଗବାନ୍ ମହାବୀରଙ୍କ ପଦତଳେ ପ୍ରବ୍ରଜ୍ୟା ଗ୍ରହଣ କରିବାକୁ ଚାହୁଁଛି । ତତ୍ପରେ ମାତା ପିତା କହିଲେ—ଦେଖ ତୁମର ଏହି ଲାବଣ୍ୟବତୀ ପତ୍ନୀମାନଙ୍କୁ ଯେଉଁମାନେ ରୂପ, ଯୌବନ ଏବଂ ଗୁଣାବଳୀରେ ଅପାର ସେହି-ମାନଙ୍କ ସହ ବିପୁଳ 'କାମ ଭୋଗ' ଉପଭୋଗ କରି ପରେ ପ୍ରବ୍ରଜ୍ୟା ଗ୍ରହଣ କର । ତାପରେ ମେଘକୁମାର କାମଭୋଗାଦିକୁ ଅଶୁଚି, ଅଶାଶ୍ୱତ, ବମନ, ପିତ୍ତ, ଶ୍ଳେଷ୍ମ, ଶୁକ୍ର, ଶୋଣିତ, ମୂତ୍ର, ପୁରୀଷ ପୀପ ଇତ୍ୟାଦିରେ ପରିପୂର୍ଣ୍ଣ କହି ପ୍ରବ୍ରଜ୍ୟା ଗ୍ରହଣ ପାଇଁ ମାତାପିତାଙ୍କ ଅନୁମତି ଗୃହ୍ଣି ଥିଲେ ।

ଦଶମ ଅଧ୍ୟୟନରେ ଚନ୍ଦ୍ରମାର କ୍ଷୟ ବୃଦ୍ଧିର ଦୃଷ୍ଟାନ୍ତ ଦେଇ ଜୀବମାନଙ୍କ କ୍ଷୟ-ବୃଦ୍ଧିର ପ୍ରରୂପଣ କରାଯାଇଛି । ଷୋଡଶ ଅଧ୍ୟୟନରେ ଦ୍ରୌପଦୀ କଥା । ସେଥିରେ ଦ୍ରୌପଦୀର ପାଞ୍ଚଙ୍କ ହେବାପାଇଁ ସେ କେଉଁଠି ଓ କେବେ ସଂକଳ୍ପ କରିଥିଲେ ସେ ବିଷୟ ବର୍ଣ୍ଣିତ । ଊନବିଂଶ ଅଧ୍ୟୟନରେ ସୁଂସୁମା କଥା । ଯଥା :—

ଏକଦା ଚୋର ସେନାପତି ବିଜୟ ସୁଂସୁମାକୁ ଉଠାଇ ନେଇଗଲେ । ନଗର ରକ୍ଷୀଗଣ ତାକୁ ଗୋଡାଇବାରୁ ଚୋର ସୁଂସୁମାର ମୁଣ୍ଡ କାଟିଦେଇ ଗୋଟିଏ କୂଅରେ ପକାଇ ଜଂଗଲ ଭିତରକୁ ପଳାଇଗଲା । ସୁଂସୁମାର ବାପା ନିଜ ପୁଅ ଓ ନଗର ରକ୍ଷୀମାନଙ୍କ ସହ ଯାଇଥିଲେ । ଶୋକ କୋହରେ ଅତ୍ୟନ୍ତ ଆତୁର ହୋଇ ଏପରିକି ଚାଲିବାକୁ ମଧ୍ୟ ଅକ୍ଷମ ହେଲେ ଏବଂ ଶେଷରେ ନିଜ ଝିଅର ମାଂସ ଖାଇ କ୍ଷୁଧା ମେଣ୍ଟାଇ ଥିଲେ ।

ଦ୍ୱିତୀୟ ଶ୍ରୁତ ସ୍କନ୍ଧରେ ମନୁଷ୍ୟ, ଦେବତା ଏବଂ ବ୍ୟନ୍ତର ଇତ୍ୟାଦିର ବର୍ଣ୍ଣନା ରହିଛି । ପୁଣ୍ୟଶାଳୀ ନାରୀମାନେ ନିଜ ନିଜର

ପୁଣ୍ୟ ବଳରେ ବ୍ୟନ୍ତର ଜ୍ୟୋତିଷ ଏବଂ କଳ୍ପବାସୀ ଦେବତା-ମାନଙ୍କର ପଞ୍ଚମସ୍ୱର୍ଗବାସୀ ହୋଇ ଜନ୍ମଲାଭ କରନ୍ତି । ଏହି ଶ୍ରୁତାଙ୍ଗର ସାହିତ୍ୟିକ ମହତ୍ତ୍ୱ ରହିଛି । ନେମିଚନ୍ଦ୍ର ଶାସ୍ତ୍ରୀଙ୍କ ମତାନୁସାରେ —

୧ ) ଦ୍ରୌପଦୀଙ୍କ ପୂର୍ବଜନ୍ମର ଆଖ୍ୟାନ ନାଗଶ୍ରୀର ସୁଗନ୍ଧଦଶମୀ କଥାର ସ୍ରୋତ ।

୨ ) ଦେଶ ଓ କାଳର ପରିମିତ ପରିଧି ଭିତରେ ଇତିବୃତ୍ତଗୁଡ଼ିକର ସମାବେଶ କରାଯାଇଛି ।

୩ ) ଗଜସୁକୁମାଲ ପରି ଆଖ୍ୟାନ ସୂତ୍ରଗୁଡ଼ିକର ପଲ୍ଲବନରେ ପରବର୍ତ୍ତୀ କାଳରେ ସ୍ୱତନ୍ତ୍ର ଗ୍ରନ୍ଥ ରଚନାର ସାମଗ୍ରୀ ପ୍ରସ୍ତୁତ କରାଯାଇଛି ।

୪ ) କାହାଣୀଗୁଡ଼ିକରେ ପ୍ରତୀକମାନଙ୍କ ସମାବେଶ କରାଯାଇଛି ।

୫ ) ପଶୁପକ୍ଷୀ କାହାଣୀର ସୂତ୍ରପାତ ପରବର୍ତ୍ତୀ କାଳରେ ଏହି ଧରଣର କାହାଣୀମାନ ସାହିତ୍ୟର ମୁଖ୍ୟ ଅଙ୍ଗ ହେଲା ।*

**ସପ୍ତମ ଅଂଗ** :— ଉବାସଗଦସାଓ (ଉପାସକଦଶା) ରେ ମହାବୀରଙ୍କ ଦଶଜଣ ମୁଖ୍ୟ ଉପାସକ (ଗୃହସ୍ଥ) ଶିଷ୍ୟଙ୍କ କଥା ଏବଂ ଗୃହସ୍ଥମାନଙ୍କ ପାଳନ ଯୋଗ୍ୟ ଆଚାର ନିୟମଗୁଡ଼ିକର ବ୍ୟାଖ୍ୟା ରହିଛି । ଏଥିରେ ଚରିତ ଉତ୍ଥାପନର ଆରମ୍ଭ । ଚାରିତ୍ରିକ ଭିତ୍ତି ଉପରେ ଚରିତ୍ରର ଆଶ୍ରୟ, ବିଷୟବସ୍ତୁର ସାହିତ୍ୟିକ ମାନ ନିରୂପଣ, କାହାଣୀରେ ତାର୍କିକ ଯୁକ୍ତିର ସମାବେଶ, ଜୀବନର କାର୍ଯ୍ୟାବଳୀର ବିସ୍ତୃତି ଏବଂ ପ୍ରାଚୀନ ଭାରତର ବୈଭବପୂର୍ଣ୍ଣ ବିଳାସମୟ ଜୀବନର ସୁନ୍ଦରତମ ଚିତ୍ରଣ ଖୁବ୍ ଉଲ୍ଲେଖଯୋଗ୍ୟ ।

---

* ପ୍ରା: ଭା: ସା: ଆ: ଇ ପୃ ୧୬୩

**ଅଷ୍ଟମ ଅଂଗ** :—ଅନ୍ତଗଡଦସାଓ (ଅନ୍ତକୃଦ୍ଦଶା) ତପସ୍ୱୀ ଓ ତପସ୍ୱିନୀମାନେ କପରି ନିଜ ନିଜର କର୍ମବଳ ଦ୍ୱାରା ପରୀକ୍ଷରେ ମୁକ୍ତି ବା ମୋକ୍ଷଲାଭ କରିଛନ୍ତି ଏବଂ କୃଷ୍ଣ ଓ ତାଙ୍କର ଅଷ୍ଟପତ୍ନୀଙ୍କ ଆଖ୍ୟାନ ସମ୍ୱଳିତ କୌମୁଦୀ କାହାଣୀଗୁଡ଼ିକର ସ୍ରୋତ ।

**ନବମ ଅଂଗ** :—ଅଣୁତ୍ତରୋବବାଇୟଦସାଓ (ଅନୁତ୍ତ-ରୋପପାତିକଦଶା)—ଏହି ଅଂଗରେ ଦଶଜଣ ମହାତ୍ମାଙ୍କ କଥା ବର୍ଣ୍ଣିତ । ଏମାନଙ୍କୁ ନିର୍ବାଣପ୍ରାପ୍ତି ନହେଲେ **ମଧ୍ୟ** କପରି ଅନୁତ୍ତର ନାମକ ସ୍ୱର୍ଗରେ ସ୍ଥାନ ଲାଭ ହେଲା ତାହା ବିଶେଷ ଉଲ୍ଲେଖ-ଯୋଗ୍ୟ । ଏହାର ବର୍ଣ୍ଣନାତ୍ମକ ଶୈଳୀ ଚିତ୍ତାକର୍ଷକ ଏବଂ ଭାଷା ଅଗମ୍ୟ ।

**ଦଶମ ଅଙ୍ଗ** :-ପଣ୍ହବାଗରଣାଇଂ (ପ୍ରଶ୍ନବ୍ୟାକରଣାନି)— ଏହାକୁ ପଣ୍ହବାଗରଣଦସା କିମ୍ବା ବାଗରଣଦସା ମଧ୍ୟ କୁହାଯାଏ । ପ୍ରଶ୍ନଗୁଡ଼ିକ ୧୦ଟି ଦ୍ୱାରରେ ବିଭକ୍ତ ହୋଇଛି—ଯଥା ପାଞ୍ଚୋଟି ଆଶ୍ରବ ଦ୍ୱାର ଓ ପାଞ୍ଚୋଟି ସଁବର ଦ୍ୱାର । ପ୍ରଥମ ଆଶ୍ରବ ଦ୍ୱାରରେ ପ୍ରାଣବଧର ସ୍ୱରୂପ ଦର୍ଶାଯାଇଛି । ତ୍ରସ-ସ୍ଥାବର ଜୀବମାନଙ୍କୁ ବଧ କଲେ କିମ୍ବା କଷ୍ଟ ଦେଲେ କିଁପରି ପାପ ହୁଏ । ପାଞ୍ଚବ୍ରତ, କର୍ମ, ଗୁଣାବଳୀର ବ୍ୟାକରଣ (ବିଶ୍ଳେଷଣ) ଦିଆଯାଇଛି ।

**ଏକାଦଶ ଅଙ୍ଗ** :—ବିବାଗସୁୟଂ (ବିପାକଶ୍ରୁତମ୍) ରେ ଶୁଭାଶୁଭ କର୍ମଗୁଡ଼ିକର ଫଳ ବର୍ଣ୍ଣିତ । ଏଥିରେ ଦୁଇଟି ଶ୍ରୁତସ୍କନ୍ଧ ଅଛି । ଦୁଃଖ ବିପାକ ଓ ସୁଖ ବିପାକ । ଗୌତମ ଗଣଧର ବହୁ ଦୁଃଖୀ ଲୋକଙ୍କୁ ଦେଖି ସେମାନଙ୍କ ସମ୍ୱନ୍ଧରେ ମହାବୀରଙ୍କୁ ପ୍ରଶ୍ନ କରନ୍ତି ଏବଂ ମହାବୀର ସେମାନଙ୍କ ପୂର୍ବଭବ (ପୂର୍ବଜନ୍ମାଦି) ର ବର୍ଣ୍ଣନା କରିଛନ୍ତି ।

**ଦ୍ୱାଦଶ ଅଙ୍ଗ** :—ଦିଟ୍ଠିବାଓ (ଦୃଷ୍ଟି ବାଦ) —ଏହା ଲୁପ୍ତ ହୋଇଯାଇଛି । ବଲ୍ଲଭୀବାଚନାରେ ଏହା ସଂକଳିତ ହୋଇପାରି ନାହିଁ । ଅନ୍ୟ ସୂତ୍ରରୁ ଜଣାଯାଏ ଯେ ଏଥିରେ ଜୈନେତର ଧର୍ମ-ମାନଙ୍କର ଖଣ୍ଡନ ଏବଂ ତୀର୍ଥଙ୍କର ତଥା ଅନ୍ୟ ମହାପୁରୁଷମାନଙ୍କର କଥା ସନ୍ନିବିଷ୍ଟ ।

## ଉପାଙ୍ଗ

ଆଗମ ସାହିତ୍ୟରେ ଅଙ୍ଗ ପରି ବାରଟି ଉପାଙ୍ଗ ମଧ୍ୟ ମିଳେ । ଅଙ୍ଗଗୁଡ଼ିକର ରଚନା ଗଣଧରମାନଙ୍କ ଦ୍ୱାରା ଓ ଉପାଙ୍ଗ-ଗୁଡ଼ିକର ରଚନା ସ୍ଥବିରମାନଙ୍କ ଦ୍ୱାରା ହୋଇଥିବାରୁ ଅଙ୍ଗ ଓ ଉପାଙ୍ଗଗୁଡ଼ିକ ମଧ୍ୟରେ କୌଣସି ଯୋଗସୂତ୍ର ନାହିଁ ।*

୧ । **ଉବବାଇୟଂ** (ଔପପାତିକମ୍) ହେଉଛି ପ୍ରଥମ ଉପାଙ୍ଗ । ଏଥିରେ ମହାବୀର ସ୍ୱାମୀଙ୍କ ପଣ୍ଡିତ ଦ୍ୱାରକୁ ଯାଇ କର୍ମ ଓ ପୁନର୍ଜନ୍ମ ସମ୍ବନ୍ଧରେ ଉପଦେଶ ଦାନ କଥା ରହିଛି । ବିଭିନ୍ନ ବ୍ରତ ଓ ସାଧନା ପୂର୍ବକ ମୃତ୍ୟୁ ବରଣ କରିଥିବା ପ୍ରାଣୀ-ମାନଙ୍କର କ କ ଦଶା ହୁଏ ଏ ବିଷୟରେ ଗୌତମ ଇନ୍ଦ୍ରଭୂତିଙ୍କ ପ୍ରଶ୍ନମାନଙ୍କର ଉତ୍ତରରେ ବ୍ୟକ୍ତ । ଗ୍ରନ୍ଥାରମ୍ଭରେ ଚମ୍ପାନଗରୀର ଆଲଂକାରିକ ବର୍ଣ୍ଣନ ପରବର୍ତ୍ତୀ ସାହିତ୍ୟର ସ୍ରୋତ ହୋଇପାରିଛି । ଏହି ଧରଣର ସୂକ୍ଷ୍ମ ସର୍ବାଙ୍ଗପୂର୍ଣ୍ଣ ବର୍ଣ୍ଣନ ସଂସ୍କୃତ ସାହିତ୍ୟରେ ମଧ୍ୟ ରହିଲା ।

---

* ପ୍ରା.ସା. ଇତିହାସ ପୃ. ୧୦୪

ସଂସ୍କୃତ ଓ ସମାଜ ଦୃଷ୍ଟିରେ ମଧ୍ୟ ଏହାର ମହତ୍ତ୍ୱ ଦେଖାଯାଏ । ପ୍ରବନ୍ଧ କାବ୍ୟର ଉପଯୋଗୀ ବସ୍ତୁ ବର୍ଣ୍ଣନାର ସଂଘଟନ ମିଳେ । ଧାର୍ମିକ ଓ ନୈତିକ ମାନ ଅବଧାରିତ ହୋଇଛି ।

୨ । **ରାୟପସେଣିୟ** (ରାଜ ପ୍ରଶ୍ନୀୟ)— ଏହାର ଗଣନା ପ୍ରାଚୀନ ଆଗମମାନଙ୍କରେ ମିଳେ । ସାହିତ୍ୟିକ ଦୃଷ୍ଟିରୁ ଏହାର ସ୍ଥାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଆରମ୍ଭରେ ଦେବ ସୂର୍ଯ୍ୟାଭଙ୍କ ମୁକ୍ତି କଥା ରହିଛି । ପରେ ରାଜା ପଏସୀ (ପ୍ରଦେଶୀ) ଏବଂ ମୁନି କେଶୀଙ୍କ ମଧ୍ୟରେ ଆତ୍ମାର ସ୍ୱତନ୍ତ୍ର ସତ୍ତା ଉପରେ ଏକ ମନୋହର ଓ ସରସ ବାର୍ତ୍ତାଳାପ ଅଛି । ସ୍ଥାପତ୍ୟ, ସଂଗୀତ ଓ ନାଟ୍ୟକଳା ଦୃଷ୍ଟିରୁ ଏହା ଉଲ୍ଲେଖଯୋଗ୍ୟ । ଲେଖନ ସମ୍ବନ୍ଧୀୟ ସାମଗ୍ରୀର ନିର୍ଦ୍ଦେଶ ଅଛି । ସାମ, ଦାମ, ଦଣ୍ଡନୀତିର ଅନେକ ସିଦ୍ଧାନ୍ତ, ୭୨ କଳା, ୪ ପରିଷଦ ଓ କଳାଚାର୍ଯ୍ୟ ଏବଂ ଧର୍ମାଚାର୍ଯ୍ୟମାନଙ୍କ ନିରୂପଣ କରାଯାଇଛି ।*

୩ । **ଜୀବାଜୀବାଭିଗମ**— ଗୌତମ ଗଣଧର ଓ ମହାବୀରଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ରୂପେ ଜୀବ ଓ ଅଜୀବ ଭେଦ, ପ୍ରଭେଦ ବିଷୟରେ ବହୁତ ବର୍ଣ୍ଣନ ଏଥିରେ ଅଛି । ସୃଷ୍ଟି ବର୍ଣ୍ଣନରେ ଦ୍ୱୀପ ଓ ସାଗରଗୁଡ଼ିକର ବର୍ଣ୍ଣନା କରି ଜମ୍ବୁ ଦ୍ୱୀପର ବୃତ୍ତାନ୍ତ ମଧ୍ୟ ଦିଆଯାଇଛି । ଧାତୁ, ଆଭୂଷଣ, ଭବନ, ବସ୍ତ୍ର, ଗ୍ରାମ ଉତ୍ସବ, ନାନା ଅଳଙ୍କାର ଏବଂ ମିଷ୍ଟାନ୍ନାଦି ଭୋଜନ ପ୍ରସଂଗର ବର୍ଣ୍ଣନା ମହତ୍ତ୍ୱପୂର୍ଣ୍ଣ । ସାଂସ୍କୃତିକ ଓ କଳାଗତ ସାମଗ୍ରୀ ତଥା ପ୍ରାକୃତିକ ବର୍ଣ୍ଣନା ପ୍ରାଚୁର୍ଯ୍ୟ ସାହିତ୍ୟକୁ ସରସ କରିପାରିଛି ।

---

* ପ୍ରା: ଭା: ଆ: ସା: ଇତିହାସ ପୃ ୧୮୧ ଏବଂ
ପ୍ରା: ସା: ଇ: ପୃ ୧୦୭ ୧୧୧

୪ । **ପଣ୍ଣବଣା** (ପ୍ରଜ୍ଞପନା)— ଏହା ଏକ ରକମର ଜ୍ଞାନ କୋଷ । ଏଥିରେ ସାହିତ୍ୟ, ଧର୍ମ, ଦର୍ଶନ, ଇତିହାସ, ଭୂଗୋଳ ଇତ୍ୟାଦି ବିଷୟରେ ଉଲ୍ଲେଖ କରାଯାଇଛି । ପୁନଶ୍ଚ ଜୀବମାନଙ୍କ ବିଭେଦ ଯଥା ଆର୍ଯ୍ୟ ଓ ମ୍ଳେଚ୍ଛ ଏବଂ ସେମାନଙ୍କର ଜୀବନଯାପନ ବର୍ଣ୍ଣନା ମଧ୍ୟ ଏହାର ଉଲ୍ଲେଖଯୋଗ୍ୟ ବିଷୟ । ଏଥିରେ ୨୫ଟି ଆର୍ଯ୍ୟ ଦେଶର ନାମ ଯଥା :—କର୍ମ ଆର୍ଯ୍ୟ, ଶିଳ୍ପ ଆର୍ଯ୍ୟ ଏବଂ ଭାଷା ଆର୍ଯ୍ୟ ଏହିପରି ସ୍ପଷ୍ଟ ବିଭାଜନ ରହିଛି ।

୫ । **ସୂରିୟପଣତ୍ତି** (ସୂର୍ଯ୍ୟ ପ୍ରଜ୍ଞପ୍ତି)— ଏଥିରେ ସୂର୍ଯ୍ୟ, ଚନ୍ଦ୍ର ଏବଂ ନକ୍ଷତ୍ରମାନଙ୍କର ଗତିବିଧି ଓ ସ୍ଥିତି ସମ୍ବନ୍ଧୀୟ ସମ୍ୟକ୍ ବର୍ଣ୍ଣନା ରହିଛି । ଦୁଇ ସୂର୍ଯ୍ୟ ଓ ଦୁଇ ଚନ୍ଦ୍ର ସିଦ୍ଧାନ୍ତ ଏହାର ପ୍ରକୃଷ୍ଟ ଉଦାହରଣ । ଏଥିରେ ପ୍ରାଚୀନ ଜ୍ୟୋତିଷ ସମ୍ବନ୍ଧୀୟ ମୂଲ୍ୟମାନ୍ୟତା ସଂକଳିତ ।

୬ । **ଜମ୍ବୁଦ୍ଦୀପ ପଣଣତ୍ତି** (ଜମ୍ବୁଦ୍ୱୀପ ପ୍ରଜ୍ଞପ୍ତି)— ଏଥିରେ ଜମ୍ବୁଦ୍ୱୀପ ତଥା ଭରତକ୍ଷେତ୍ର ତାହାର ଉତ୍ତୁଙ୍ଗ ପର୍ବତ ଶ୍ରେଣୀ, ଖରପ୍ରବାହମାନା ନଦନଦୀ, ଗୁମ୍ଫା, ଅଟବୀ, ଶ୍ୱାପଦ ପ୍ରଭୃତି ମଧ୍ୟରେ ପରିବେଷ୍ଟିତ ବହୁ ତସ୍କର, ପାଖଣ୍ଡ, ଯାଚକ ଇତ୍ୟାଦିଙ୍କ ବିଷୟ ବର୍ଣ୍ଣନା କରାଯାଇଛି । ଏହି କ୍ଷେତ୍ର ପୁନଶ୍ଚ ବିପ୍ଲବ, ରାଜ୍ୟୋପଦ୍ରବ, ଦୁର୍ଭିକ୍ଷ, ରୋଗାଦି ଦ୍ୱାରା ଆକ୍ରାନ୍ତ । ଦ୍ୱିତୀୟ ବକ୍ଷସ୍କାରେ ଅବସର୍ପିଣୀ ଏବଂ ଉତ୍ସର୍ପିଣୀର ବର୍ଣ୍ଣନାରେ ସୁଷମା-ସୁଷମା ସୁଷମା, ସୁଷମା-ଦୁଷମା, ଦୁଷମା-ସୁଷମା, ଦୁଷମା ଓ ଦୁଷମା-ଦୁଷମା ନାମକ ଛଅ ଗୋଟି କାଳର ଆଲୋଚନା ରହିଛି । ସୁଷମା-ସୁଷମା କାଳରେ ଦଶ ପ୍ରକାର କଳ୍ପବୃକ୍ଷର ବର୍ଣ୍ଣନା

ରହିଛି । ଯାହାଦ୍ୱାରା ଇଷ୍ଟ ପଦାର୍ଥମାନ ମିଳେ । ସୁଷମା-ଦୁଷମା ନାମକ ତୃତୀୟ କାଳରେ ୧୫ ଜଣ କୁଳକରଙ୍କ ଜନ୍ମ ହୋଇଥିଲା ଯେଉଁମାନଙ୍କ ମଧ୍ୟରେ ନାଭି କୁଳକର ମରୁଦେବୀ ନାମକ ପତ୍ନୀଙ୍କ ଠାରୁ ଆଦି ତୀର୍ଥଙ୍କର ଋଷଭଙ୍କ ଜନ୍ମ । ଋଷଭଦେବଙ୍କର ପରିମିତ ମାଳ ନଗରର ଉଦ୍ୟାନରେ କେବଳ ଜ୍ଞାନର ପ୍ରାପ୍ତି ହୋଇଥିଲା । ଭରତଙ୍କ ନିର୍ବାଣ ପ୍ରାପ୍ତି ମଧ୍ୟ ପ୍ରତିପାଦିତ ହୋଇଅଛି । ଏହା ଜୈନ ସୃଷ୍ଟି ବିଦ୍ୟାର ବୀଜସୂତ୍ର । ଋଷଭଦେବଙ୍କ ପୌରାଣିକ ଚରିତ ନିରୂପଣ, ଭରତ ଚକ୍ରବର୍ତ୍ତୀଙ୍କ ଦିଗ୍‌ବିଜୟ ଓ ପ୍ରାଚୀନ ଯୁଦ୍ଧ ପ୍ରଣାଳୀର ଜ୍ଞାନ ( ଭରତ ଓ କିରାତଙ୍କ ସେନା ମଧ୍ୟରେ ଘଟିଥିବା ଯୁଦ୍ଧରୁ ) ତୀର୍ଥଙ୍କରମାନଙ୍କ ଜନ୍ମୋତ୍ସବ ଇତ୍ୟାଦିର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ ।

୭ । **ଚନ୍ଦପଣ୍ଣତ୍ତି** (ଚନ୍ଦ୍ର ପ୍ରଜ୍ଞପ୍ତି) ରେ ଚନ୍ଦ୍ରର ପରିଭ୍ରମଣ ଗତି, ସୂର୍ଯ୍ୟ, ସମାନାନ୍ତର ନିରୂପଣ ମିଳେ । ଏହା ଏକ ଜ୍ୟୋତିଷ ଗ୍ରନ୍ଥ । ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ରାଦିର ପରସ୍ପର ସମ୍ବନ୍ଧ ଏଥିରେ ବର୍ଣ୍ଣିତ ହୋଇଅଛି ।

୮ । **କପ୍ପିୟା** (କଳ୍ପିକା)—ଏହା ପ୍ରାଚୀନ ମଗଧର ଇତିହାସ ଜାଣିବାପାଇଁ ଅତ୍ୟନ୍ତ ଉପଯୋଗୀ । ପ୍ରଥମ ଅଧ୍ୟୟନରେ କୁଣିକ (ଅଜାତଶତ୍ରୁ)ର ଜନ୍ମ, ପିତା ଶ୍ରେଣିକଙ୍କ ସହ ମନୋମାଳିନ୍ୟ ଓ ପିତାଙ୍କୁ ବନ୍ଦୀକରି, କୁଣିକର ରାଜ ସିଂହାସନ ଆରୋହଣ ପ୍ରଭୃତି ବର୍ଣ୍ଣିତ । ଶ୍ରେଣୀକଙ୍କ ଆତ୍ମହତ୍ୟା, କୁଣିକଙ୍କ ଭ୍ରାତା ବେହଲ୍ଲ କୁମାରଙ୍କୁ ସେଚନକ ହାତୀ ଫେରାଇବାକୁ ଅନୁରୋଧ, ଏବଂ ଅଜା ବୈଶାଳୀ ନରେଶ ଚେଟକଙ୍କ ସହ ଯୁଦ୍ଧ ଇତ୍ୟାଦିର ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳେ ।

୯ । **କପଟାବଡଂସିୟାଓ** ( କାଲ ପାବ ଣ୍ଟିକା ) ରେ ଶ୍ରେଣିକଙ୍କ ଦଶଜଣ ନାତି ନେଉଁମାନେ ସ୍ୱ ସ୍ୱ ସତ୍‌କର୍ମ ଦ୍ୱାରା ସ୍ୱର୍ଗକୁ ଗଲେ ସେମାନଙ୍କ କଥା ବର୍ଣ୍ଣନା କରାଯାଇଛି । ଏଥିରେ ଜୀବନ ଶୋଧନର ପ୍ରକ୍ରିୟା ବିଶ୍ଳେଷଣ କରିବାକୁ ଯାଇ ପୌରାଣିକ କଥାଗୁଡ଼ିକୁ ଲୋକକଥାକାରଙ୍କର ବର୍ଣ୍ଣନା କରାଯାଇଛି । ନିଜ ନିଜ କର୍ମ ବଳରେ ପିତା ନର୍କରେ ରହିଲେ ମଧ୍ୟ ପୁତ୍ର ସ୍ୱର୍ଗଗାମୀ ହୋଇ ପାରିବା କଥା ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଏଣୁ ଭଲ ଫଳ ନିଜ ହାତରେ ବୋଲି କହିବା ସମୀଚୀନ ।

୧୦ । **ପୁପପିୟା** (ପୁଷ୍ପିକା)—ଏଥିରେ ଦଶଟି ଅଧ୍ୟୟନ ରହିଛି । ଏହାର ତୃତୀୟ ଅଧ୍ୟୟନରେ ସୋମିଲ ବ୍ରାହ୍ମଣର କଥା ବର୍ଣ୍ଣିତ । ଓ ତାଙ୍କ ତପସ୍ୟାର ବିଷୟ ବିଶେଷ ଉଲ୍ଲେଖ ହୋଇଛି । ୪ର୍ଥ ଅଧ୍ୟୟନରେ ଏକ ଅତି ହରସ ଓ ମନୋରଞ୍ଜକ କଥା ରହିଛି । ସୁଭଦ୍ରା ସନ୍ତାନ ଆର୍ଯ୍ୟାଙ୍କଠୁଁ ଦୀକ୍ଷା ଗ୍ରହଣ କରି ନେଇଥିଲେ ମଧ୍ୟ ଶ୍ରେଷ୍ଠ ପିଲାଙ୍କୁ ସ୍ନେହ କରେ । ଏଣୁ ପରଜନ୍ମରେ ବହୁ ସନ୍ତାନବତୀ ବ୍ରାହ୍ମଣୀ ହୁଏ । ଏହି ଉପାଙ୍ଗରେ ପୂର୍ବାପର ଜନ୍ମ ସଂପର୍କୀୟ କଥାମାନଙ୍କରେ କୌତୂହଳପୂର୍ଣ୍ଣ ତତ୍ତ୍ୱର ସମାବେଶ କରାଯାଇଛି । ଏଥିରେ ସଂସାରିକ ମାଧୁର୍ଯ୍ୟାମୋଦର ସୁନ୍ଦର ଚିତ୍ରଣ, ପୁନର୍ଜନ୍ମ ଓ କର୍ମଫଳାଦିର ବର୍ଣ୍ଣନା ଆଦି ମିଳେ ।

**ପୁପ୍‌ଫଚୂଲା** (ପୁଷ୍ପ ଚୂଳ) ରେ ମହାବୀରଙ୍କ ପୂଜା ନିମିତ୍ତ ପୁଷ୍ପକ ବିମାନଗୁଡ଼ିକରେ ଆଗତ ଦେବ-ଦେବୀଗଣଙ୍କ ପୂର୍ବଜନ୍ମର କଥାମାନ ରହିଛି ।

୧୨ । ବଣ୍ହିଦଶାଓ ( ବୃଷ୍ଣି ଦଶା ) ରେ ଦ୍ୱାରକାବତୀର ରଜା କୃଷ୍ଣ ବାସୁଦେବଙ୍କ ବର୍ଣ୍ଣନା ଓ ବୃଷ୍ଣି ବଂଶୀୟ ବାରଜଣ ରାଜକୁମାରଙ୍କ ଅରିଷ୍ଟ ନେମି ଦୀକ୍ଷିତ ହେବା କଥା ରହିଛି । ଏଥିରେ ଯଦୁବଂଶୀୟ ରଜାମାନଙ୍କ ଇତିହାସ ମଧ୍ୟ ମିଳେ ।

## ଛେଦସୂତ୍ର

ଜୈନ ଆଗମମାନଙ୍କର ପ୍ରାଚୀନ ଅଂଶ ହେଲୁ ଏହାର ମହତ୍ତ୍ୱ ବେଶୀ । ଏହି ସୂତ୍ରମାନଙ୍କରେ ନିର୍ଗ୍ରନ୍ଥ ଓ ନିର୍ଗ୍ରନ୍ଥିମାନଙ୍କର ପ୍ରାୟଶ୍ଚିତ ବିଧି ପ୍ରତିପାଦିତ । ଚରିତ୍ରର ଶୁଦ୍ଧତା ସ୍ଥିର ରଖିବାପାଇଁ ଏହା ଉଦ୍ଦିଷ୍ଟ ହୋଇଥିବାରୁ ଏଗୁଡ଼ିକୁ ଉତ୍ତମ ସୂତ୍ର କୁହାଯାଏ ।*

ଦେଶକାଳକୁ ଦୃଷ୍ଟିରେ ରଖି ମହାବୀର ଓ ତାଙ୍କ ଶିଷ୍ୟଗଣ ଜୈନଭିକ୍ଷୁମାନଙ୍କ ନିମିତ୍ତ ଏଥିରେ ଆଚାର ବିଚାର ସମ୍ବନ୍ଧୀୟ ନିୟମ ନିର୍ଦ୍ଧାରଣ କରିଥିଲେ । ଏଗୁଡ଼ିକର ସଂଖ୍ୟା ଛଅ ।

(୧) ନିଶୀଥ (୨) ମହାନିଶୀଥ (୩) ବ୍ୟବହାର (୪) ଦଶା-ଶ୍ରୁତସ୍କନ୍ଧ (୫) କଳ୍ପ (୬) ପଞ୍ଚକଳ୍ପ ବା ଜୀତକଳ୍ପ ।

୧ । ନିଶୀହ (ନିଶୀଥ) : ର ଅନ୍ୟନାମ ଆଚାରକଳ୍ପ । ସାଧୁ ଓ ସାଧ୍ୱୀମାନଙ୍କର ଆଚାର ବିଚାର ସମ୍ବନ୍ଧୀୟ ନିୟମ-ମାନଙ୍କର ନିରୂପଣ ଏବଂ ଏହି ନିୟମମାନଙ୍କର ଉତ୍ସର୍ଗ ଓ ଅପବାଦ ମାର୍ଗ ମଧ୍ୟ ଏଥିରେ ବର୍ଣ୍ଣିତ । ଯେ କୌଣସି ନିୟମ ଲଙ୍ଘନ କଲେ ସମୁଚିତ ପ୍ରାୟଶ୍ଚିତର ମଧ୍ୟ ବିଧାନ କରାଯାଇଛି । ଭାଷା ସମ୍ବନ୍ଧୀୟ ସାମଗ୍ରୀର ପ୍ରାଚୁର୍ଯ୍ୟ ସଂଗେ ସାମାଜିକ ସାମଗ୍ରୀ ବ

* ପ୍ରା: ସା: ଇତିହାସ ପୃ ୧୩୨

ଉପଲବ୍ଧ । ପ୍ରାଚୀନ ପରଂପରା, ବସ୍ତ୍ରାଦି ଏବଂ ଜୀବନ-ଶୋଧନ ସମ୍ବନ୍ଧୀୟ ନିୟମମାନଂକର ବିସ୍ତୃତ ବିବେଚନ ଓ ଜାବ୍ୟତତ୍ତ୍ୱ ଏଥିରେ ଦେଖିବାକୁ ମିଳେ । ମାଳବ ଓ ସିଂଧୁ ଦେଶର ଭାଷା-ମାନଙ୍କୁ ପ୍ରତ୍ୟକ୍ଷ ଭାଷା କୁହାଯାଇଛି ।

୨ । **ମହାନିସୀହ** (ମହାନିଶୀଥ) : ମୂଳ ନିଶୀଥ ନଷ୍ଟ ହୋଇଯାଇଛି । ପରେ ହରିଭଦ୍ର ସୂରି ଏହାକୁ ସଂଶୋଧନ କଲେ । ଭାଷା ଏବଂ ବିଷୟ ଦୃଷ୍ଟିରୁ ଏହା ପ୍ରାଚୀନ ବୋଲି ଜଣାଯାଏ ନାହିଁ । ପାପକର୍ମର ନିଂଦା ଓ ଆଲୋଚନା ଏଥିରେ କରାଯାଇଛି । ସାଧୁମାନେ କୁଶୀଳ ସାଧୁଂକ ସଂଗରୁ ଠାରୁ ଦୂରରେ ରହିବାକୁ ଉପଦେଶ ଦିଆଯାଇଛି । ମନ୍ତ୍ର, ଦୟା ଏବଂ ଅନୁକଂପାଦିର ବିବେଚନାଦି ମଧ୍ୟ ବର୍ଣ୍ଣିତ । ଗୁରୁଶିଷ୍ୟ ସମ୍ବନ୍ଧରେ ନିରୂପଣ ତଥା ପ୍ରାୟଶ୍ଚିତ ଓ ଆଲୋଚନାର ଗୁରୁତ୍ୱ ପ୍ରକାର ଏଥିରେ ଉଲ୍ଲେଖ କରାଯାଇଛି । କର୍ମଫଳ ଦର୍ଶାଇବା ଭଳି କଥାମାନ, ଗଚ୍ଛବର୍ତ୍ତିନ (ଜୈନ ସଂଘର ଇତିହାସ ଦୃଷ୍ଟିରୁ ଉପଯୋଗୀ) ସତୀ ହେବା, ବିଧବା ରାଜକୁମାରୀକୁ ଗାଦିରେ ବସିବାର ନିରୂପଣ ଓ ସାଂସ୍କୃତିକ ସାମଗ୍ରୀର ପ୍ରାଚୁର୍ଯ୍ୟ ହେଉଛି ଏହି ସୂତ୍ରର ବିଶେଷତ୍ୱ ।

୩ । **ବବହାର** (ବ୍ୟବହାର) : ସାହିତ୍ୟିକ ମହତ୍ତ୍ୱର ଅଭାବ ପରିଲକ୍ଷିତ । କେବଳ ସଂଘ, ସାଧୁ ଆଦିର ନିୟମ ବର୍ଣ୍ଣିତ ।

୪ । **ଦସସୁୟକ୍ଖନ୍ଧ** (ଦଶାଶ୍ରୁତ ସ୍କନ୍ଧ) ଭଗବାନଙ୍କ ଜୀବନୀ କାବ୍ୟାତ୍ମକ ଶୈଳୀରେ ଲିଖିତ । ଭାଷା ପ୍ରୌଢ଼ ଚିତ୍ତ-ସମାଧି ଏବଂ ଧର୍ମ ଚିନ୍ତାର ସୁନ୍ଦର ବର୍ଣ୍ଣନା ରହିଛି । ଆର୍ଯ୍ୟ ସଂସ୍କୃତିର

ପ୍ରନ୍ଥକ ଶିଖା ଧାରଣରେ ସମର୍ଥକ ତଥା ଭିକ୍ଷୁ ପ୍ରତିମା ଏବଂ ଅବ ପ୍ରତିମାମାନଙ୍କର ଭେଦ-ପ୍ରଭେଦାଦିର ନିରୂପଣ କରାଯାଇଛି । ମହାବୀରଙ୍କ ଚରିତ ସହ ପାର୍ଶ୍ୱ, ନେମି ଏବଂ ଋଷଭ ଦେବଙ୍କ ଚରିତାଦିର ସଂକ୍ଷିପ୍ତ ରୂପରେଖା ପ୍ରସ୍ତୁତ କରାଯାଇଛି ।†

୫ । କପ୍ପ ( କଲ୍ପ ) ରେ ଜୈନ ଶ୍ରମଣମାନଙ୍କର ପ୍ରାଚୀନତମ ଆଚାର ଶାସ୍ତ୍ରର ନିରୂପଣ କରାଯାଇଛି । ଭାଷା ପ୍ରାଚୀନ ହେଲେହେଁ ଏହାର କୌଣସି ସାହିତ୍ୟକ ମହତ୍ତ୍ୱ ନାହିଁ ।

୬ । ପଞ୍ଚକପ୍ପ ( ପଞ୍ଚକଲ୍ପ ) ସାଧୁ ସାଧ୍ୱୀଙ୍କ ରହିବା, ବିହାର କରିବା ଇତ୍ୟାଦିର ବର୍ଣ୍ଣନା ରହିଛି ।

## ମୂଳସୂତ୍ର

ମୂଳସୂତ୍ରମାନଙ୍କରେ ସାଧୁଜୀବନର ମୂଳଭୂତ ନିୟମାଦିର ବିବରଣ ମିଳେ କିନ୍ତୁ ଡକ୍ଟର ହରଦେବ ବାହାରୀଙ୍କ ମତରେ— ଏଗୁଡିକୁ ଜୈନ ସାଧୁମାନେ ସର୍ବପ୍ରଥମେ ପାଠ କରନ୍ତି । ଏଗୁଡ଼ିକର ସଂଖ୍ୟା ପାଂଚ ପ୍ରକାରର ।*

(୧) ଉତ୍ତରଜ୍‌ଝୟଣ (୨) ଆବସ୍ସୟ (୩) ଦସବେୟାଳିୟ (୪) ପିଣ୍ଡଣିଜ୍ଜୁତ୍ତି (୫) ଓହଣିଜ୍ଜୁତ୍ତି ।

୧ । ଉତ୍ତରଜ୍‌ଝୟଣ ( ଉତ୍ତରାଧ୍ୟୟନ )—ଏହା ଗୋଟିଏ ଧାର୍ମିକ କାବ୍ୟ ଗ୍ରନ୍ଥ । ଏହିରେ ଭଗବାନ ମହାବୀରଙ୍କ ଉତ୍ତର କାଳରେ ନିର୍ବାଣ ପୂର୍ବରୁ ଦେଇଥିବା ଉପଦେଶାବଳୀ ସଂକଳିତ । ବିଣ୍ଟରନିଜଙ୍କ ମତରେ ଏହା ଶ୍ରମଣ କାବ୍ୟ ଏବଂ ସେ ଏହାକୁ

---

† ପ୍ରା: ସା. ଓ ସା: ଆ: ଇ. ପୃ ୧୯୧

* ପ୍ରାକୃତ୍ ଔର୍ ଉସକା ସାହିତ୍ୟ ପୃ ୪୨ ।

ଧମ୍ମପଦ, ମହାଭାରତ ଓ ସୂତ୍ରନିପାତ ସହ ତୁଳନା କରନ୍ତି । ଏଥିରେ ଅନ୍ତରମ୍ୟ, ଦୃଷ୍ଟାନ୍ତ କଥା, ଉପମା, ବାର୍ତ୍ତାଳାପ, ସୂକ୍ତ ଏବଂ ପ୍ରବଚନାଦି ଦ୍ରଷ୍ଟବ୍ୟ ।

ଏଥିରେ କଥା ସାହିତ୍ୟର ବୀଜ ନିହିତ । କପିଳ କଥାରେ କପିଳ କୌଶାମ୍ବୀର ଉତ୍ତମ ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରିଥିଲେ । ଯୁବାବସ୍ଥାରେ ଶ୍ରାବସ୍ତୀରେ ବିଦ୍ୟାଧ୍ୟୟନ କରିଥିଲେ । ଯୌବନରେ ମଦାନ୍ଧ ହୋଇ ପଥଭ୍ରଷ୍ଟ ହୋଇ ଜଣେ କାମୁକୀର ଫାନ୍ଦରେ ପଡ଼ିଲେ । ସିନେ ତାଙ୍କର ପ୍ରିୟା ରାଜ-ଦରବାରକୁ ଯିବାପାଇଁ ପ୍ରେରଣା ଦେବାରୁ ସେ ଦାରିଦ୍ର୍ୟର ତାଡ଼ନାରେ ପଡ଼ି ସ୍ୱର୍ଣ୍ଣ ମୁଦ୍ରା ଭିକ୍ଷା ନିମିତ୍ତ ରାତିର ଶେଷ ପ୍ରହରରେ ଦରବାର ଅଭିମୁଖେ ଯାତ୍ରା କଲେ । ପ୍ରହରୀମାନେ ତାଙ୍କୁ ଚୋର ଭାବି ବନ୍ଦୀ କରି ରାଜାଙ୍କ ସମ୍ମୁଖରେ ଉପସ୍ଥିତ କଲେ । ରାଜା କପିଳର ଚେହେରା ଦେଖି ବୁଝିପାରିଲେ ଯେ ସେ ନିର୍ଦ୍ଦୋଷ । ଏଣୁ ତାଙ୍କୁ ତାର ଯେତେ ଇଚ୍ଛା ସେତେ ଧନ ମାଗିବାକୁ କହିଲେ । କପିଳ ଦାରିଦ୍ର୍ୟର ତାଡ଼ନାରେ ଏପରିକି ରାଜ୍ୟ ମଧ୍ୟ ମାଗିବାକୁ ଚାହୁଁଥିଲେ କିନ୍ତୁ ତାଙ୍କର ବିବେକ ଉଦୟ ହେବାରୁ ସେ ବିରକ୍ତ ହୋଇ ସାଧୁ ହୋଇଗଲେ ।

ଦଶମ ଚରିତର ଉଦାତ୍ତ ଚରିତ୍ର ଅରିଷ୍ଟନେମିଙ୍କ ଭାଇ ରଥନେମି ଆଖ୍ୟାନରେ ଦ୍ରଷ୍ଟବ୍ୟ । ଶୌର୍ଯ୍ୟପୁରରେ ଦୁଇଜଣ ରାଜକୁମାର ରଥନେମି ଓ ଅରିଷ୍ଟନେମି ଥିଲେ । ରାଜୀମତୀ ନାମକ ଜଣେ ସୁନ୍ଦରୀ ରାଜକୁମାରୀ ସହ ଅରିଷ୍ଟନେମିର ବିବାହ ହେବାକୁ ଯାଉଥିଲା । ବରଯାତ୍ରାରେ ଯିବା ସମୟରେ ସେ ଜାଣିପାରିଲେ ଯେ

ଅନେକ ଜୀବ ବନ୍ଧା ହୋଇ ବିବାହ ଭୋଜ ପାଇଁ ନିଆଯାଉଛନ୍ତି । ଏଥିରେ ତାଙ୍କ ମନରେ ପ୍ରଚଣ୍ଡ ଦୁଃଖ ଜାତ ହେଲା । ଏବଂ ସେ ସାଧୁ ହେବାପାଇଁ ନିଶ୍ଚୟ କଲେ । ଏହି ଖବର ଶୁଣିବା କ୍ଷଣି ରାଜୀମତୀ ସନ୍ୟାସବ୍ରତ ଗ୍ରହଣ କଲେ । ପରେ ବୁଲୁବୁଲୁ ସେ ବର୍ଷାରେ ଭିଜିଗଲେ । ପାଟରେ ଥିବା ଏକ ଗୁମ୍ଫାରେ ଆଶ୍ରୟ ନେଲେ । ଏକୁଟିଆ ଦେଖି ସେ ଓଦାଲୁଗା ଶୁଖାଇବାକୁ ଲୁଗାଟି ଦେହରୁ ଉତାରିଦେଲେ । କିନ୍ତୁ ବହୁ ପୂର୍ବରୁ ସେଠାରେ ରଥନେମୀ ତପସ୍ୟାରେ ରତ ଥିଲେ । ରାଜୀମତୀଙ୍କୁ ଉଲଗ୍ନ ଅବସ୍ଥାରେ ଦେଖି ସେ କାମୋନ୍ମତ୍ତ ହୋଇ ରାଜୀମତୀଙ୍କ ଆଡକୁ ଆଗେଇ ଆସିଲେ ଏବଂ କହିଲେ ଆସ ଆମେ ଯୌବନ ସଂଭୋଗ କରିବା । ମନୁଷ୍ୟ ଜୀବନ ଦୁର୍ଲଭ । ଏଣୁ ସଂଭୋଗ କରିସାରିବା ପରେ ସାଧୁଜୀବନକୁ ଫେରିଯିବା । ଏହା ଶୁଣି ରାଜୀମତୀ ତାହାଙ୍କୁ ଭର୍ତ୍ସନା କଲେ ।

୨ । **ଆବସ୍ସୟ** ( ଆବଶ୍ୟକ ) ରେ ନିତ୍ୟକର୍ମର ଛ'ଟି କ୍ରିୟା କୁହାଯାଇଛି—ସାମୟିକ, ଚତୁର୍ବିଂଶତିସ୍ତବ, ବନ୍ଦନା, ପ୍ରତିକ୍ରମଣ, କାୟୋତ୍ସର୍ଗ ଏବଂ ପ୍ରତ୍ୟାଖ୍ୟାନ ।

୩ । **ଦସବେୟାଲିୟ** (ଦଶବୈକାଳିକ) : ଏଥିରେ ଦଶଟି ଅଧ୍ୟୟନ, ଯାହାଦ୍ୱାରା କାଳ ଛାଡି ବିକାଳ ଅଧ୍ୟୟନ କରାଯାଏ । ଏଥିରେ ମୁନିବୃଷଙ୍କ ଆଚାର ବର୍ଣ୍ଣିତ । ଶ୍ରମଣ ପାଇଁ ଅହିଂସକ ମଧୁକର ବୃତ୍ତି, ଅହିଂସା-ସଂଯମ-ତପରୂପୀ ଧର୍ମର ଉଲ୍ଲେଖ ଏବଂ ଶ୍ରାମଣ୍ୟ ( ଯେ ସଂଯମ ପ୍ରାପ୍ତି ପାଇଁ ଶ୍ରମ କରିପାରେ ଓ ଯେଉଁ ଭାବକୁ ଧାରଣ କରିବା ବ୍ୟକ୍ତି ଶ୍ରାମଣ୍ୟ ) ଇତ୍ୟାଦିର ଉଲ୍ଲେଖ ମିଳେ । ଏଥିରେ ମନ୍ତ୍ର ଓ ଉପଦେଶଗୁଡ଼ିକର ପ୍ରାଚୁର୍ଯ୍ୟ ଦ୍ରଷ୍ଟବ୍ୟ । ଏତଦ୍‌ବ୍ୟତୀତ ସୁଭାଷିତ ନ୍ୟାୟ ରୂପକାଦିର ବର୍ଣ୍ଣନା ମଧ୍ୟ ସୁସ୍ପଷ୍ଟ ।

୪ । **ପିଣ୍ଡଣିଜ୍ଜୁତ୍ତି** (ପିଣ୍ଡ ନିର୍ଯୁକ୍ତି) ରେ ,ପିଣ୍ଡ' ଅର୍ଥାତ୍ ମୁନିଙ୍କ ଗ୍ରହଣଯୋଗ୍ୟ ଆହାରର ବର୍ଣ୍ଣନା ବା ବିବେଚନା କରା-ଯାଇଛି । ବାସ୍ତବରେ ଏଥିରେ ଭିକ୍ଷୁମାନଙ୍କ ଆଚାର ବ୍ରତାଦିର ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

୫ । **ଓହୋଣିଜ୍ଜୁତ୍ତି** (ଓଘନିର୍ଯୁକ୍ତି) ମଧ୍ୟ ପିଣ୍ଡଣିଜ୍ଜୁତ୍ତି ପରି ସାଧୁମାନଙ୍କ ଆଚାର-ବ୍ୟବହାର ପ୍ରତିପାଦନ ଓ ନାନା ଉଦାହରଣ ଦ୍ୱାରା ସ୍ପଷ୍ଟ କରାଯାଇଛି ।

ସଂଯମ ପାଳନ ଅପେକ୍ଷା ଆତ୍ମରକ୍ଷା କରିବା ଦରକାର । କାରଣ, ଜୀବନ ରହିଲେ ସଂଯମ ଭ୍ରଷ୍ଟ ହେଲେ ବି ତପସ୍ୟାଦି ଦ୍ୱାରା ଶୁଦ୍ଧି କରାଯାଇପାରିବ । ପରିଣାମରେ ଶୁଦ୍ଧତାହିଁ ମୋକ୍ଷର କାରଣ ।

କୌଣସି ଗ୍ରାମରେ ସାଧୁମାନେ ସେଠିକାର ମାଲିକଙ୍କୁ ପଚାରି ପ୍ରବେଶ କରୁଥିଲେ ଓ ଚତୁର୍ମାସ ବିତିଯିବା ପରେ ତାଙ୍କର ପରାମର୍ଶ ନେଇ ଅନ୍ୟତ୍ର ଯାତ୍ରା କରୁଥିଲେ । ସନ୍ଧ୍ୟା ସମୟରେ ଆଚାର୍ଯ୍ୟ ନିଜ ବିହାର ସୂଚନା ଦିଅନ୍ତି ଓ ଯିବାପୂର୍ବରୁ ମାଲିକଙ୍କ ପରିବାରକୁ ଧର୍ମୋପଦେଶ ଦିଅନ୍ତି । ଶେଷରେ ଶୁଭଲଗ୍ନ ଦେଖି ଯାତ୍ରାରମ୍ଭ କରନ୍ତି । ସେମାନେ ରାତ୍ରିକାଳରେ ଯାତ୍ରା କରନ୍ତି ନାହିଁ । ଅନ୍ୟଥା ହେଉଁ ହେଉଁ ହେବ ପଥ ମଧ୍ୟରେ ରାତି ହୋଇଯାଏ ତାହାହେଲେ ବନ୍ୟଜନ୍ତୁ, ଚୋର, ରକ୍ଷପାଳ, ବଳଦ, କୁକୁର ଏବଂ ବେଶ୍ୟାଦିର ଭୟ ଥାଏ । × × × ଯଦି କୌଣସି ବିଧବା, ପ୍ରୋଷିତଭର୍ତ୍ତୃକା କିଂବା ରକ୍ଷିତା ସ୍ତ୍ରୀ ସାଧୁଙ୍କୁ

ଏକୁଟିଆ ପାଇ ଘର ଦ୍ୱାର ବନ୍ଦ କରିଦିଏ, ସେହି ଅବସ୍ଥାରେ ଯଦି ସାଧୁ ସ୍ତ୍ରୀକୁ (ଗ୍ରହଣ) ଇଚ୍ଛା କରେ, ତାହାହେଲେ ସେ ସଂଯମ ଭ୍ରଷ୍ଟ ହୁଏ । ଯଦି ସାଧୁ ଇଚ୍ଛା ନକରେ ତେବେ ବି ସ୍ତ୍ରୀ, ସାଧୁର ଅପବାଦ ରଟନା କରେ । ଯଦି କୌଣସି ସ୍ତ୍ରୀ ସାଧୁଙ୍କୁ ଜବରଦସ୍ତି ଧରି ପକାଏ ସେହି ସ୍ଥଳରେ ସାଧୁ ତାହାଙ୍କୁ ଧର୍ମୋପଦେଶ ଦିଅନ୍ତି । ଉପଦେଶ ଶୁଣି ବି ଯଦି ସ୍ତ୍ରୀ ନଛାଡ଼େ, ତେବେ ଗୁରୁଙ୍କ ପାଖକୁ ଯିବାର ବାହାନା କରି ଚାଲିଯାନ୍ତି । ସେଥିରେ ବି ଯଦି ସଫଳତା ନ ମିଳେ, ବ୍ରତଭଙ୍ଗ କରିବା ପାଇଁ ଯେ ଗମ୍ଭୀର ମଧ୍ୟକୁ ଚାଲି ଯାଆନ୍ତି ଓ ଅନ୍ୟ ଉପାୟ ନଦେଖି ପ୍ରାଣତ୍ୟାଗ କରିଥାନ୍ତି ।*[୮]

## ଦସପଇଣ୍ଣଗ ( ଦଶ ପ୍ରକୀର୍ଣ୍ଣକ )

ଆଗମ ଗ୍ରନ୍ଥ ଟୀକାକାରଙ୍କ ମତାନୁସାରେ ତୀର୍ଥଙ୍କରମାନଙ୍କ ଦ୍ୱାରା ଦିଆଯାଇଥିବା ଉପଦେଶର ଅବଲମ୍ବନରେ ଅନେକ ମୁନି ଦ୍ୱାରା ଯେଉଁ ଗ୍ରନ୍ଥମାନ ରଚିତ, ସେଗୁଡ଼ିକ ପ୍ରକୀର୍ଣ୍ଣକ । ଏଗୁଡ଼ିକର ସଂଖ୍ୟା ୧୪,୦୦୦ ବୋଲି କୁହାଯାଇଛି ।

୧ । ଚଉସରଣ ( ଚତୁଃସରଣ ) ରେ ୬୩ଟି ଗାଥା ରହିଛି । ଏଥିରେ ଛ'ଟି ନିର୍ଦ୍ଦେଶ ପରେ ଅରିହନ୍ତ, ସିଦ୍ଧ, ସାଧୁ, ଓ ଜୈନଧର୍ମ—ଏହି ଚାରୋଟିର ଶରଣ ଗ୍ରହଣ କରି ପାପର ନିନ୍ଦା ଓ ପୁଣ୍ୟର ପ୍ରଶଂସା କରାଯାଇଛି । ଏହା ବୀରଭଦ୍ରଙ୍କ ରଚନା ଓ ଏହା ଉପରେ ଭୁବନତୁଙ୍ଗଙ୍କର ବୃତ୍ତି ଏବଂ ଗୁଣରତ୍ନଙ୍କ ଅବଚୂରି ମଧ୍ୟ ମିଳେ ।

---

* ପ୍ରା: ସା: ଇ: ପୃ ୧୭୨-୧୮୬ ଦ୍ରଷ୍ଟବ୍ୟ ।

୨ । **ଆଉରପଚ୍ଚଖାଣ** ( ଅତୁର ପ୍ରତ୍ୟାଖ୍ୟାନ ) ର ରଚୟିତା ବୀରଭଦ୍ର । ଏହା ବାଳମରଣ ଓ ପଣ୍ଡିତ ମରଣର ବିସ୍ତୃତ ବିବେଚନ ; ପ୍ରତ୍ୟାଖ୍ୟାନ—'ପରିତ୍ୟାଗ'କୁ ମୋକ୍ଷ ପ୍ରାପ୍ତିର ସାଧନ ଭାବରେ ଧରାଯାଇଛି । ଏହାର କିଛି ଅଂଶ ଗଦ୍ୟରେ ସନ୍ନିବିଷ୍ଟ ।

୩ । **ମହାପଚ୍ଚଖାଣ** ( ମହାପ୍ରତ୍ୟାଖ୍ୟାନ ) ରେ ଦୁଷ୍ଟକର୍ମର ନିନ୍ଦା, ଏକତ୍ୱାତ୍ମକ ଭାବନା, ବ୍ରତ ଏବଂ ଆରାଧନାମାନଙ୍କ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି । ଏହା ପୂର୍ବୋକ୍ତ ପ୍ରତ୍ୟାଖ୍ୟାନର ପୂରକ ।

୪ । **ଭତ୍ତପରିଣା** (ଭକ୍ତପରିଜ୍ଞା) ରେ ପରଲୋକ ସିଦ୍ଧିର ନିରୂପଣ କରାଯାଇଛି । ବନ୍ଧ ମୋକ୍ଷର କାରଣ ମନ । ଏଣୁ ମନକୁ ବଶ କରିବାପାଇଁ ଅନେକ ଦୃଷ୍ଟାନ୍ତର ପ୍ରୟୋଗ କରାଯାଇଛି ।

୫ । **ତନ୍ଦୁଲ ବେୟାଲିୟ** ( ତନ୍ଦୁଲ ବୈଚାରିକ ) ରେ ଗୌତମ ଓ ମହାବୀରଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଭାବରେ ଜୀବର ଗର୍ଭାବସ୍ଥା, ଆହାର ବିଧି, ବାଳଜୀବନ କ୍ରୀଡ଼ା ଇତ୍ୟାଦି ଅବସ୍ଥାର ବର୍ଣ୍ଣନା ମିଳେ । ବିଭିନ୍ନ ପ୍ରସଂଗରେ ସ୍ତ୍ରୀ ସ୍ୱରୂପର ବିଶ୍ଳେଷଣ ନାନାରୂପକାଦି ଦ୍ୱାରା କରଯାଇଛି । ପ୍ରମଦା, ନାରୀ, ମହିଳା, ରାମା, ଅଙ୍ଗନା, ଲଳନା, ଯୋଷିତା, ବନିତା ପ୍ରଭୃତି ଶବ୍ଦର ବ୍ୟୁତ୍ପତ୍ତି ଦେଖାଇ ଦିଆଯାଇଛି । ସହିତ ସଂସ୍କୃତିର ସ୍ୱରୂପ ଉପରେ ଆଲୋକପାତ କରାଯାଇଛି ।

୬ । **ସଂଥାରକ** ( ସଂସ୍ତାରକ ) ରେ ସାଧୁ ଅନ୍ତିମ ସମୟରେ ସଂସାର 'ତୃଣାସନ', ଗ୍ରହଣ କରି ସମାଧି ମରଣ

ଧାରଣ କରିବା ବିଧିବିଧାନ ବର୍ଣ୍ଣିତ । ମୃତ୍ୟୁ ସମୟରେ ସ୍ଥିର ପରିଣାମ ରକ୍ଷି ପଣ୍ଡିତ ମରଣ ଦ୍ୱାରା ସଦ୍‌ଗତି ପ୍ରାପ୍ତ କରାଯାଇ ପାରିବ । ଏହି ପ୍ରସଙ୍ଗରେ ଅନେକ ଦୃଷ୍ଟାନ୍ତ ମିଳେ । ଯେଉଁଥିରେ ମୁନି ଓ ଶ୍ରାବକଙ୍କ ଉପସର୍ଗ ସହ୍ୟର ପ୍ରଶଂସା କରାଯାଇଛି ।

୭ । **ଗଚ୍ଛାଚାର** (ଗଚ୍ଛାଚାର) ରେ ମୁନି ଓ ଆର୍ଯ୍ୟିକା-ମାନଙ୍କର ଗଚ୍ଛ ନିୟମାଦିର ପାଳନ ବିଧି କୁହାଯାଇଛି । ନିର୍ଗ୍ରନ୍ଥ ଓ ନିର୍ଗ୍ରନ୍ଥିମାନଙ୍କୁ ପରସ୍ପର ପ୍ରତି ସତର୍କ ରହିବାକୁ ଏବଂ କାମ ବାସନାକୁ ନିଜର କରାୟତ୍ତ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ମନସ୍ଥିର ରହିଲେ ବି ସଂଯୋଗ ( ଦୁର୍ଘଟଣା ) ରୁ ସବୁବେଳେ ନିଜକୁ ଦୂରେଇ ରଖିବା ମଙ୍ଗଳପ୍ରଦ । ମୁନି, ବୃଦ୍ଧା, ଦୁହିତା, ଭଗ୍ନୀ ଇତ୍ୟାଦିଙ୍କ ଶରୀର ନ ଛୁଇଁବା ଉଚିତ ।

୮ । **ଗଣିବିଜ୍ଜା** (ଗଣି ବିଦ୍ୟା) ରେ ଦିବସ, ତିଥି ନକ୍ଷ-ତ୍ରାଦିର ବିଚାର ରହିଛି । ଜ୍ୟୋତିଷ ଦୃଷ୍ଟିରୁ ଏହା ଏକ ଉପାଦେୟ ଗ୍ରନ୍ଥ ।

୯ । **ଦେବିନ୍ଦ ଥବ** (ଦେବେନ୍ଦ୍ର ସ୍ତବ) ରେ କୌଣସି ଶ୍ରାବକ, ୨୪ ତୀର୍ଥଙ୍କର ମାନଙ୍କର ବନ୍ଦନା କରି ସ୍ତୁତି କରେ ।

୧୦ । **ମରଣ ସମାହି** (ମରଣ ସମାଧି) ହେଉଛି ୬୬୩ ଗାଥାର ବଡ଼ ପ୍ରକୀର୍ଣ୍ଣକ । ଏଥିରେ ୧୪ ପ୍ରକାରର ସମାଧି ମରଣ ବିଧି ବର୍ଣ୍ଣିତ । ଆଚାର୍ଯ୍ୟର ଗୁଣ, ତପ ଏବଂ ଜ୍ଞାନର ମହିମା ମଧ୍ୟ ଏହି ଗ୍ରନ୍ଥରେ ନିରୂପିତ । ଏତଦ୍‌ଭିନ୍ନ ଧର୍ମୋପଦେଶ ଦାନ ଏବଂ ପାଦୋପଗମନାଦି ତପ ଦ୍ୱାରା ସିଦ୍ଧଗତି ପ୍ରାପ୍ତ କରିବା ଲୋକଙ୍କ ଦୃଷ୍ଟାନ୍ତ ମିଳେ ।

## ଚୂଲିକାସୂତ୍ର

"ନନ୍ଦୀସୂତ୍ର" ଏବଂ "ଅଣୁ ଓ ଗଦାର (ଅନୁଯୋଗ ଦ୍ୱାର) ସୂତ୍ର" ଏ ଦୁଇଟିକୁ ଜୈନ ଧର୍ମ ଓ ସାହିତ୍ୟର ଜ୍ଞାନକୋଷ ବୋଲି କହନ୍ତି । ଚବିଶ ଜଣ ତୀର୍ଥଙ୍କର ଓ ୧୧ ଜଣ ଗଣଧରଙ୍କ ଉଲ୍ଲେଖ ସହ ଧାର୍ମିକ ଓ ଲୌକିକ ବିଜ୍ଞାନର ଜ୍ଞାନ ମଧ୍ୟ ଏଥିରେ ପରିଦୃଷ୍ଟ ହୁଏ । ନନ୍ଦୀସୂତ୍ରର ତୀର୍ଥଙ୍କର, ଗଣଧର ଏବଂ ଗୁରୁ-ମାନଙ୍କର ସ୍ତୁତି ମିଳେ । ଏହାର ରଚୟିତା ହେଉଛନ୍ତି ଦେବର୍ଦ୍ଧି । ଅଣୁ ଓ ଗଦାର ପ୍ରଶ୍ନୋତ୍ତର ଶୈଳୀରେ ପଲ୍ୟୋପମ, ସାଗରୋପମ, ସଂଖ୍ୟାତ, ଅସଂଖ୍ୟାତ ଏବଂ ଅନନ୍ତର ପ୍ରକାର ଭେଦ ଓ ନିକ୍ଷେପ, ଅନୁଗମ ଓ ନୟର ନିରୂପଣ କରାଯାଇଛି । ଏହି ଗ୍ରନ୍ଥରେ ବ୍ୟାକରଣ ସମ୍ବନ୍ଧୀୟ ଚର୍ଚ୍ଚା, ସମାସ, ତଦ୍ଧିତ, ଧାତୁ, ନିରୁକ୍ତି, ବର୍ଣ୍ଣାଗମ, ଲୋପ ଏବଂ ବର୍ଣ୍ଣବିକାର ତଥ୍ୟାଦିର ବିବେଚନା କରା-ଯାଇଛି । ବିଭିନ୍ନ ପ୍ରକାରର ମନୁଷ୍ୟର ଉଲ୍ଲେଖ ମିଳେ । ଯଥା ପାଖଣ୍ଡିମାନଙ୍କ ମଧ୍ୟରେ ଶ୍ରମଣ, ପାଣ୍ଡୁରଙ୍ଗ, ଭିକ୍ଷୁ, ତାପସ, କାପାଳିକ ଇତ୍ୟାଦି ବ୍ୟବସାୟୀମାନଙ୍କ ମଧ୍ୟରେ ଦୋଷିସ୍ୱ (ଲୁଗା ବେପାରୀ) ସୋତ୍ତିୟ (ସୂତା ବେପାରୀ) କମାର (କୁମ୍ଭାର) ଇତ୍ୟାଦି ଓ ଶିଳ୍ପଜୀବୀଙ୍କ ମଧ୍ୟରେ ତନ୍ତୀ, ଚିତ୍ରକର, ପଟ୍ଟକାର, କାଷ୍ଠାକାର କାବ୍ୟରେ ନବରସର ବ୍ୟାଖ୍ୟା ଓ ସଂଗୀତରେ ସପ୍ତ ସ୍ୱରର ବର୍ଣ୍ଣନା ମଧ୍ୟ ଏଥିରେ ମିଳେ ।*

---

* ପ୍ରା: ଭା: ସା: ଆଲୋଚନାତ୍ମକ ଇତିହାସ ପୃ ୧୯୯-୨୦୦

୪

# ଆଗମେତର ଜୈନ ସାହିତ୍ୟ

## ସ୍ତୋତ୍ର

ଭଗବାନ୍ ମହାବୀର ଏବଂ ପ୍ରାଚୀନ ଜୈନ ଗୁରୁମାନଙ୍କ ସ୍ତୁତିରେ ବହୁ ଶ୍ରେଷ୍ଠ ଶ୍ରେଷ୍ଠ ଗ୍ରନ୍ଥ ପ୍ରାକୃତରେ ରଚିତ । 'ଋଷଭ ପଞ୍ଚାଶିକା', 'ଅଜିୟ ସନ୍ତିଥୟ (ଅଜିତ ଶାନ୍ତି ସ୍ତବ)', ମହାବୀର ସ୍ତବ, ପାର୍ଶ୍ୱ ଜିନ ସ୍ତବକ, ଶାନ୍ତିନାଥ ସ୍ତବକ ଇତ୍ୟାଦି ଅଳଂକାର ଓ ସାହିତ୍ୟ ଦୃଷ୍ଟିରୁ ଉଲ୍ଲେଖ ଯୋଗ୍ୟ ଅନବଦ୍ୟ ସୃଷ୍ଟି । ଅଜିତ ଥିଲେ ଦ୍ୱିତୀୟ ତୀର୍ଥଙ୍କର ଓ ଶାନ୍ତିନାଥ ଥିଲେ ଷୋଡଶ, ଏ ଦୁହିଁଙ୍କ ସ୍ତୁତି ନନ୍ଦଷେଣ, ଅଜିୟସନ୍ତିଥୟ (୯ମ ଶତାବ୍ଦୀ) ରେ ରଚନା କରିଥିଲେ । ଏହାର ଭାଷା ପ୍ରବାହପୂର୍ଣ୍ଣ ଓ କାବ୍ୟମୟୀ ଥିଲା । 'ମହାବୀର ସ୍ତବ' ଅଳଂକୃତ ପ୍ରାକୃତ ରଚନା । ଏଥିରେ ଗୋଟିଏ ଶବ୍ଦ ତିନଥର ବ୍ୟବହୃତ ହୋଇ ତିନୋଟି ପୃଥକ୍ ଅର୍ଥ ବୁଝାଏ ।

ଆଗମ ସାହିତ୍ୟରେ ଗଦ୍ୟ-ପଦ୍ୟର ମିଶ୍ରଣ ଦେଖିବାକୁ ମିଳେ । ବିଷୟ ନିରୂପଣରେ ଗଦ୍ୟ-ପଦ୍ୟ ଉଭୟର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି । କାହାଣୀର ବୀଜସୂତ୍ର, ସରସ ପ୍ରେମାଖ୍ୟାନର ମୂଳ କେତେକାଂଶରେ ଆଗମ ସାହିତ୍ୟରେ ମିଳେ ।

ଅର୍ଦ୍ଧମାଗଧୀ, ଶୌରସେନୀ ଓ ମହାରାଷ୍ଟ୍ରୀ ପ୍ରଭୃତି ପ୍ରାକୃତ ଭାଷାର ବିକାଶରେ ଆଗମ ସାହିତ୍ୟର ଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ରୂପ ରଚନା ଶବ୍ଦାବଳୀ, ବାକ୍ୟରଚନା ସୁବ୍ୟବସ୍ଥିତ ଭାବରେ ଜାଣିବାକୁ ଆଗମ ସାହିତ୍ୟ ବିଶେଷ ଉପଯୋଗୀ ।

କାବ୍ୟର ବିଭିନ୍ନ ତତ୍ତ୍ୱ—ବସ୍ତୁ, ଇତିବୃତ୍ତ, ସଂଳାପ ଇତ୍ୟାଦି ଏହି ସାହିତ୍ୟରେ ସୁଲଭ । ଜୀବନ ଓ ଜଗତର ନାନାବିଧ ଅନୁଭୂତିର ଚିତ୍ରଣ ଏହାର ଅନ୍ୟ ଏକ ବିଶେଷତ୍ୱ । ବିଭିନ୍ନ ଛନ୍ଦ ପ୍ରୟୋଗ ଓ ଅଳଂକାରର ଉପଯୁକ୍ତ ପ୍ରୟୋଗ ଭାଷାକୁ ଯଥେଷ୍ଟ ଶକ୍ତି ପ୍ରଦାନ କରିଥିଲା ।

ଋଷଭପଞ୍ଚାଶିକାରେ ଧନପାଳଙ୍କ ୫୦ଟି ପଦ୍ୟ ରହିଛି । ଏହାର ଶୈଳୀ ଓ ମାହାତ୍ମ୍ୟକ ମୂଲ୍ୟବୋଧ ଖୁବ୍ ଉଚ୍ଚକୋଟୀର । ଏହାର କଳ୍ପନା ଖୁବ୍ ସୁନ୍ଦର ଓ ରୂପକଗୁଡ଼ିକ ମଧ୍ୟ ତଦନୁରୂପ । ଉଦାହରଣ : "ଜୀବନ ଏକ ସମୁଦ୍ର, ଯେଉଁଥିରେ ଋଷଭଦେବ ଏକ ନଉକା । ଜୀବନ ଏକ ବନ, ଯେଉଁଠି ଡ଼ାକୁ ସବୁ ଲୁଟିଥାଏ, ସେଠାରେ ଋଷଭ ହିଁ ବନ୍ଧୁ ରହିପାରନ୍ତି । ଜୀବନ ଏକ ଅଜ୍ଞାନ ରାତି, ଋଷଭ ଏକ ସୂର୍ଯ୍ୟ ।"

ପାର୍ଶ୍ୱଜିନ-ସ୍ତବନ ( ଖ୍ରୀ: ୧୨୦୦ )—ଏହା ଧର୍ମବର୍ଦ୍ଧନଙ୍କ ଦ୍ୱାରା ରଚିତ । 'ଶାନ୍ତିନାଥ ସ୍ତବନ' (ପ୍ରାୟ ଖ୍ରୀ ୧୩୨୫) ରେ ଛ' ଛନ୍ଦ ଭାଷାର ପ୍ରୟୋଗ ହୋଇଛି । ଏହା ଜିନପଦ୍ମଙ୍କ ଦ୍ୱାରା ବିରଚିତ । ଏତଦ୍‌ବ୍ୟତୀତ 'ଉବସଗଗହର' (ଉପସର୍ଗହର) ଓ 'ଜୟତିହୁଅଣ' (ଜୟତିଭୁବନ) ଜୈନ ମହାରାଷ୍ଟ୍ରୀରେ ଲିଖିତ ପ୍ରସିଦ୍ଧ ସ୍ତୋତ୍ର ସଂଗ୍ରହ । 'ଋଷିମଣ୍ଡଳ-ସ୍ତୋତ୍ର'ରେ ପ୍ରାଚୀନ ଜୈନ ମୁନିମାନଙ୍କ ସଂସ୍ମରଣ ବର୍ଣ୍ଣିତ ।

## ନିବନ୍ଧ-ସାହିତ୍ୟ

ପ୍ରାକୃତ ନିବନ୍ଧ ସାହିତ୍ୟରେ ମୁଖ୍ୟତଃ ଧାର୍ମିକ ଓ ଦାର୍ଶନିକ ବିଷୟର ଚର୍ଚ୍ଚା ମିଳେ । ଏହାର ଆରମ୍ଭ ନିର୍ଯ୍ୟୁକ୍ତିମାନଙ୍କ ଠାରୁ ହୁଏ । ନିର୍ଯ୍ୟୁକ୍ତି (ନିଯୁକ୍ତ) ସିଦ୍ଧାନ୍ତର ସଂକ୍ଷିପ୍ତ ଓ ଛନ୍ଦୋବଦ୍ଧ ବ୍ୟାଖ୍ୟା । ଭଦ୍ରବାହୁ ( ଖ୍ରୀ: ପୂ: ୩୬୫) କେତେକ ଗୁଡ଼ିଏ ସିଦ୍ଧାନ୍ତ ଗ୍ରଂଥର ଆଧାରରେ ନିର୍ଯ୍ୟୁକ୍ତିମାନ ଲେଖିଲେ ଯାହାର ସଂଖ୍ୟା ଆନୁମାନିକ ଏକ ଡ଼ଜନ ହେବ । ଏହାର ସହାୟତାରେ ଭାଷ୍ୟ ଓ ଚୂର୍ଣ୍ଣି ରଚିତ ହୋଇଥିଲା । ଏହି ମୂଳଦୁଆରେ ଭବିଷ୍ୟତରେ ଖୁବ ଉନ୍ନତ ଟୀକା-ସାହିତ୍ୟ ବିକାଶ ଲଭ'କଲା । ପ୍ରାକୃତ ସାହିତ୍ୟରେ ଦେବେନ୍ଦ୍ର କୃତ 'ଉତ୍ତରାଧ୍ୟୟନ' ର ଟୀକା, ଶୀଳାଂକ (ଖ୍ରୀ:୮୭୨) ଙ୍କ ଅନେକ ବୃତ୍ତି, ଜିନପ୍ରଭସୂରି କୃତ 'ତୀର୍ଥକଲ୍ପ' (ଖ୍ରୀ.୧୩୩୧) ଆଦି ସୁପ୍ରସିଦ୍ଧ ।

ସୈଦ୍ଧାନ୍ତିକ ଗ୍ରନ୍ଥ ମଧ୍ୟରେ ଶିବଶର୍ମ କୃତ 'କର୍ମପ୍ରକୃତି', ଚନ୍ଦ୍ରର୍ଷି କୃତ 'ପଂଚସଂଗ୍ରହ' ସିଦ୍ଧସେନ କୃତ 'ସମ୍ମତିତର୍କ' ଓ ଆଚାର୍ଯ୍ୟ ହରିଭଦ୍ର କୃତ ଅନେକଗୁଡ଼ିଏ ଧର୍ମଗ୍ରଂଥ ଗମ୍ଭୀର ତାତ୍ତ୍ୱିକ ଅଧ୍ୟୟନ ପାଇଁ ଅତ୍ୟାବଶ୍ୟକ ।

ଉପରୋକ୍ତ ବ୍ୟାଖ୍ୟା ଗ୍ରଂଥ ବ୍ୟତୀତ ଜୈନ ମହାରାଷ୍ଟ୍ରୀରେ ପ୍ରକରଣ, ସଂଗ୍ରହଣୀ, କ୍ଷେତ୍ରସମାସ, କର୍ମଗ୍ରଂଥ, ଜୀବବିଚାର, ନବତତ୍ତ୍ୱ, ସମାଚାରୀ, ବିଧି, ପ୍ରବନ୍ଧ ଆଦି ବିଭିନ୍ନ ପ୍ରକାରର ଗ୍ରନ୍ଥ ଲିଖିତ । ଧର୍ମସଂଗ୍ରହଣୀ, ବ୍ୟାକରଣ ସୂତ୍ର, ବିଶେଷାବଶ୍ୟକ, ପ୍ରବଚନସାରୋଦ୍ଧାର, ଉପଦେଶ ପଦଟୀକା, ଉପଦେଶ ରହସ୍ୟ ଆଦି ଗ୍ରନ୍ଥ ମହାରାଷ୍ଟ୍ରୀର ମଧ୍ୟଯୁଗ ଓ ଉତ୍ତର ଯୁଗର ଗଦ୍ୟ ପଦ୍ୟ ରୂପରେ ସୁରକ୍ଷିତ ।

ଦିଗମ୍ବର-ଜୈନ-ସାହିତ୍ୟର ଭାଷା ଶୌରସେନୀ । ଏହାର ପ୍ରାଚୀନତମ ରୂପ ପୁଷ୍ପଦନ୍ତ ଓ ଭୂତବଳି କୃତ ଷଟ୍‌ଖଣ୍ଡାଗମ ସୂତ୍ରରେ ଉପଲବ୍ଧ । ଏହାର ପ୍ରଧାନ ବିଷୟ ହେଲା କର୍ମସିଦ୍ଧାନ୍ତ । ଗୁଣଧର ଆଚାର୍ଯ୍ୟଙ୍କ 'କଷାୟପ୍ରାଭୃତ' ମଧ୍ୟ ପ୍ରସିଦ୍ଧ ସୂତ୍ର ଗ୍ରନ୍ଥ । ଏହାର ରଚନାକାଳ ବିକ୍ରମଙ୍କ ଦ୍ୱିତୀୟଶତାବ୍ଦୀ ବୋଲି ଧରା ଯାଇଛି ।

ଶିବାର୍ଯ୍ୟ କୃତ 'ମୂଳାରାଧନା'ରେ ତପ, ଜ୍ଞାନ, ଚରିତ୍ର, ଦର୍ଶନ ଆଦି ଅନେକ ବିଷୟରେ ବର୍ଣ୍ଣନା ରହିଛି । କୁନ୍ଦକୁନ୍ଦାଚାର୍ଯ୍ୟ ୮୪ ପାହୁଡର ରଚନା କରିଥିଲେ । ଏଗୁଡ଼ିକ ମଧ୍ୟରେ 'ପଂଚତ୍ଥିୟସାର' (ପଞ୍ଚାସ୍ତିକାୟସାର) 'ପବୟଣସାର' (ପ୍ରବଚନସାର) 'ସମୟସାର' ନିୟମସାର' 'ଛପପାହୁଡ' ( ଷଟ୍‌ପ୍ରାଭୃତ ) ଆଉ ୧୨/୧୩ ଗୋଟି ଗ୍ରଂଥର ସୂଚନା ମିଳେ । ଏଗୁଡ଼ିକ ଦିଗମ୍ବର ଜୈନ ସଂପ୍ରଦାୟରେ ଖୁବ୍ ପ୍ରଚଳିତ । ଏହି ବିଷୟକ ଅନ୍ୟ ରଚନାଗୁଡ଼ିକ ହେଲା—ବଟ୍ଟକେର କୃତ 'ମୂଳାଚାର', ବସୁନନ୍ଦି କୃତ 'ଶ୍ରାବକାଚାର', ଦେବସେନ କୃତ 'ଦର୍ଶନ ସାର' ଓ ଆରାଧନାସାର' ଓ ଶାନ୍ତିସୂରି କୃତ 'ଜୀବ ବିଚାର' । ଏଗୁଡ଼ିକର ସାହିତ୍ୟିକ ମହତ୍ତ୍ୱ ନଥିଲେ ମଧ୍ୟ ଗବେଷକମାନଙ୍କ ପାଇଁ ଖୁବ୍ ବହୁତ ସାମଗ୍ରୀ ଯୋଗାଏ ।

## ପ୍ରାକୃତ କଥା ସାହିତ୍ୟ
( ଖ୍ରୀ: ୪୦୦-୧୬୦୦ )

କଥା ବା କାହାଣୀ ଅତି ପ୍ରାଚୀନକାଳରୁ ପ୍ରଚଳିତ । ଭାରତର ସମସ୍ତ ଜାତିର ଲୋକଙ୍କ ମଧ୍ୟରେ ନାନା ପ୍ରକାର ଲୋକକଥା

ପ୍ରଚଳିତ । ଏଗୁଡ଼ିକର ଅଧ୍ୟୟନଦ୍ୱାରା ଭାରତୀୟ ସଂସ୍କୃତିର ଅଧ୍ୟୟନ ସମ୍ଭବ । ଏଣୁ ଲୋକକଥା ଓ କାହାଣୀ ସାହିତ୍ୟ ମାନବ ସମାଜର ବିକାଶାତ୍ମକ ଅଧ୍ୟୟନର ଏକ ବିଶିଷ୍ଟ ଆଧାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଜ୍ଞ ଓ ଅବୋଧମାନଙ୍କୁ ଅତି ସୁନ୍ଦର ଢ଼ଙ୍ଗରେ ବୁଝାଇବାକୁ କାହାଣୀ ହେଉଛି ଶ୍ରେଷ୍ଠ ମାଧ୍ୟମ ।

ଭାରତୀୟ ସାହିତ୍ୟରେ କଥାର ପ୍ରଥମ ନିଦର୍ଶନ ଋଗ୍ ବେଦରେ ମିଳେ । ଋଗ୍ ବେଦର ପୁରୂରବା-ଉର୍ବଶୀ, ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ସୌପର୍ଣ୍ଣୀ-କାଦ୍ରବ ଭଳି ରୂପାତ୍ମକ ଆଖ୍ୟାନ, ଉପନିଷଦମାନଙ୍କରେ ସନତ୍କୁମାର ନାରଦାଦିଙ୍କର ଭାବମୂଳକ ଆଧ୍ୟାତ୍ମିକ ବ୍ୟାଖ୍ୟା ଏବଂ ମହାଭାରତରେ ଗଙ୍ଗାବତରଣ, ଶୃଙ୍ଗ, ନହୁଷ, ଯଯାତି, ଶକୁନ୍ତଳା, ନଳାଦି ଉପାଖ୍ୟାନମାନ ବିଶେଷ ଉଲ୍ଲେଖଯୋଗ୍ୟ । ପାଲିଭାଷାରେ ବୌଦ୍ଧମାନଙ୍କ ଜାତକ ଓ ଜାତକଟ୍ଠ କଥାଗୁଡ଼ିକ କଥାସାହିତ୍ୟର ଅତୁଳନୀୟ ଭଣ୍ଡାର ।* ପୈଶାଚୀରେ ରଚିତ ଗୁଣାଢ଼୍ୟଙ୍କ ବଡ୍ଡକହା (ବୃହତ କଥା) କାହାଣୀଗୁଡ଼ିକ ସାହିତ୍ୟର ଅକ୍ଷୟ ଭଣ୍ଡାର । ପଞ୍ଚତନ୍ତ୍ର ଗଳ୍ପଗୁଡ଼ିକ ମଧ୍ୟ ବିଶ୍ୱରେ ଲୋକପ୍ରିୟ ଗଳ୍ପମାନଙ୍କ ମଧ୍ୟରେ ଅନ୍ୟତମ ।

ଆଗମ-ସାହିତ୍ୟରେ କାହାଣୀ ମାଧ୍ୟମରେ ଧାର୍ମିକ ଆଚାର, ଆଧ୍ୟାତ୍ମିକ ତତ୍ତ୍ୱ ଚିନ୍ତନ ଏବଂ ନୀତି ଓ କର୍ତ୍ତବ୍ୟ ପ୍ରଣୟନ କାହାଣୀ ମାଧ୍ୟମରେ କରାଯାଇଛି । କଥା, ଉପକଥା, ଅନ୍ତର୍କଥା, ଆଖ୍ୟାନ, ଆଖ୍ୟାୟିକା, ଉଦାହରଣ, ଦୃଷ୍ଟାନ୍ତ, ବୃତ୍ତାନ୍ତ ଏବଂ ଚରିତ ଆଦି ରୂପରେ କାହାଣୀମାନ ମିଳେ । ବସୁଦେବ ହିଣ୍ଡିରେ ଆଖ୍ୟାୟିକା-ପୁସ୍ତକ, କଥା ବିଜ୍ଞାନ ଓ ବ୍ୟାଖ୍ୟାନର ଉଲ୍ଲେଖ

* ଦ୍ରଷ୍ଟବ୍ୟ : ଏହି ପୁସ୍ତକର ପାଲି ସାହିତ୍ୟ ।

ଦେଇଛନ୍ତି । 'ସମରାଇଚକହା' (ହରିଭଦ୍ରସୂରି) ରେ ଅର୍ଥକଥା, କାମକଥା, ଧର୍ମକଥା ଓ ସଂକୀର୍ଣ୍ଣ କଥା ଇତ୍ୟାଦି ଚାରି ପ୍ରକାରର କଥା ସଂଗ୍ରହ ରହିଛି । ହରିଭଦ୍ରଙ୍କ 'ଧୂର୍ତ୍ତାଖ୍ୟାନ' ହାସ୍ୟ, ବ୍ୟଙ୍ଗ ଏବଂ ବିନୋଦର ଏକମାତ୍ର କଥା-ଗ୍ରନ୍ଥ । ହରିଭଦ୍ର ସୂରିଙ୍କ 'ଉପଦେଶ ପଦ' ରେ ବିବିଧ ମନୋରଂଜନ ସଂବାଦ, ପ୍ରଶ୍ନବାଚକଙ୍କୁ ପରାସ୍ତ କରିବା ଭଳି ଉତ୍ତର, ଧୂର୍ତ୍ତମାନଂକ ଆଖ୍ୟାନ, ବୁଦ୍ଧିଶକ୍ତି ଓ ଭକ୍ତିଗୁଡ଼ିକର ବର୍ଣ୍ଣନା ଦେଖିବାକୁ ମିଳେ । 'କୁବଲୟମାଳା' ର ଲେଖକ ଉଦ୍ଦ୍ୟୋତନ ସୂରି* କଥାସୁନ୍ଦରୀଙ୍କୁ ନବବଧୂ ରୂପରେ ସାଲଙ୍କାରା, ସୁନ୍ଦରୀ, ଲଳିତ ପଦାବଳୀରେ ବିଭୂଷିତ କରି କୋମଳ ଓ ମଞ୍ଜୁଳ ସଂଲାପଯୁକ୍ତ ତଥା ସହୃଦୟ ବ୍ୟକ୍ତିଙ୍କୁ ଆନନ୍ଦଦାୟକ ବୋଲି ଘୋଷଣା କରି କଥା ସାହିତ୍ୟଂକୁ ଲୋକପ୍ରିୟ କରିଛନ୍ତି । ଦେବେନ୍ଦ୍ର ସୂରି† ରାଜ କଥା, ସ୍ତ୍ରୀ କଥା, ଭକ୍ତ କଥା ଓ ଜନପଦ କଥା ନାମରେ ଚାରୋଟି ବିକଥାକୁ ଛାଡ଼ି ଧର୍ମକଥା ଶ୍ରବଣକୁ ମଙ୍ଗଳକାରକ ବୋଲି କହିଛନ୍ତି ।

ପ୍ରାକୃତ କଥାସାହିତ୍ୟକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇଛି ।

୧ । **ଉପଦେଶ କଥା**—ସାହିତ୍ୟ : କୁବଳୟମାଳା କଥା, ଉବଏସ ମାଲା, ଧର୍ମୋପଦେଶ ମାଳା ବିବରଣ ଇତ୍ୟାଦି ।

୨ । **ଆଖ୍ୟାୟିକା**— ସମରାଇଚକହା, ଧୂର୍ତ୍ତାଖ୍ୟାନ, କଥାକୋଷ ପ୍ରକରଣ, ଣାଣପଂଚମୀକହା, କହାରୟଣ କୋଷ; ଲଘୁକଥା ମାଳା ।

---

* ଜୈନ, ପ୍ରା:ସା:ଇ: ପୃ ୩୭୨

† ପର୍ବୋକ୍ତ ।

୩) **ଧାର୍ମିକ ଉପନ୍ୟାସ**—ତରଙ୍ଗବଇ କହା, ସୁରସୁ-ନ୍ଦରୀ-ଚରିଅଂ, କାଳକାଚାର୍ଯ୍ୟ କଥାନକ, ଭୁବନ ସୁନ୍ଦରୀ, ସିରିସିରିବାଲ-କହା, ନମ୍ମୟାସୁନ୍ଦରୀ କହା'।

୪) **ଚରିତ ସାହିତ୍ୟ**—ପଉମ ଚରିୟ, ବସୁଦେବ ହିଣ୍ଡୀ, ଶଲକା ପୁରୁଷ ଚରିୟ, ସୁପାସ୍‌ସନାହ ଚରିୟ, ମହାବୀର ଚରିତ, ସୁମତିନାଥ-ଚରିତ, କୁମାରପାଳ ଚରିତ ଇତ୍ୟାଦି । ( ଚରିତ କାବ୍ୟ ଦ୍ରଷ୍ଟବ୍ୟ )

## ଉପଦେଶ - କଥା - ସାହିତ୍ୟ

### କୁବଲୟମାଳା କଥା

ଏହାର ରଚୟିତା ଉଦ୍ୟୋତନ ସୂରି । ସେ ୭୭୯ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥ ରଚନା କରିଥିଲେ । ଏହା କାବ୍ୟ ଶୈଳୀରେ ଲିଖିତ ପ୍ରାକୃତ କଥା ସାହିତ୍ୟର ଏକ ଅନୁପମ ସୃଷ୍ଟି । ଏହାର ଭାଷା ଗଦ୍ୟ-ପଦ୍ୟ ମିଶ୍ରିତ ମହାରାଷ୍ଟ୍ରୀ ପ୍ରାକୃତ । ଏଥିରେ କେତେକ ସ୍ଥଳରେ ପୈଶାଚୀ, ଅପଭ୍ରଂଶ ଓ ସଂସ୍କୃତ ମଧ୍ୟ ବ୍ୟବହୃତ । ରଚନା ଶୈଳୀରେ କାଦମ୍ବରୀ, ଦମୟନ୍ତୀ କଥା ଓ ସମରାଇଚକହାର ପ୍ରଭାବ ଦେଖାଯାଏ । କ୍ରୋଧ, ମାନ, ମାୟା, ଲୋଭ ଓ ମୋହ ଇତ୍ୟାଦିର ପରିଣାମ ଦେଖାଇବା ପାଇଁ ସୁନ୍ଦର କଥାମାନ ଏଥିରେ ସନ୍ନିବେଶିତ । ରଚୟିତା ଉଦ୍ୟୋତନ ସୂରି ହରିଭଦ୍ର ଓ ବୀରଭଦ୍ରଙ୍କ ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ । ଭାଷା-

ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହାର ଆବଶ୍ୟକତା ଅତ୍ୟନ୍ତ ଗୁରୁତ୍ୱ-ପୂର୍ଣ୍ଣ । ଏହି ବିଷୟ କୁବଲୟମାଳାର ଶେଷରେ ବର୍ଣ୍ଣିତ ।†

ମଧ୍ୟ ଦେଶରେ ବିନୀତା ନାମକ ନଗରୀରେ ଥିବା ଦୋକାନମାନଙ୍କରେ କୁଙ୍କୁମ, କର୍ପୂର, ଅଳେଇଚ, ଲବଙ୍ଗ, ସୁନା, ରୁପା, ଶଙ୍ଖ, ଗୁମର, ଶଙ୍ଖ ତଥା ଅନାଦି ପ୍ରକାରର ଔଷଧ ଏବଂ ଚନ୍ଦନ ପ୍ରଭୃତି ବିଷୟ ହେଉଥିଲା । ସେତେବେଳେ ବନାରସର ଯେଥେଷ୍ଟ ବିଶେଷତ୍ୱ ଥିଲା । ସେଠାଁଲୋକ ସର୍ବଦା ବିଫଳଗାମୀ ହୁଏ ଯେ ସେଠାକୁ ଯାଇ ଜୁଆ ଖେଳ, ଚୋରି କରି କମ୍ବା ଠକାମି କରି ଅର୍ଥ ଉପାର୍ଜନ କରୁଥିଲେ । ସେହିପରି ଦକ୍ଷିଣାପଥର ପ୍ରତିଷ୍ଠାନ ନାମକ ନଗର ଯାହା ଧନଧାନ୍ୟ ଏବଂ ରତ୍ନାଦିରେ ପରିପୂର୍ଣ୍ଣ ତା'ର ବିସ୍ତୃତ ବର୍ଣ୍ଣନା ଏହି ଗ୍ରନ୍ଥରେ ରହିଛି ।

---

† "It's importance from the tinguistic point has been professed by the author himself at the end of the work where he savs that those who know the vernacular languages, their characteristics, their root etc. should read the Kuvalayamala."

"ଜୋ ଜାଣଇ ଦେସୀଓ ଭାସାଓ ଲକ୍ଖଣାଇ ଧାଉ ଚ ବୟୁରଣୟୁ ଗାହା ଣେୟୁମ କୁବଲୟୁମାଲମପିସୋପଢଉ ।"

(ଅର୍ଥାତ୍, ଯେଉଁମାନେ ଦେଶୀୟ ଭାଷା ଜାଣନ୍ତି ସେମାନଙ୍କର ଲକ୍ଷଣ, ଧାତୁ ଇତ୍ୟାଦି ଜାଣିବା ନିମିତ୍ତ କୁବଲୟମାଳା ପାଠ କରିବା ଉଚିତ । )

[ ଦ୍ରଷ୍ଟବ୍ୟ—ଗ୍ରି: ଆର୍. ଏସ୍— Inquiries into tbe spoken languages of India 27 ପୃ ]

ଉଦ୍ୟୋତନସୂରିଙ୍କ ରଚିତ କୁବଲୟମାଳା ପ୍ରାକୃତ ଗ୍ରନ୍ଥରୁ ଜାଣାଯାଏ ଯେ ସେ ସମୟରେ ...

ଉତ୍ତରଗ୍ରନ୍ଥର ଉଲ୍ଲିଖିତ ନଗର ଯାହା ଧର୍ମଚକ୍ର ଦ୍ୱାରା ଶୋଭିତ ଥିଲା ତାର ମଧ୍ୟ ବର୍ଣ୍ଣନା ରହିଛି । ଏହି ପ୍ରସଙ୍ଗରେ ରାଜାଙ୍କର ସାଧାରଣ ପ୍ରଜାଙ୍କର ସେବା ପରାୟଣତା ଦ୍ରଷ୍ଟବ୍ୟ ।

ନଗରର ସ୍ତ୍ରୀମାନେ ମାଠିଆରେ ପାଣି ନେଉଥିବାବେଳେ କୁବଳୟମାଳାଙ୍କ ସୌନ୍ଦର୍ଯ୍ୟ ଚର୍ଚ୍ଚା କରୁଥିଲେ । ଅଯୋଧ୍ୟା ନିବାସୀ କାର୍ପଟିକ ବେଶଧାରୀ ରାଜକୁମାର କୁବଳୟଚନ୍ଦ୍ର କୁବଳୟମାଳାଙ୍କୁ ଖୋଜି ଖୋଜି ବିଜୟା ନଗରୀରେ ପହଞ୍ଚିଲେ । କୁବଳୟମାଳାଙ୍କ ଖବର ଜାଣିବା ପାଇଁ ସେ ଛାତ୍ରମାନଙ୍କର ମଠରେ 'ପ୍ରବେଶ କଲେ । ଏହି ମଠରେ ଲାଡ଼, କର୍ଣ୍ଣାଡ଼, ମାଳବ, କନୌଜ, ଗୋଲ୍ଲ, ମରଠ୍, ସୂରଠ୍, ଢ଼କ, ଶ୍ରୀକଣ୍ଠ ଏବଂ ସିଂଧୁଦେଶର ଛାତ୍ରମାନେ ରହୁଥିଲେ । ସେମାନେ ଧନୁର୍ବିଦ୍ୟା, ଢ଼ାଲ, ଶର ଇତ୍ୟାଦି ଚାଳନା ତଥା ଲକୁଟି ଯୁଦ୍ଧ, ବାହୁ ଯୁଦ୍ଧ, ମଲ୍ଲ ଯୁଦ୍ଧ, ଆଲେଖ୍ୟ ଗୀତ ବାଦନ, ଭାଣ ଇତ୍ୟାଦିରେ ବିଦ୍ୟାର୍ଜ୍ଜନ କରୁଥିଲେ । ବ୍ୟାଖ୍ୟାନମଣ୍ଡପମାନଙ୍କରେ ବ୍ୟାକରଣ, ବୌଦ୍ଧ ଦର୍ଶନ ଓ ଅନ୍ୟାନ୍ୟ ଦର୍ଶନ ଉପରେ ବକ୍ତୃତା ମାନ ହେଉଥିଲା । ଏଠାରେ ଉପାଧ୍ୟାୟମାନେ ଅତ୍ୟନ୍ତ କୁଶଳ ଏବଂ ନିମିତ୍ତ, ମନ୍ତ୍ର, ଯୋଗ, ଅଂଜନ, ଧାତୁବାଦ, ଯକ୍ଷିଣୀ ସିଦ୍ଧି, ଗାରୁଡ଼, ଜ୍ୟୋତିଷ, ସ୍ୱପ୍ନ, ରସ, ଗନ୍ଧ, ରସାୟନ, ଛନ୍ଦ, ନିରୁକ୍ତ ଇତ୍ୟାଦି ଶାସ୍ତ୍ର ପଢ଼ାଉଥିଲେ ।

ବିଦ୍ୟା, ବିଜ୍ଞାନ ଏବଂ ବିନୟ ରହିତ ଏହି ଛାତ୍ରମାନଙ୍କର ଅସମ୍ବଦ୍ଧ ପରସ୍ପରଅନ୍ତର-ପ୍ରଳାପ ଶୁଣି କୁମାର କୁବଳୟଚନ୍ଦ୍ରଙ୍କୁ ଖରାପ ଲାଗିଲା । ଏହାପରେ କୁବଳୟମାଳାଙ୍କ ଚର୍ଚ୍ଚା ହେବାକୁ ଲାଗିଲା ।

ପ୍ରଥମ ଛାତ୍ର—କଣ ତୁମେ ରାଜକୁଳ କଥା ଜାଣ ? ସମସ୍ୟା ବ୍ୟାଘ୍ର ସ୍ୱାମୀଙ୍କୁ ପଚାରିବେ । 'ହେ ବ୍ୟାଘ୍ର ସ୍ୱାମୀ ରାଜକୁଳର ଖବର କ'ଣ କୁହନ୍ତୁ ।'

ବ୍ୟାଘ୍ର ସ୍ୱାମୀ—ଯୁବୁଷଦେବଷ୍ଟି କୁବଳୟମାଳ ସମସ୍ୟା ପୂର୍ତ୍ତି ପାଇଁ ଗାଥାର ଏକ ଚରଣ ରଖିଛୁ ।

ଜଣେ ଛାତ୍ର ହଠାତ୍ ଉଠି କହିଲା—ଯଦି ଏଥିରେ ପାଣ୍ଡିତ୍ୟର ପ୍ରଶ୍ନ ଅଛି ତାହାହେଲେ କୁବଳୟମାଳ ମୋତେ ବିବାହ କରିବା ଉଚିତ ।

ଦ୍ୱିତୀୟ ଛାତ୍ର—ଆରେ ତୋର ବା କ'ଣ ପାଣ୍ଡିତ୍ୟ ଅଛି ।

ପ୍ରଥମ ଜଣକ—ମୁଁ ଷଡ଼ାଙ୍ଗ ବେଦ ଅଧ୍ୟୟନ କରିଛି ଓ ତ୍ରିଗୁଣ ମନ୍ତ୍ର ପଢ଼ିଛି ।

ଦ୍ୱିତୀୟ ଛାତ୍ର—ଆରେ ତ୍ରିଗୁଣ ମନ୍ତ୍ରରେ ବିବାହ ହୁଏ ନାହିଁ । ଯେ ଠିକ୍ ଭାବରେ ଚରଣ ପୂର୍ତ୍ତି କରିଦେବ କେବଳ ସେଇ ତାହା ସାଂଗରେ ବିବାହ ହେବ ।

ଛାତ୍ରମାନେ କହିଲେ—ଭଟ୍ଟଯଜ୍ଞସ୍ୱାମି, ତୁମେ ସ୍ୱ ଗାଥା କୁହ ।

ଭଟ୍ଟ—ଶୁଣ କହି ସେ ଏକ ଶ୍ଳୋକ ପାଠ କଲେ । ଏହାଶୁଣି ଛାତ୍ରମାନେ କହିଲେ—ଆମେ ଶ୍ଳୋକ ବୁଝୁନା ଆମକୁ ଗାଥା ପଢ଼ି ଶୁଣାଅ ।

ଭଟ୍ଟ—ଆଛ୍ଛ —
ତମ୍ବୋଲ-ରଇଅ-ରାଓ ଅହରେ । ଦୃଷ୍ଟ୍ରା କାମିଣ-ଜନସ୍ ।
ଅମ୍ହଂଚାୟ୍ଯ ଖୁଜଇ ମଣୋ ଦାରିଦ୍ର-ଗୁରୁ ନବାରେଇ ॥

ଏହାଶୁଣି ଛାତ୍ରମାନେ କହିବାକୁ ଲାଗିଲେ ବାଃ ବାଃ ଭଟ୍ଟ-ସ୍ୱାମୀଙ୍କର ବିଦଗ୍ଧ ପାଣ୍ଡିତ୍ୟ ଅଛି । ହେ ଅତ୍ୟନ୍ତ ବାଂଛାପୂର୍ଣ୍ଣ ଗାଥା ପାଠ କଲେ । ଏହାଙ୍କ ସହ କୁବଲୟମାଳାଙ୍କର ନିଶ୍ଚୟ ବିବାହ ହେବ ।

ଏହି ଗ୍ରନ୍ଥରେ ୧୮ଟି ଦେଶୀ ଭାଷାର ଉଲ୍ଲେଖ ରହିଛି । ଗୋଲ୍ଲ, ମଗଧ, ଟକ୍କ, ସିଂଧୁଦେଶ ଇତ୍ୟାଦିର ଲୋକମାନଙ୍କ ରୀତିନୀତି, ଆଚାର-ବ୍ୟବହାର ଓ ବେଶଭୂଷା ସମ୍ବନ୍ଧୀୟ ସୁନ୍ଦର ବର୍ଣ୍ଣନ ମଧ୍ଯ ରହିଛି । ଅଧିକଂତୁ ପ୍ରତ୍ୟେକ ଦେଶର ଭାଷାର ଦୃଷ୍ଟାନ୍ତ ରହିଛି । ଯଥା :—ଗୋଲ୍ଲବାସୀ 'ଅଡ୍ଡେ'; ମଗଧରେ 'ଏ,ଗେ, ଲେ', ଅନ୍ତର୍ବେଦୀ ପ୍ରଦେଶରେ 'କତୋ, କମ୍ମୋ'; ସିଂଧୁ ଦେଶରେ 'ଚଉଡ଼ୟ', ଟକ୍‌ରେ 'ଏହଂତେହଂ', ଲାଟ୍ ଦେଶରେ 'ଅମ୍ହଂ, କାଉଂ, ତୁମ୍ହେଂ' ଇତ୍ୟାଦିର ପ୍ରୟୋଗ ମିଳେ ।

କୁମାର କୁବଳୟଚନ୍ଦ୍ର କୁବଳୟମାଳାଙ୍କ ଦ୍ୱାରା ଘୋଷିତ ପଦ ପୂର୍ତ୍ତି କରିଦେବାରୁ କୁବଳୟମାଳା କୁମାରଙ୍କ ଗଳାରେ ମାଳା ଅର୍ପଣ କଲେ । ତତ୍‌ପରେ ଶୁଭନକ୍ଷତ୍ର ଶୁଭ ମୁହୂର୍ତ୍ତରେ ଖୁବ୍ ଆଡ଼ମ୍ବର ସହକାରେ ବିବାହ ଉତ୍ସବ ସମାପ୍ତ ହେଲା । ବାସଗୃହ ସଜାଗଲା, କୁବଳୟମାଳାର ସଖିମାନେ ତାକୁ ବାସ ଗୃହରେ ଛାଡ଼ିଦେଲେ । ସେତେବେଳେ କୁବଳୟମାଳା ସେମାନଙ୍କୁ ସମ୍ବୋଧନ କରି କହିଲେ—ହେ ପ୍ରିୟ ସଖିଗଣ ମୋତେ ବନହରିଣୀ ମଣି ଏଠି

ଏକାକୀ ଛାଡ଼ି ଯାଆନ୍ତି । ସଖିମାନେ କହିଲେ—ହେ ସଖି ଆମକୁ ମଧ୍ୟ ଏପରି କୌଣସି ପ୍ରାପ୍ତିର ସୌଭାଗ୍ୟ ମିଳୁ ।

କୁବଲୟମାଳା—ହେ ପ୍ରିୟ ସଖିଗଣ ମୋତେ ଜ୍ୱର ହୋଇ ଗଲାଣି । ମୋର ଶରୀର ରୋମାଞ୍ଚିତ ଓ କମ୍ପିତ ମୋତେ ଛାଡ଼ି ଚାଲିଯାଅନ୍ତ ।

ସଖିମାନେ—ତୁମର ପତି ହିଁ ବୈଦ୍ୟ । ସେ ତୁମର ଜ୍ୱର ଜନିତ ପୀଡ଼ା ଦୂର କରିବେ । ତତ୍ପରେ କୁବଲଚନ୍ଦ୍ର ଓ କୁବଲୟମାଳା ମଧ୍ୟରେ ପ୍ରେମପୂର୍ଣ୍ଣ ବିନୋଦ ଓ ଉକ୍ତି ପ୍ରତ୍ୟୁକ୍ତି ଆଦିର ସରସ ବର୍ଣ୍ଣନା ରହିଛି ।

ସଂସ୍କୃତ, ପ୍ରାକୃତ, ଶୌରସେନୀ, ଅପଭ୍ରଂଶ, ପୈଶାଚୀ, ମାଗଧୀ, ରାକ୍ଷସୀ ଏବଂ ମିଶ୍ରଭାଷାମାନଙ୍କର ଉଲ୍ଲେଖ ରହିଛି ।

## ଉବଏସ ମାଲା

ଧର୍ମଦାସଗଣି କୃତ 'ଉପଦେଶମାଳା' ଏକ ପ୍ରସିଦ୍ଧ ଓ ସର୍ବଜନ ଆଦୃତ ଗ୍ରନ୍ଥ । ଏଥିରେ ସାଧୁ ଓ ଗୃହସ୍ଥମାନଙ୍କ ନିମିତ୍ତ ଅନେକ ନୀତିଶିକ୍ଷା, ଜ୍ଞାନ-ଧ୍ୟାନ, ତପ-ସଂଯମ, ଦାନ-ଦୟା-ଅହିଂସା, ବିନୟ-ଶାଳୀନତା, ବିବେକ, ଅପରିଗ୍ରହ, ଅନାସକ୍ତି ଆଦି ସଦ୍‌ଗୁଣ ସମ୍ବନ୍ଧୀୟ କେତେକ ଉପଦେଶ ରହିଛି । ଜୈନ ସଂଘମାନଙ୍କରେ ଦୀକ୍ଷିତ ଭିକ୍ଷୁ-ଭିକ୍ଷୁଣୀମାନେ ଏଗୁଡ଼ିକୁ କଣ୍ଠସ୍ଥ କରୁଥିଲେ । ମୂଳ ଗାଥାଗୁଡ଼ିକର ସଂଖ୍ୟା ୫୪୧ । ବିଦ୍ୱାନମାନଙ୍କ ମତରେ ଏହାର ରଚନା କାଳ ୪ର୍ଥ ଓ ୫ମ ଶତାବ୍ଦୀ ମଧ୍ୟବର୍ତ୍ତୀ । ଏହାର ଅନୁକରଣରେ ହରିଭଦ୍ର ସୂରି 'ଉପଦେଶପଦ ପ୍ରକରଣ' ନାମକ ଏକ ଧର୍ମୋପଦେଶ ଗ୍ରନ୍ଥ ରଚନା କରିଥିଲେ ।

## କୁମାରପଲ ପଡ଼ିବୋହ (କୁମାରପାଳ ପ୍ରତିବୋଧ)

ସୋମପ୍ରଭସୂରି ୧୧୮୪ ଖ୍ରୀଷ୍ଟାବ୍ଦରେ ଏହି କଥା ଗ୍ରନ୍ଥଟି ରଚନା କରିଥିଲେ । ଏହାର ଭାଷା ଜୈନ ମହାରାଷ୍ଟ୍ରୀ । ସଂସ୍କୃତ ଓ ଅପଭ୍ରଂଶର ପ୍ରଭାବ ମଧ୍ୟ ଏଥିରେ ଦେଖାଯାଏ । ଏଥିରେ ସନ୍ନିବିଷ୍ଟ ପାଞ୍ଚୋଟି ପ୍ରସ୍ତାବ ମଧ୍ୟରେ ପଞ୍ଚମ ପ୍ରସ୍ତାବଟି ଅପଭ୍ରଂଶରେ ଲିଖିତ । ଆଚାର୍ଯ୍ୟ ହେମଚନ୍ଦ୍ରଙ୍କ ଉପଦେଶରେ ପ୍ରଭାବିତ ହୋଇ ଚାଲୁକ୍ୟରାଜା କୁମାରପାଳ ଜୈନଧର୍ମ ଗ୍ରହଣ କରିଥିଲେ । ଏହି ଗ୍ରନ୍ଥରେ ମୋଟ ୫୪ଟି କାହାଣୀ ରହିଛି । ପ୍ରଥମ ପ୍ରସ୍ତାବରେ ମୂଳଦେବ କଥା ଓ ନଳ-ଦମୟନ୍ତୀ କଥା ସୁପ୍ରସିଦ୍ଧ । ନଳ ପରି ନିଷ୍ଠୁର, ନିର୍ଦ୍ଦୟ ଓ କାପୁରୁଷ କେହି ହୋଇ ନପାରେ । କାରଣ ସେ ମହାସତୀ ଦମୟନ୍ତୀଙ୍କୁ ଜଙ୍ଗଲରେ ଶୋଇଥିବା ଅବସ୍ଥାରେ ଛାଡ଼ି ଚାଲି ଯାଇଥିଲେ । ଅଶୋକ କଥାରେ ଧନୀମାନେ କିପରି ନିଜ ନିଜ ପୁଅମାନଙ୍କୁ ଚରିତ୍ରବାନ ରଖିବାପାଇଁ ବେଶ୍ୟାମାନଙ୍କ ସ୍ୱଭାବ ସମ୍ବନ୍ଧରେ ଭଲଭାବରେ ପରିଚିତ କରାଇ କହନ୍ତି— 'ହୃଦୟକୁ ମରିଚ ପରି ସଂକୁଚିତ କର, ଯାହାଦ୍ୱାରା ଇନ୍ଦ୍ରିୟ ବିହାର ବେଳ ହେବ ।'

ପାପଶିଖ କଥାରେ କୁହାଯାଇଛି ଯେ ସାଧକମାନେ ବିଦ୍ୟା ସିଦ୍ଧି ପାଇଁ ଶ୍ମଶାନରେ କନ୍ୟା ବଧ କରୁଥିଲେ । ଗୁରୁସେବାର ଉଦାହରଣରେ ରାଜା ପ୍ରଦେଶୀ ଓ ଲକ୍ଷ୍ମୀର କଥା ମାନ ଦ୍ରଷ୍ଟବ୍ୟ । ସମ୍ପ୍ରତି କଥାରେ କିପରି ରାଜା ସମ୍ପ୍ରତି ଆନ୍ଧ୍ର, ଦ୍ରାବିଡ଼ାଦି ଅନାର୍ଯ୍ୟ ଦେଶମାନଙ୍କୁ ଯୋଦ୍ଧା ପଠାଇ ଜୈନ ଧର୍ମ ପ୍ରଚାର କରିଥିଲେ ତାହାର ବିବରଣୀ ଦେଖିବାକୁ ମିଳେ । ରାଜାକୁମାର ପାଳ ସ୍ୱୀୟ ଗୁରୁ ହେମଚନ୍ଦ୍ରଙ୍କ ସହ ଶତ୍ରୁଞ୍ଜୟ, ପାଲିଣନା, ଗିରନାରାଦି ତୀର୍ଥସ୍ଥାନ ଭ୍ରମଣ କରିଥିଲେ ସେ ବିଷୟ ମଧ୍ୟ ବର୍ଣ୍ଣିତ ।

ଶୀଳବତୀ କଥା ଅତ୍ୟନ୍ତ ମନୋମୁଗ୍ଧକର । ଥରେ ଅଧରାତିରେ ଅଜିତସେନଙ୍କ ପତ୍ନୀ ଶୀଳବତୀ ମାଠିଆଟିଏ ନେଇ ଘରୁ ବାହାରିଗଲା । ବହୁତ ସମୟ ବିତାଇ ସେ ଘରକୁ ଫେରିଲା । ତାର ଶ୍ୱଶୁର ଏ ଖବର ପାଇ ପୁତ୍ରବଧୂର ଚରିତ୍ର ସମ୍ବନ୍ଧରେ ଶଙ୍କା କରି ତାକୁ ଘରୁ ବାହାର କରିବାକୁ ନିଶ୍ଚୟ କରି ରଥରେ ବସାଇ ଶୀଳବତୀର ମା ଘରକୁ ଯାତ୍ରା କଲା । ରାସ୍ତାରେ ଗୋଟିଏ ନଦୀ ପଡ଼ିଲା । ଶ୍ୱଶୁର ଶୀଳବତୀକୁ ଜୋତା ବାହାର କରି ନଦୀ ପାରି ହେବାକୁ କହିଲା । କିନ୍ତୁ ଶୀଳବତୀ ଜୋତା ଖୋଲିବାକୁ ନାରାଜ । ଶ୍ୱଶୁର ଭାବିଲା ସେ ବୋହୂଟି ଖୁବ୍ ଅବାଧ୍ୟ । ତାପରେ ସେମାନେ ଏକ ଭଲ ଫଳିଥିବା ମୁଗ କିଆରି ଦେଖିଲେ । ଶ୍ୱଶୁର କହିଲେ—'ଦେଖ ଖେତଟି କେତେ ସୁନ୍ଦର ଫଳିଛି । ଖେତର ମାଲିକ ଏହାକୁ ଭୋଗ କରିବ ।' ଶୀଳବତୀ କହିଲେ 'କଥାଟି ସତ, କିନ୍ତୁ ଏଇଟା ଯଦି ଆଉ କିଏ ଖାଇବାର ସୁଯୋଗ ନପାଏ ତେବେ ଯାଇଁ ମାଲିକ ଭୋଗ କରିବ ।' ଶ୍ୱଶୁର ଭାବିଲେ ବୋହୂ କଣ ଏଣୁତେଣୁ କହୁଛି । ତାପରେ ସେ ଦୁହେଁ ଗୋଟିଏ ସୁନ୍ଦର ନଗରରେ ପହଞ୍ଚିଲେ । ସେଠିକାର ଲୋକମାନଙ୍କୁ ଆନନ୍ଦମଗ୍ନ ଦେଖି ଶ୍ୱଶୁର କହିଲେ—'ଏ ନଗରଟି କେତେ ସୁନ୍ଦର' । ଶୀଳବତୀ ଉତ୍ତରରେ କହିଲେ—'ଠିକ୍ କଥା, ଯଦି କିଏ ଏଇଟାକୁ ଧ୍ୱଂସ ନ କରେ ।' ଆଉ କିଛି ବାଟ ଯିବା ପରେ ଜଣେ କୁଳ-ପୁତ୍ରକୁ ଦେଖି ଶ୍ୱଶୁର କହିଲେ—'ଏ ଜଣକ କେତେ ବଡ଼ ଶୂର-ବୀର' । ଶୀଳବତୀ କହିଲେ—'ଯଦି ଏଇ ଜଣକ ପିଟା (ମାଡ଼) ନଥାଏ ତାହାହେଲେ ସେ ଶୂରବୀର' । ଶ୍ୱଶୁର ଆଉ କିଛି ବାଟ ଯିବାପରେ ଗୋଟିଏ ବରଗଛ ତଳେ ବିଶ୍ରାମ କଲେ । ଶୀଳବତୀ ଦୂରରେ ବସି ରହିଲା । ଶ୍ୱଶୁର ଭାବିଲେ ସେ ଏହି ସ୍ତ୍ରୀଟି

ସବୁବେଳେ ଓଲଟା କାମ କରୁଛି । ବିଶ୍ରାମ ସାରି ସେମାନେ ସେଠାରୁ କିଛି ଦୂର ଆଗେଇଲେ । ଶେଷରେ ସେମାନେ ଗୋଟିଏ ଗାଁରେ ପହଞ୍ଚିଲେ । ସେଠି ଶୀଳବତୀର ମାମୁ ଶଶୁରଙ୍କୁ ନିମନ୍ତ୍ରଣ କଲେ । ଭୋଜନ ଶେଷରେ ଶଶୁର ରଥ ଉପରେ ବିଶ୍ରାମ କଲେ ଓ ଶୀଳବତୀ ରଥ ଛାଇରେ ବସି ରହିଲା । ଏହି ସମୟରେ ବାବୁଲ ଗଛରେ ବସିଥିବା କୁଆଟି ବାରମ୍ବାର କା' କା' କରୁଥିବା ଦେଖି ଶୀଳବତୀ କହିଲା—'ଅରେ ତୁ କା' କା' କରି ଥକବୁନି ?' ତାପରେ ସେ ଗୋଟିଏ ଗାଥା ପଢ଼ିଲା—

ଏକେ ଦୁନ୍ନୟ ଜେ ଭୟା ତେଣ୍ଣଂ ନାହରିସ୍ସ ଘରସ୍ସ ।
ଜାଇ ଦୁନ୍ନୟ ଜଇ କରଉଂ ତୋ ନ ମିଳଉଂ ପିଅରସ୍ସ ॥

ଅର୍ଥାତ୍, ଗୋଟିଏ ଦୁର୍ନୀତି କରି ମୋତେ ଘରୁ ବାହାରିବାକୁ ପଡ଼ିଲା । ଆଉ ଗୋଟିଏ ଦୁର୍ନୀତି ଯଦି ମୁଁ କରିବି ମୋର ପିତା-ମାତାଙ୍କ ସହ ମିଶିପାରିବି ନାହିଁ । ଏହି ଗାଥାଟି ଶୁଣି ଶ୍ୱଶୁର ଶୀଳବତୀର ଉଦ୍ଦେଶ୍ୟ ଜାଣିବାକୁ ଚାହିଁଲେ । ଶୀଳବତୀ କହିଲା—'ମୋର ଗୁଣହିଁ ମୋର ଶତ୍ରୁ ହେଲା, କାରଣ, ମୁଁ ପକ୍ଷୀମାନଙ୍କର ଭାଷା ବୁଝିପାରି ମୋର ଆଜି ଏ ଦୁର୍ଦ୍ଦଶା । ଅଧରାତ୍ରରେ ଶୃଗାଳର ଭାଷା ବୁଝି ମୁଁ ଗୋଟିଏ ମାଠିଆ ଧରି ଗୋଟିଏ ମଡ଼ା ଦେହରୁ ବହୁମୂଲ୍ୟ ଅଳଙ୍କାର ଆଣିବାକୁ ଗଲି । ନଦୀରୁ ମଡ଼ାକୁ ଉଠାଇ ସମସ୍ତ ଅଳଙ୍କାର ମାଠିଆରେ ଭରି ଆଣିଲି ଓ ମଡ଼ାଟିକୁ ଶୃଗାଳ ଆଗରେ ପକାଇଦେଲି । ଏହିପରି ଏକ ଦୁର୍ନୀତି ହେତୁ ମୁଁ ବର୍ତ୍ତମାନ ଏହି ଦୁରବସ୍ଥା ଭୋଗୁଛି । ଏବେ ଏହି କୁଆଟି କହୁଛି ଯେ ସେ ବାବୁଲ ଗଛ ମୂଳରେ ବହୁ ସୁନା ପୋତା ହୋଇଛି । ଶ୍ୱଶୁର ଏହା ଶୁଣି ଅତ୍ୟନ୍ତ ଖୁସି ହେଲେ ଓ ଗଛତଳେ ଥିବା ପୋତାଧନର ସନ୍ଧାନ ନେଲେ । ସେ ସୁନାରୂପା ସେଠାରୁ ପାଇ ବହୂକୁ ପ୍ରଶଂସା କରି

ରଥରେ ବସାଇ ଘରକୁ ଫେରାଇ ଆଣିଲେ । ରାସ୍ତାରେ ସେ ପଚାରିଲେ— 'ଶୀଳବତୀ ତୁମେ ବଟଗଛ ମୂଳେ କାହିଁକି ବସିଲନି ?'

ଶୀଳବତୀ—ଗଛ ମୂଳରେ ସାପ ଭୟ ଥାଏ ଓ ଗଛ ଉପରୁ ପକ୍ଷୀମାନେ ମଳତ୍ୟାଗ କରନ୍ତି । ଏଣୁ ଦୂରରେ ବସିବା ହିଁ ଭଲ ।

ଶ୍ୱଶୁର —କୁଳପୁତ୍ରକୁ ଦେଖି ତୁମେ କାହିଁକି ସେମିତି କହିଲ ?

ଶୀଳବତୀ—'ଶୂରବୀର ମାତ୍ର ଷାଆନ୍ତି କିନ୍ତୁ ପ୍ରକୃତ ଶୂର ବୀର ଯେ ସେ ପ୍ରଥମେ ପ୍ରହାର କରେ ନାହିଁ ।

ନଗର ବିଷୟ ଶଶୁର ପଚାରିବା ଯୋଗୁଁ ଶୀଳବତୀ କହିଲେ ଯେ ଯେଉଁ ନଗରର ଲୋକେ ଆଗନ୍ତୁକମାନଙ୍କ ସ୍ୱାଗତ କରନ୍ତି ନାହିଁ ତାକୁ ନଗର କୁହାଯିବା ଉଚିତ ନୁହଁ । ଖେତ ସମ୍ବନ୍ଧରେ ଶୀଳବତୀ କହିଲ ଯେ ବେପାରରେ ପଦାର୍ଥର ମୂଲ୍ୟ ବଢିଲେ ତ ଯଦି ଖେତମାଲିକ ପଦାର୍ଥର ଉପଭୋଗ କରେ ତାହାହେଲେ କୁହାଯିବ ସେ ପଦାର୍ଥର ଉପଭୋଗ କରିଚାଲି । ସେହିପରି ନଦୀପାର କରିବାବେଳେ ନଦରେ ଥିବା ଜୀବ-ଜନ୍ତୁ ଓ କଣ୍ଟାର ଭୟ ଥାଏ ଏଣୁ ଜୋତା ଉତାରିବା ଉଚିତ ନୁହଁ । ଶ୍ୱଶୁର ଶୀଳବତୀ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇ ତାକୁ ଘରର ସ୍ୱାମିନୀ କରିଦେଲେ ।

ଶୀଳବତୀଙ୍କ ମହତ୍ତ୍ୱ ଚରିତ୍ର ସମ୍ବନ୍ଧରେ ଆହୁରି ଗୋଟିଏ କଥା ଅତ୍ୟନ୍ତ ମନୋମୁଗ୍ଧକର । ଦ୍ରଷ୍ଟବ୍ୟ କଥାସରିତ ସାଗର*

ତାର କଥାରେ କୌଣସି ବ୍ରାହ୍ମଣର ନିଜ କନ୍ୟାକୁ ମୁଣ୍ଡରେ ରଖି ବଜାରରେ ଚାଲିବା ବିଷୟ ବର୍ଣ୍ଣିତ ।

---

* ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ଦ୍ୱାରା ଅନୁଦିତ
  କଥାସରିତ ସାଗର—ପ୍ରକାଶକ ଦାସବ୍ରଦର୍ସ : ବ୍ରହ୍ମପୁର ।

ଡକ୍ଟର ନେମିଚନ୍ଦ୍ର ଶାସ୍ତ୍ରୀ ଏହି ଗ୍ରନ୍ଥର ସାମ୍ୟକ ଆଲୋଚନା ପୂର୍ବକ ନିମ୍ନଲିଖିତ ଗୁଣମାନ ନିର୍ଦ୍ଧାରଣ କରିଛନ୍ତି :*

୧ : ଜିଜ୍ଞାସା ଓ କୌତୂହଳର ସୁନ୍ଦର ନିର୍ବାହ ।

୨ : ସୁନ୍ଦର ଏବଂ ସରସ ସଂଳାପଗୁଡ଼ିକର ସଂଯୋଜନା ।

୩ : ଲଘୁକଥାଗୁଡ଼ିକ ମଧ୍ୟରେ ଆଦର୍ଶ ଚରିତ୍ର ସ୍ଥାପନା ।

୪ : ଉପଦେଶ ବହୁଳତା ହେତୁ କଥାରସର ଅଭାବ; କିନ୍ତୁ ସାଂସ୍କୃତିକ ସାମଗ୍ରୀମାନଙ୍କର ପ୍ରାଚୁର୍ଯ୍ୟ ।

୫ : ଲୋକକଥାଗୁଡ଼ିକରେ ଧାର୍ମିକ ବ୍ରତମାନଙ୍କର ମହତ୍ତ୍ୱ ସଂଯୋଗ କରି ସେଗୁଡ଼ିକୁ ନୂତନ ରୂପରେ ପ୍ରସ୍ତୁତି କରିବା ।

୬ : ଗଦ୍ୟ-ପଦ୍ୟର ପ୍ରୟୋଗ ଏବଂ ପଦ୍ୟଗୁଡ଼ିକରେ ନୀତି ଓ ଉପଦେଶାଦିର ସମାବେଶ ।

ପଞ୍ଚମ ପ୍ରସ୍ତାବଟିର କଥାସାର ଲେଖକଙ୍କ 'ଅପଭ୍ରଂଶ ଭାଷା ଓ ସାହିତ୍ୟ' (ଅପ୍ରକାଶିତ) ଗ୍ରନ୍ଥରେ ସନ୍ନିବିଷ୍ଟ ।—

## ଧର୍ମୋପଦେଶମାଳା ବିବରଣ :

ଏହା ଏକ ସଂଗ୍ରହ-ଗ୍ରନ୍ଥ ମାତ୍ର । ୧୫୬ଟି କଥାରେ ଧର୍ମ, ନୀତି, ଶୁଭାଶୁଭ-ଫଳ, ସଦ୍‌ଗୁଣ ମହିମା, ଦୁର୍ଗୁଣ ନିନ୍ଦା ଇତ୍ୟାଦି ଅନେକ ବିଷୟର ବର୍ଣ୍ଣନା ରହିଛି । ଉଦାହରଣ ସ୍ୱରୂପ ସଦାଚାରର ବ୍ୟାଖ୍ୟା ନିମିତ୍ତ ରାଜିମତୀ କଥା, ଭାବ ପାଇଁ ଇଳାପୁତ୍ର କଥା, ଭାଗ

* ପ୍ରା: ଭା: ଓର ସା: ଆଲୋଚନାତ୍ମକ ଇତିହାସ ପୃ: ୫୦୦-୫୦୧ ।

ଓ ଦ୍ୱେଷର ପରିଣାମ ବ୍ୟକ୍ତ କରିବା ନିମିତ୍ତ କ୍ରମଶଃ ବଣିକ୍ ତନୟ କଥା ତଥା ନାଗଦତ୍ତ କଥା, ଦାନର ମାହାତ୍ମ୍ୟ ବ୍ୟକ୍ତ କରିବାପାଇଁ ଶାଳିଭଦ୍ର କଥା ଉଲ୍ଲେଖଯୋଗ୍ୟ । ଏହାପରେ ଚାଣକ୍ୟ କଥା, ବ୍ରହ୍ମଦତ୍ତଚକ୍ରୀ କଥା, କେଶୀଗଣଧର କଥା ବହୁ ଧର୍ମୋପଦେଶରେ ଭରପୂର । ଏହି କଥାଗୁଡ଼ିକ ନିମିତ୍ତ ଜୀବନର ପ୍ରତ୍ୟେକ କ୍ଷେତ୍ରରୁ ପାତ୍ର ଅଣାଯାଇଛି । ଯଥା—ମହାପୁରୁଷ, ସମ୍ରାଟ, ସାମ୍ରାଜ୍ଞୀ, ରାଜକୁମାରୀ, ସାଧୁ, ସେଠ, ବଣିଆ, ମୂର୍ଖ, ଦୁର୍ଜନ, ଜୁଆଡ଼ି, ଶରାବୀ, ଆଦି ସବୁ ଢଙ୍ଗର ଲୋକଙ୍କୁ ପାତ୍ର ପାତ୍ରୀ ତଥା ନାୟକ ନାୟିକା ଭୂମିକାରେ ଉପସ୍ଥାପିତ କରାଯାଇଛି । ଚରିତ୍ର-ଚିତ୍ରଣ ବଡ଼ ସ୍ୱାଭାବିକ, ମନୋବୈଜ୍ଞାନିକ ଓ ସ୍ପଷ୍ଟ ଭାବରେ କରାଯାଇଛି । ଏତଦ୍‌ଭିନ୍ନ ଅନେକ ଦେଶ, ମନ୍ଦିର, ନଦନଦୀ, ସରୋବର, ଆଦିର ପ୍ରାକୃତିକ ଦୃଶ୍ୟ ବିଷଦ୍‌ଭାବେ ବର୍ଣ୍ଣିତ । ଶୃଙ୍ଗାର, ବୀର, କରୁଣ ଆଦି ରସ ଓ ବକ୍ରୋକ୍ତି, ବ୍ୟାଜୋକ୍ତି, ଅନ୍ୟୋକ୍ତି, ଦୃଷ୍ଟାନ୍ତ, ରୂପକ, ଉପମା ଆଦି ଅଳଙ୍କାରର ଅନେକ ଉଦାହରଣ ଏଥିରେ ମିଳେ । କେତେକ ସ୍ଥଳରେ ସାମାଜିକ ଓ ଐତିହାସିକ ମହତ୍ତ୍ୱ ସଂପନ୍ନ ସାମଗ୍ରୀର ଉଲ୍ଲେଖ ମଧ୍ୟ ରହିଛି ।

ଏହି ଗ୍ରନ୍ଥଟି ସାହିତ୍ୟିକ ଦୃଷ୍ଟି ଭଂଗୀରେ ବଡ଼ ମହତ୍ତ୍ୱପୂର୍ଣ୍ଣ । ଏହାର ଭାଷା ଗଦ୍ୟ-ପଦ୍ୟ ମିଶ୍ରିତ । ସଂକଳନକର୍ତ୍ତା ଓ କଥା ଲେଖକ ଜୟସିଂହ ସୂରି (କୃଷ୍ଣ ମୁନିଙ୍କ ଶିଷ୍ୟ) ଙ୍କୁ କେତେକ ସମାଲୋଚକ ମତ ଦିଅନ୍ତି ଓ ଏହାଙ୍କ ଗ୍ରନ୍ଥ ରଚନାର କାଳ ହେଉଛି ଖ୍ରୀ: ୮୫୮ ।

## ଅଣଧାର୍ମିକ

### ସମରାଇଚକହା

ସମରାଦିତ୍ୟ କଥାରେ ଉଜ୍ଜୟିନୀ ରାଜା ସମରାଦିତ୍ୟ ଏବଂ ପ୍ରତିନାୟକ ଅଗ୍ନିଶର୍ମାଙ୍କ ନ'ଟି ଜୀବନର କଥା ବର୍ଣ୍ଣିତ । ଏହି ଗ୍ରନ୍ଥ ପ୍ରଣେତା ହରିଭଦ୍ର ସୂରି ।

ରାଜକୁମାର ସମରାଦିତ୍ୟଙ୍କ ନାମ ପୂର୍ବଜନ୍ମରେ ଗୁଣସେନ ଥିଲା । ତାଙ୍କ ପୁରୋହିତ ଥିଲେ ଅଗ୍ନିଶର୍ମା । ସେ ଅତି କୁରୂପ ଥିବାରୁ ରାଜକୁମାର ତାଙ୍କୁ ଥଟ୍ଟା କରୁଥିଲେ ଓ ଗଧ ଉପରେ ବସାଇ ନଗର ସାରା ପରିକ୍ରମା କରାଉଥିଲେ । ଏଥିରେ ଅଗ୍ନିଶର୍ମା ଅତ୍ୟନ୍ତ ବିରକ୍ତ ହୋଇ ଦୀକ୍ଷା ଗ୍ରହଣ କରିଥିଲେ । ଏଣେ ଗୁଣସେନ ରାଜା ହେଲେ । ସେ ତପୋବନକୁ ଯାଇ ଅଗ୍ନିଶର୍ମାଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କଲେ । ଅଗ୍ନିଶର୍ମା ରାଜଦରବାରକୁ ତିନଥର ଯାଇଥିଲେ ଓ ରାଜାଙ୍କୁ ବ୍ୟସ୍ତ ଦେଖି ଭୋଜନ ନକରି ଫେରି ଆସି ଭାବିଲେ ଯେ ରାଜା ପ୍ରତିଶୋଧ ନେବା ପାଇଁ ତାଙ୍କୁ ବାରମ୍ବାର ନିମନ୍ତ୍ରଣ କରିମଧ୍ୟ ଭୋଜନରୁ ବଂଚିତ କରୁଛନ୍ତି । କ୍ରୋଧରେ ଅଗ୍ନିଶର୍ମା ନିଦାନ କଲେ ଯେ ସେ ଜନ୍ମଜନ୍ମାନ୍ତର ଧରି ଗୁଣସେନର ଶତ୍ରୁ ହୋଇ ତାଙ୍କୁ ବଧ କରିବେ । ଫଳସ୍ୱରୂପ ଅଗ୍ନିଶର୍ମା ନଅ ଥର ଜନ୍ମଲାଭ କରି ଗୁଣସେନଙ୍କୁ ବଧ କଲେ ଓ ପରିଶେଷରେ ସ୍ୱୀୟ ଶୁଭକର୍ମମାନ ନଷ୍ଟ କରିଦେଲେ । ଫଳସ୍ୱରୂପ ହତ୍ୟାକାରୀ (ଅଗ୍ନିଶର୍ମା) ନରକକୁ ଓ ସମରାଦିତ୍ୟ ସ୍ୱର୍ଗକୁ ଗଲେ ।

ଦ୍ୱିତୀୟ ଜନ୍ମରେ ଅଗ୍ନିଶର୍ମା ରାଜା ସିଂହ କୁମାରଙ୍କ ପୁତ୍ର ରୂପରେ ଜନ୍ମଗ୍ରହଣ କଲେ । ଏହି ପ୍ରସଙ୍ଗରେ ବିବାହ-ମଣ୍ଡପ,

କନ୍ୟା ପ୍ରସାଧନ ଏବଂ ତତ୍‌କାଳୀନ ଉତ୍ସବାଦିର ସଙ୍ଗମାନଙ୍କର ସୁନ୍ଦର ବର୍ଣ୍ଣନା ମିଳେ । ନର୍ବେଦ, ବୈରାଗ୍ୟାଦିର ବର୍ଣ୍ଣନା ମଧ୍ୟ ମିଳେ । ଏତଦ୍‌ବ୍ୟତୀତ ନୈତିକ ଓ ଧର୍ମସଂବନ୍ଧୀୟ ଆଖ୍ୟାନମାନ ମଧ୍ୟ ରହିଛି ।

ହରିଭଦ୍ରଙ୍କର ଏହି କଥାମାନଙ୍କରେ ମର୍ତ୍ତ୍ୟଲୋକ ଏବଂ ଦେବ-ଲୋକର ଚିତ୍ର ବର୍ଣ୍ଣିତ । ଏହାର ଶୈଳୀ ସଂସ୍କୃତ ମହାକାବ୍ୟ-ମାନଙ୍କ ପରି । 'ସମରାଇଚକହା' ଏକ ମହତ୍ତ୍ୱପୂର୍ଣ୍ଣ ରଚନା । ସିଦ୍ଧର୍ଷି (ଖ୍ରୀ: ୯୦୬) ଓ ଉଦ୍ଦ୍ୟୋତନ ( ଖ୍ରୀ: ୭୭୯ ). ଏହାଙ୍କ ପ୍ରଭାବକୁ ସ୍ୱୀକାର କରି ଆପଣାର କୃତିରେ ଏହାର ଶୈଳୀକୁ ଅନୁସରଣ କରିଛନ୍ତି । ନଗର ପ୍ରଭାତ, ଉଦ୍ୟାନାଦିର ବର୍ଣ୍ଣନା ଏଥିରେ ଉଚ୍ଚକୋଟୀର ହୋଇଛି । ଅଳଂକାର ସ୍ୱାଭାବିକ ଓ ଆର୍ଯ୍ୟା ଛନ୍ଦର ପ୍ରୟୋଗ ମୁଖ୍ୟତଃ ଉପଲବ୍ଧ । କେତେକ ବର୍ଣ୍ଣନା ସ୍ଥଳରେ ବଡ ବଡ଼ ସମାସର ବ୍ୟବହାର ଦେଖାଯାଇଛି । ଉଦାହରଣ ସ୍ୱରୂପ —

ପଢ଼େହିସ୍ସ ସାଲସଉଲତମାଲତାଲଲିବଉଲଚଲୟନଚୂଲଅଂ-କୋଲ୍ଲକଲମ୍ବବଞ୍ଜୁଲଚୋସସଚ୍ଛଇଚ୍ଛଣିଏଜମ୍ବକୁଡ଼ଏନଗ୍‌ଗୋହଡଇ-ରସଜ୍ଜମେବ୍ଜମ୍ବୁପୁନ୍ନୟରଗୁବଲଂ ଦରଏୁମଧୁଣାଦଖଉନ୍ଦହରସିଂହ-ଗବାସ୍ସଦଳସ୍ସମଣ୍ଡମାଏଙ୍ଗକୁମୁହ୍ରଥଲଗଲିସ୍ସବହଲଗୁଲ୍ମବଭିମୁଖିହଲ-କୁସୁମଚସ୍ସରତ୍ତସ୍ସବଡ୍ଥିଣଭମିଭଗଂ...........ମହାଡବିଂ ।

କିନ୍ତୁ, କଥାର ପ୍ରବାହରେ ଓ କଥୋପକଥନରେ ଭାଷା ସରଳ । ଏହାର ଭାଷା ପ୍ରାୟ ସରଳ, ବୋଧଗମ୍ୟ ଓ ପ୍ରବାହମୟୀ । ସମାସ; ଉପମାଦି ଅଳଙ୍କାରମାନଙ୍କ ପ୍ରୟୋଗରୁ ଲେଖକଙ୍କ କାବ୍ୟ

କୌଶଳ ବେଶ୍ ଉପଲବ୍ଧ । ଏହାର ଭାଷା ଜୈନ ମହାରାଷ୍ଟ୍ରୀ କିନ୍ତୁ ଘଟନାଂଶରେ ଶୌରସେନୀର ପ୍ରଭାବ ଅନୁଭୂତ ।

ଏହାର ଲେଖକ ହରିଭଦ୍ର ସୂରି ଶ୍ୱେତାମ୍ବର ସଂପ୍ରଦାୟର ଏକ ପ୍ରସିଦ୍ଧ ଆଚାର୍ଯ୍ୟ ଥିଲେ । ସେ ଚିତୋରରେ ବସବାସ କରୁଥିଲେ ଓ ସଂସ୍କୃତ ତଥା ପ୍ରାକୃତର ଜଣେ ମହାପଣ୍ଡିତ ଥିଲେ । ପରେ ଜୈନୋପାଧ୍ୟ ଶ୍ରେଣୀଭୁକ୍ତ ହେଲେ । ଏହାଙ୍କ କାଳ ଖ୍ରୀ: ୭୦୦-୮୦୦ ମଧ୍ୟବର୍ତ୍ତୀ ବୋଲି ନିର୍ଦ୍ଧାରିଣ କରାଯାଇଛି ।—

ଧୂତ୍ତକ୍ଖାଣ (ଧୂର୍ତ୍ତାଖ୍ୟାନ)—

ଏହା ମଧ୍ୟ ହରିଭଦ୍ରଙ୍କ ଦ୍ୱାରା ଲିଖିତ ଗ୍ରନ୍ଥ । ରାମାୟଣ, ମହାଭାରତ ଏବଂ ପୁରାଣାଦିରେ ବର୍ଣ୍ଣିତ । ଅନ୍ତରଂଜତ କଥାଗୁଡ଼ିକୁ ବ୍ୟଙ୍ଗ କରି ସେଗୁଡ଼ିକର ସାର୍ଥକତା ପ୍ରତିପାଦନ କରିବାର ଚେଷ୍ଟା ଏଥିରେ କରାଯାଇଛି । ଏହା ପାଠକଲେ ଜଣେ କୁଶଳ କଥାକାରର ମୌଳିକ କଳ୍ପନା ଶକ୍ତିର ସ୍ପଷ୍ଟ ପ୍ରମାଣ ମିଳେ । ଏହାର ଭାଷା ମହାରାଷ୍ଟ୍ରୀ ଓ ଶୈଳୀ ପ୍ରବାହମୟୀ ।

ଧୂର୍ତ୍ତାଖ୍ୟାନରେ ପାଞ୍ଚୋଟି ଆଖ୍ୟାନ ରହିଛି । ଥରେ ଉଜ୍ଜୟିନୀରେ ପାଞ୍ଚଜଣ ଧୂର୍ତ୍ତ-ଶିରୋମଣି ମିଳିତ ହେଲେ । ସେମାନେ ନିଷ୍ପତ୍ତି କଲେ ଯେ ପ୍ରତ୍ୟେକ ନିଜ ନିଜର ଅନୁଭୂତି ଶୁଣାଇବେ ଏବଂ ଯେ ସେସବୁ ଅନୁଭୂତିକୁ ବିଶ୍ୱାସ କରିବେ ନାହିଁ ସେ ସମସ୍ତଙ୍କୁ ଭୋଜନ ଦେବେ ଏବଂ ଯେ ନିଜ କଥାକୁ ରାମାୟଣ, ମହାଭାରତ ଓ ପୁରାଣ ଆଦିରୁ ଗୃହୀତ ବିଷୟ ପ୍ରମାଣ କରିଦେବ ସେ ଧୂର୍ତ୍ତମାନଙ୍କ ଗୁରୁରୂପେ ବିବେଚିତ ହେବ । ପ୍ରଥମେ ମୂଳଶ୍ରୀ ନାମକ ଧୂର୍ତ୍ତ ନିଜର ଅନୁଭୂତି ବର୍ଣ୍ଣନା କଲେ—"ଏକଦା ଯୁବା-

ବସ୍ଥାରେ ମୁଁ ନିଜ ମୁଣ୍ଡରେ ଗଙ୍ଗା ଧାରଣ କରିବା ପାଇଁ ନିଜ ମାଲିକ ଘରକୁ ଗଲି । ମୋ ମୁଣ୍ଡ ଉପରେ କମଣ୍ଡଳୁ ଓ ଛତା ଥିଲା । ଗୋଟିଏ ମତ୍ତହସ୍ତୀ ମୋ ପଛରେ ଗୋଡ଼ାଇଲା । ଭୟରେ ମୁଁ କମଣ୍ଡଳୁ ଭିତରେ ଆତ୍ମଗୋପନ କଲି । ମୋ ପଛେ ପଛେ ହାତୀ ମଧ୍ୟ କମଣ୍ଡଳୁ ମଧ୍ୟରେ ପଶିଗଲା । ହାତୀଟି ଛ ମାସ ପର୍ଯ୍ୟନ୍ତ ମୋ ପଛରେ ଧାଇଁଲା । ପରେ ମୁଁ କମଣ୍ଡଳୁର ତଣ୍ଡିବାଟେ ବାହାରି ଆସିଲି । କିନ୍ତୁ ହାତୀର ଲାଞ୍ଜ କମଣ୍ଡଳୁର ତଣ୍ଡିରେ ଲାଗି ରହିବା ଯୋଗୁଁ ସେ ବାହାରକୁ ଆସି ପାରିଲା ନାହିଁ । ମୁଁ ସ୍ରୋତରୁ ଗଙ୍ଗାକୁ ନେଇ ମୋ ମୁଣ୍ଡ ଉପରେ ଛ' ମାସ ପର୍ଯ୍ୟନ୍ତ ଧାରଣ କଲି । ତା ପରେ ଉଜ୍ଜୟିନୀ ପ୍ରତ୍ୟାଗମନ କଲି ଏବଂ ବର୍ତ୍ତମାନ ଆପଣଙ୍କ ସହ ଏକାଠି ବସିଛି ।

ଏହିପରି ପ୍ରତ୍ୟେକ ଧୂର୍ତ୍ତ ଏକ ଏକ ସ୍ୱ ଅନୁଭୂତ କାହାଣୀ ଶୁଣାଇଲେ । ପ୍ରାୟ ୫୦ଟି କଥା ଏଥିରେ ପ୍ରମାଣ ସ୍ୱରୂପ ଆସିଛି । ୮

## କଥାକୋଷ-ପ୍ରକରଣ

ଏହି ଗ୍ରନ୍ଥର ରଚୟିତା ହେଉଛନ୍ତି ଆଚାର୍ଯ୍ୟ ଜିନଭଦ୍ର ସୂରି । ସେ ଖ୍ରୀ. ୧୦୫୧ରେ ଏହି ଗ୍ରନ୍ଥ ରଚନା କରିଥିଲେ । ସେ ଏକାଧାରରେ ଆୟୁର୍ବେଦ, ସଂଗୀତ, ନାଟ୍ୟଶାସ୍ତ୍ର, ଅର୍ଥଶାସ୍ତ୍ର ଆଦିରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଏତଦ୍‌ବ୍ୟତୀତ ସଂସ୍କୃତ ଓ ପ୍ରାକୃତରେ କେତେଗୁଡ଼ିଏ ଗ୍ରନ୍ଥ ରଚନା କରିଛନ୍ତି । ଆଲୋଚ୍ୟ ଗ୍ରନ୍ଥରେ ୩୭ଟି କଥା ଓ ଏହିରି ପାଞ୍ଚୋଟି ଉପକଥା ମିଳେ । ୧୭ଟି କଥାରେ ସାଧୁମାନଙ୍କୁ ଦାନ ଦେବାର ଫଳ ବିଷୟ ରହିଛି । ଅନ୍ୟଗୁଡ଼ିକରେ ଜିନ-ପୂଜା, ଧର୍ମଶ୍ରଦ୍ଧା, କର୍ମଫଳ ଆଦି

ବିଷୟରେ ବର୍ଣ୍ଣନା ରହିଛି । ତତ୍‌କାଳୀନ ସମାଜ, ରାଜନୀତି, ଆଚାର-ବ୍ୟବହାର ଆଦିର ପରିଚୟ ଏହି କଥାଗୁଡ଼ିକରେ ବର୍ଣ୍ଣିତ । ଏଥିରେ ବର୍ଣ୍ଣିତ କଥାମାନଙ୍କ ମଧ୍ୟରେ ସିଂହ କୁମାର କଥା, ମନୋରଥ ଶାବକ କଥା, ପାଣ୍ଡୁ ଶାବକ କଥା, ଯକ୍ଷମାନଙ୍କ କଥା, କୁଲଲାରାଣୀ ଆଖ୍ୟାନ ଓ ବଣିକ୍‌ପୁତ୍ର କଥା ସାହିତ୍ୟିକ ଦୃଷ୍ଟିରୁ ଉତ୍ତମ । ଏଥିରେ କଥା ଏବଂ କଳ୍ପନାର ସଫଳ ସଂଯୋଜନା କରାଯାଇଛି । ଏଗୁଡ଼ିକର ଭାଷା ସରଳ, ସୁଖବୋଧ ଗଦ୍ୟମୟ ଏବଂ ସ୍ଥାନେ ସ୍ଥାନେ ସଂସ୍କୃତ ପଦ୍ୟ ମଧ୍ୟ ଦୃଷ୍ଟି ପଥାରୂଢ଼ ହୁଏ । ଏହାର ବର୍ଣ୍ଣନାଶୈଳୀ ପ୍ରବାହମୟୀ । ଏହି ଗ୍ରନ୍ଥରେ ମୌଳିକ ଭାବବିଜ ଏକ ବିଶେଷ ମହତ୍ତ୍ୱ ରକ୍ଷା କରିପାରିଛି । ସିଂହ କୁମାର କଥାର ଏକ ଅବାନ୍ତର କଥା ପ୍ରସଙ୍ଗ ଦ୍ରଷ୍ଟବ୍ୟ—

"କୌଣସୀ ସ୍ତ୍ରୀର ପତି ବିଦେଶ ଚାଲିଯାଇଥିଲା । ସେ ନିଜ ବାପଘରେ ରହୁଥିଲା । ଦିନକର କଥା, ସେ ଉପର ମହଲରେ କେଶ ବିନ୍ୟାସ କରୁଥିଲା ବେଳେ ସେହି ରାସ୍ତାରେ ଜଣେ ରାଜକୁମାର ଯିବାର ଦୃଶ୍ୟ ସନ୍ଦର୍ଶନ କଲା । ଦୁହିଁଙ୍କ ଦୃଷ୍ଟି ମିଳନ ହେଲା ଏବଂ ସୁନ୍ଦରୀକୁ ଦେଖି ରାଜକୁମାର ଗୋଟିଏ ସୁଭାଷିତ ପଢ଼ିଲା—

"ଅଣୁରୂବଗୁଣଂ ଅଣୁରୂବଜୋବ୍ବଣଂମାଣୁସଂ ନ ଜସ୍ସତ୍ଥି ।
କିଂ ତେଣ ଜୟନ୍ତେଣ ପିମାନି ନବରିଂ ମଓ ଏସା ।।"

ଅର୍ଥାତ୍ ଯେଉଁ ସ୍ତ୍ରୀର ଅନୁରୂପ ଗୁଣ ଓ ଯୌବନ ଥିବା ପୁରୁଷ ନାହିଁ, ତାର ବଞ୍ଚି ରହିବାର ଲାଭ କ'ଣ ? ତାକୁ ମୃତ ବୋଲି ବୁଝିବା ଉଚିତ ।

ସ୍ତ୍ରୀ ଉତ୍ତର ଦେଲା—

"ପରଭୁଂଜଈଂ ନଯ୍ୟାଣଇ ଲଚ୍ଛିଂ ପଉଂ ପିହୁଣଣ ପରହିଣେ ।
ବଳକ ମରସା ହୁ ସୁରସା ଭୁଂଜନ୍ତି ପରେସୁ ଲଚ୍ଛିଓ ॥"

ଅର୍ଥାତ୍ "ପୁଣ୍ୟହୀନ ପୁରୁଷ ଲକ୍ଷ୍ମୀ ଉପଭୋଗ କରିବା ଜାଣେନ । କେବଳ ସାହସୀ ପୁରୁଷ ପରର ଲକ୍ଷ୍ମୀକୁ ଉପଭୋଗ କରିପାରନ୍ତି ।"

ରାଜକୁମାର ସୁନ୍ଦରୀର ଅଭିପ୍ରାୟ ବୁଝିପାରି ରାତିରେ ଗବାକ୍ଷ ଦେଇ ସୁନ୍ଦରୀର ଗୃହରେ ପ୍ରବେଶ କରି ପଛରୁ ସୁନ୍ଦରୀର ଆଖି ବୁଜିଦେଲେ । କହିଲା—"ତୁ ମୋର ହୃଦୟକୁ ଚୋରି କରି ନେଇଗଲୁ, ତୁ ଏହାଷୟ ଜାଣିନାହୁଁ ବର୍ତ୍ତମାନ ମୋର ଆଖି ବନ୍ଦ କରିବା ବାହାନାରେ ତୁ କୁହଁମ ଅନ୍ଧାର ସୃଷ୍ଟି କରୁଛୁ ? ଆଜି ମୁଁ ମୋର ବାହୁ ପାଶକୁ ତୋ ଗଳାରେ ପକାଉଛି । ତୁ ନିଜ ଇଷ୍ଟଦେବତାକୁ ସ୍ମରଣ କର କିମ୍ବା ନିଜର ପୁରୁଷାର୍ଥ ଦେଖାଅ ।"

ରାତିସାରା ପ୍ରେମପୂର୍ଣ୍ଣ ଆଳାପ ହେଲା ଓ ଭୋର ହେବା ପୂର୍ବରୁ ରାଜକୁମାର ସେଠାରୁ ଫେରିଗଲେ । ଭୋର ହେବାରୁ ଦାସୀ ଆସି ଦେଖେ ଯେ ତା'ର ମାଲିକାଣୀ ଗାଢ଼ ନିଦରେ ଶୋଇଛି । ଦାସୀ ଭାବିଲା ଯେ ଯେଉଁ ସ୍ତ୍ରୀର ପତି ବିଦେଶରେ ସେ ଏତେ ଡେରି ଯାଏ ଶୋଇବାଟା ଭଲ କଥା ନୁହଁ । ସେ ଚୁପ୍‌ଚାପ ତା ପାଖରେ ବସି ରହିଲା । କିଛିକ୍ଷଣ ପରେ ସୁନ୍ଦରୀ ଉଠିବା ପରେ ଦାସୀ ପ୍ରଶ୍ନ କଲା—

"ସ୍ୱାମିନୀ, ଆଜି ଏତେ ସମୟ ଆପଣ କାହିଁକି ଶୋଇ ରହିଲେ ?"

ସୁଦର୍ଶ—ପତିଙ୍କ ବିରହରେ ରାତିସାରା ନିଦ ହେଉନି । ସକାଳୁ ନିଦ ଆସିଥିଲା ।

ଦାସୀ—'ସ୍ୱାମିନୀ, ଆପଣଙ୍କ ଓଠରେ ଏଗୁଡାକ କଣ ହୋଇଛି ?'

ସୁଦର୍ଶ—ଥଣ୍ଡା ହେତୁ ଫାଟି ଯାଇଛି ।

ଦାସୀ—'ସ୍ୱାମିନୀ, ଆପଣଙ୍କ ଆଖି କଜଳ କାହିଁକି ବୃକ୍ଷଆଡେ଼ ଲାଗିଯାଇଛି ?'

ସୁଦର୍ଶ—ପତିଙ୍କ ବିରହରେ ରାତିସାରା କାନ୍ଦୁଥିଲି, ମୁଁ ଆଖି ମଳି ଦେଲି ।

ଦାସୀ—ସ୍ୱାମିନୀ, ତୁମ ଶରୀରରେ ଏ ନଖକ୍ଷତ କେମିତି ହେଲା ।

ସୁଦର୍ଶ—''ପତି ବିରହରେ ମୁଁ ନିଜକୁ ଗାଢ଼ ଆଲିଙ୍ଗନ କରିଥିଲି ।''

ଦାସୀ—ତାହାହେଲେ କାଲଠୁଁ ମୁଁ ଆପଣଙ୍କ ପାଖରେ ଶୋଇବି ଓ ଆମେ ପରସ୍ପର ଆଲିଙ୍ଗନ କରି ଶୋଇବା ।

ସୁଦର୍ଶ—''ଛି ! ଛି ! ପତିବ୍ରତା ସ୍ତ୍ରୀ ପକ୍ଷରେ ଏହା ଅନୁଚିତ ।''

ଦାସୀ—ସ୍ୱାମିନୀ, ଆଜ ଆପଣଙ୍କ ଜୁଡ଼ା କାହିଁକି ଶିଥିଳ ହୋଇ ଯାଇଛି ?'

ସୁଦର୍ଶ—'ଭଉଣୀ, ତୁ ବଡ ଚଗଲା ଅଟୁ, ତୁ କ'ଣ ପାଇଁ ଏଣୁ ତେଣୁ ପଚାରୁଛୁ ? ପତିଙ୍କ ଅଭାବରେ ଶେଯ ଗରମ ବାଲି ପରି ଲାଗେ । ଏଣୁ ରାତିସାରା ଏପଟ ସେପଟ ଗଡ଼େଇ ହେଉଥିଲି । ଏଣୁ ଜୁଡ଼ା ଶିଥିଳ ହୋଇ ଯାଇଛି । ଏମିତି ପ୍ରଶ୍ନମାନ ପଚାରି ତୁ ମୋର ଶ୍ୱଶୁର କୁଳର ନାଶ ଘଟାଇବାକୁ ଚାହୁଁଛୁ ନା କ'ଣ ?

ଦାସୀ—'ଛି, ଛି, ସ୍ୱାମିନୀ, ଏମିତି ଭାବନ୍ତୁନି । ଏଥିରେ ଆପଣଙ୍କ ଶ୍ୱଶୁର କୁଳର ନାଶ ହେବନି ବରଂ ଉତ୍କର୍ଷ ହିଁ ହେବ ।—

(ଘ) **ଣାଣପଂଚମୀ କହା (ଜ୍ଞାନ ପଞ୍ଚମୀ କଥା)**

ଏହି ଗ୍ରନ୍ଥ ଏକାଦଶ ଶତାବ୍ଦୀରେ ପ୍ରଣୀତ । ଏହାର ଲେଖକ ମହେଶ୍ୱରସୂରି । ଏହାଙ୍କ ସମୟ ୧୦୫୨ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ବୋଲି ଅନୁମାନ କରାଯାଏ । ଏହି ଗ୍ରନ୍ଥରେ ଦଶଟି କଥା ରହିଛି । ଯଥା—ଜୟସେଣ କହା, ନନ୍ଦ-କହା, ଭଦ୍ଦା-କହା, ବୀର କହା, କମଲ-କହା, ଗୁଣାଣୁରାଗ-କହା, ବିମଲ୍-କହା, ଧରଣ-କହା, ଦେବୀ-କହା ତଥା ଭବିସ୍‌ସୟୁତ୍ତ କହା । ପ୍ରଥମ ଓ ଶେଷ କଥା ଦୁଇଟି ଦୀର୍ଘକାୟ । ଏହି ଗ୍ରନ୍ଥର ଭାଷା ଜୈନ ମହାରାଷ୍ଟ୍ରୀ । ଏହି କଥାଗୁଡ଼ିକର ବର୍ଣ୍ଣନ ଶୈଳୀ ସରଳ ଓ ଭାବଯୁକ୍ତ ଅଟେ ।

**ଭବିସସୟୁତ୍ତକହା*** :—କୁରୁଜାଙ୍ଗଳ ଦେଶର ଗଜପୁର ନଗରରେ କୌରବ ବଂଶୀୟ ରାଜା ଭୂପାଳ ରାଜତ୍ୱ କରୁଥିଲେ । ଏହି ନଗରରେ ଧନପାଳ ନାମକ ଜଣେ ମହାନ୍ ଧନୀ ରହୁଥିଲେ । ତାଙ୍କ ସ୍ତ୍ରୀର ନାମ କମଳଶ୍ରୀ । ଏହି ଦମ୍ପତିର ଭବିସ୍‌ସୟୁତ୍ତ (ଭବିଷ୍ୟଦତ୍ତ) ନାମରେ ଏକ ପୁଅ ଥିଲା । ଧନପାଳ ସରୂପା ନାମ୍ନୀ ଜଣେ ସୁନ୍ଦରୀକୁ ବିବାହ କଲେ । ଫଳରେ ସେ ନିଜ ପ୍ରଥମ ସ୍ତ୍ରୀ ଓ ପୁତ୍ରକୁ ଉପେକ୍ଷା କରିବାକୁ ଲାଗିଲେ । ଧନପାଳ ଓ ସରୂପାର ପୁତ୍ର ବନ୍ଧୁଦତ୍ତ ବଡ଼ ହୋଇ ପାଞ୍ଚ ଶହ ବେପାରୀଙ୍କୁ ସାଙ୍ଗରେ ନେଇ କଞ୍ଚନ ଦ୍ୱୀପକୁ ଯାତ୍ରା କଲେ । ଭବିଷ୍ୟଦତ୍ତ ମଧ୍ୟ ସେମାନଙ୍କ ସହ ଯାଉଥିବା ଦେଖି ସରୂପା କହିଲା 'ପୁଅ ତୁ ଏମିତି କରିବୁ ଯେମିତି ଭବିଷ୍ୟଦତ୍ତ ଆଉ ଫେରି ନ ଆସେ ।' ସମଦ୍ର ଯାତ୍ରା

---

* ଏହାର ଆଧାରରେ ଅପଭ୍ରଂଶରେ ଧନବାଲ 'ଭବିସତ୍ତ-କହା' ନାମକ ଏକ ସୁନ୍ଦର ପ୍ରବନ୍ଧ-କାବ୍ୟର ମତ ।

ଜରୁକରୁ ସେମାନେ ମୈନକା ପର୍ବତରେ ପହଞ୍ଚିଲେ । ସେ ବନ୍ଧୁଦତ୍ତ ଭବିଷ୍ୟଦତ୍ତଙ୍କୁ ଛାଡ଼ି ନିଜ ଗନ୍ତବ୍ୟ ପଥରେ ଯାତ୍ରା କଲା । ଭବିଷ୍ୟଦତ୍ତ ଏଣେ ତେଣେ ବୁଲି ଏକ ନିର୍ଜନ ନଗରୀରେ ପହଞ୍ଚିଲା । ସେହି ନଗରୀଟି ଖୁବ୍ ସମୃଦ୍ଧଶାଳୀ । ସେଠି ଗୋଟିଏ ଜିନ ମନ୍ଦିରରେ ପହଞ୍ଚି ଚନ୍ଦ୍ରପ୍ରଭ ଭଗବାନଙ୍କୁ ପୂଜା କଲା । ଦେଖିଲା ମନ୍ଦିର ଦ୍ୱାର ଦେଶରେ ଦୁଇଟି ଗାଥା ଲେଖାଯାଇଛି । ଗାଥା ପଢ଼ି ସେ ଜଣେ ଦିବ୍ୟସୁନ୍ଦରୀର ସନ୍ଧାନ ପାଇଲା ଯାହାର ନାମ ଭବିଷ୍ୟାନୁରୂପା । ସେହି ସୁନ୍ଦରୀ ସହ ଭବିଷ୍ୟଦତ୍ତ ବିବାହ କଲା । ଯେଉଁ ଅସୁର ଏହି ନଗରୀକୁ ଧ୍ୱଂସ କରିଥିଲା ସେ ପୂର୍ବ-ଜନ୍ମରେ ଭବିଷ୍ୟଦତ୍ତର ମିତ୍ର ଥିଲା । ସେ ଭବିଷ୍ୟଦତ୍ତ ସବୁ ପ୍ରକାର ସାହାଯ୍ୟ କଲା ।

ଭବିଷ୍ୟଦତ୍ତ ନିଜ ପତ୍ନୀ ସହ ପ୍ରଚୁର ଧନରତ୍ନ ନେଇ ଘରକୁ ଫେରିବା ରାସ୍ତାରେ ବନ୍ଧୁଦତ୍ତ ଓ ତାର ସହଗାମୀ ବେପାରୀମାନଙ୍କୁ ଅସହାୟ ଅବସ୍ଥାରେ ଦେଖି ତାଙ୍କୁ ସାହାଯ୍ୟ କଲା ଓ ବାଟରେ ତୋଫାନରେ ପଡି ସୁଦ୍ଧା କୌଣସି ପ୍ରକାରେ ଗଜପୁରରେ ପହଞ୍ଚିଲା । ଭବିଷ୍ୟାନୁରୂପା ତାର ଭାବି ପତ୍ନୀ ବୋଲି ଘୋଷଣା କରି ବିବାହ ତିଥି ମଧ୍ୟ ସ୍ଥିର କଲା । ଏଣେ ଭବିଷ୍ୟଦତ୍ତ ଗୋଟିଏ ଯକ୍ଷ ସାହାଯ୍ୟରେ ଗଜପୁରରେ ଆସି ପହଞ୍ଚି ରାଜା ଭୂପାଳଙ୍କ ନିକଟରେ ବନ୍ଧୁଦତ୍ତଙ୍କ ବିରୋଧ ଆପତ୍ତି କଲା । ରେସେ ଦରବାରରେ ନିଜ ଆପତ୍ତିର ପ୍ରମାଣ ଦେଇ ଭବିଷ୍ୟାନୁରୂପାକୁ ଫେରି ପାଇଲା । ରାଜା ଭୂପାଳ ମଧ୍ୟ ଭବିଷ୍ୟଦତ୍ତ ଉପରେ ପ୍ରସନ୍ନ ହୋଇ ରାଜ୍ୟର ଅର୍ଦ୍ଧେକ ଦେଇ ନିଜ କନ୍ୟା ସୁତାରଙ୍କୁ ଭବିଷ୍ୟଦତ୍ତଙ୍କୁ ଦାନ କଲେ । ଭବିଷ୍ୟଦତ୍ତ ଦୁଇ ପତ୍ନୀଙ୍କ ସହ

ଆନନ୍ଦରେ କାଳଯାପନ କଲା । ନିର୍ମଳବୁଦ୍ଧି ମୁନିଙ୍କ ଠାରୁ ଜିନଙ୍କ ପୂର୍ବଜନ୍ମାବଳୀ ଶୁଣି ବିରକ୍ତ ହୋଇ ପ୍ରବ୍ରଜ୍ୟା ଧାରଣ କରି ତପସ୍ୟା କଲା । ଏହାପରେ ଆୟୁକ୍ଷୟ କରି ସପ୍ତମ ସ୍ୱର୍ଗରେ ହେମାଂଗଦ ଦେବ ହୋଇଗଲେ । କମଳଶ୍ରୀ ଓ ଭବିଷ୍ୟଦନୁରୂପା ମଧ୍ୟ ମରଣ ଲଭ କରି ଦେବଗତି ପାଇଲେ ।

ଏହି କଥାଟିରେ ନାଗର ଚରିତ୍ରାବଳୀ, ଚେଷ୍ଟାଦିର ସୁନ୍ଦର ନିରୂପଣ ମିଳେ । ନନ୍ଦ କଥାରେ ନନ୍ଦ ଚରିତ୍ରର ମହତ୍ତ୍ୱ ଦ୍ରଷ୍ଟବ୍ୟ । ସୀର କଥା ଓ କମଲ-କଥାରେ ଅନ୍ତର୍ବର୍ଣ୍ଣନାର ସଂଯୋଜନ ଓ ଆନ୍ତରିକ ଦ୍ୱନ୍ଦ୍ୱ ଉଲ୍ଲେଖ ଯୋଗ୍ୟ ।

ଏହି କଥାର ଲେଖକ ସଂସ୍କୃତ ଓ ପ୍ରାକୃତର ଜଣେ ମହାନ୍ ପଣ୍ଡିତ । କଥାଗୁଡ଼ିକର ବର୍ଣ୍ଣନା ଶୈଳୀ ଖୁବ୍ ସରଳ । ସ୍ଥାନେ ସ୍ଥାନେ ଅର୍ଦ୍ଧମାଗଧୀ ଓ ଅପଭ୍ରଂଶର ପ୍ରଭାବ ଦେଖାଯାଏ ।

ଜୈନ ଆଚାର୍ଯ୍ୟମାନେ କାର୍ତ୍ତିକ ଶୁକ୍ଳ ପଞ୍ଚମୀକୁ ଜ୍ଞାନପଞ୍ଚମୀ କହନ୍ତି । ଏବଂ ଏହି ଉତ୍ସବରେ ଶାସ୍ତ୍ରପୂଜା, ଅର୍ଚ୍ଚନା, ସାଂମାର୍ଜନ, ଲେଖନ ଓ ଲେଖାପନ ଇତ୍ୟାଦିର ବିଧାନ କରାଯାଏ ।

ଭାଷା ସମ୍ବନ୍ଧରେ ଏହି ଲେଖକଙ୍କର ମତ ଦ୍ରଷ୍ଟବ୍ୟ—

ସକ୍କଯକବ୍ବସ୍ସତ୍ଥଂ ଜେଣ ନ ଜାଣନ୍ତି ମନ୍ଦବୁଦ୍ଧୀଯା ।
ସବ୍ବାଣ ବି ସୁହବୋହଂ ତେଣ ଇମଂ ପାଇଯଂ ରଇୟଂ ।।

ଗୂଢ଼ତ୍ଥଦେସିରହିୟଂ ସୁଲଲିୟବନ୍ନେହିଂ ଗଂଥିୟଂ ରମ୍ମଂ ।
ପାଇୟକବ୍ବଂ ଲୋଏ କସ୍ସ ନ ହିୟୟଂ ସୁହାବେଇ ।।

ଅର୍ଥାତ୍, କମ ବୁଦ୍ଧି ଥିବା ଲୋକମାନେ ସଂସ୍କୃତ କାବ୍ୟର ଅର୍ଥ ବୁଝନ୍ତି ନାହିଁ, ଏଣୁ ପ୍ରାକୃତରେ ସର୍ବସୁଲଭ କାବ୍ୟ ରଚିତ ହୁଏ । ଗୂଢ଼ାର୍ଥ ଓ ଦେଶୀ ଶବ୍ଦ ରହିତ ଏବଂ ସୁଲଳିତ ବର୍ଣ୍ଣ ଗ୍ରଥିତ ଓ ରମ୍ୟ ପ୍ରାକୃତ କାବ୍ୟ କାହାର ମନକୁ (ହୃଦୟକୁ) ସୁଖ ନ ଦିଏ ?

## କହାରୟଣ କୋସ (କଥାରତ୍ନ କୋଷ)

ଏହି କଥା କୋଷର ରଚୟିତା ଦେବଭଦ୍ର ସୂରି ବା ଗୁଣଚନ୍ଦ୍ର ଗଣି । ଏଥିରେ ପଚାଶଟି କଥା ସନ୍ନିବିଷ୍ଟ । ଏଗୁଡ଼ିକ ଗଦ୍ୟ ଓ ପଦ୍ୟରେ ଅଳଂକୃତ ଶୈଳୀରେ ଲିଖିତ । ଏହି ଲେଖକଙ୍କ ଅନ୍ୟ ରଚନା ମଧ୍ୟରେ ପାସନାହ ଚରିୟ, ମହାବୀର ଚରିୟ, ଅନନ୍ତନାଥ ସ୍ତୋତ୍ର ଇତ୍ୟାଦି ଅନ୍ୟତମ । ଏହି କଥାଗୁଡ଼ିକର ମୌଳିକ ପ୍ରକୃତି ବର୍ଣ୍ଣନା ମଧ୍ୟ କଥାଗୁଡ଼ିକର ସୌନ୍ଦର୍ଯ୍ୟ ବୃଦ୍ଧି କରେ ।

ନାଗଦତ୍ତ କଥାରେ କଳିଂଜର ପର୍ବତ ଶିଖରରେ କାଷ୍ଠ ନିର୍ମିତ କୁଳଦେବତାଙ୍କ ପୂଜା ପାରଂପରିକ ଭାବରେ ହୋଇ ଆସୁଥିଲା । ନାଗ କୁଣ୍ଡାଯନରେ ବସି ପାଞ୍ଚ ଦିନ ପର୍ଯ୍ୟନ୍ତ ନିରାହାର ରହି ଉପାସନା ଆରମ୍ଭ କଲେ । କୁବେରସକ୍ଷ ନାମକ କୁଳ-ଦେବତାର ଲୋକେ ମଧ୍ୟ ଉପାସନା କରୁଥିଲେ । ଗଂଗବସୁମନ୍ତ କଥାରେ ଉଡ୍‌ଡୟଣ ଦେଶରେ ଉଲ୍ଲେଖ ମିଳେ । ସାପଦଂଶ ନାଶ ପାଇଁ ଅଠ ନାଗ କୁଳର ଉପାସନା କରାଯାଉଥିଲା । କୃଷ୍ଣ-ଚତୁର୍ଦ୍ଦଶୀ ଦିନ ଶ୍ମଶାନରେ ଏକାକୀ ବସି ୧୦୦୮ ଥର ମନ୍ତ୍ର ଜପ କଲେ ଏହି ବିଦ୍ୟା ସିଦ୍ଧ ହୁଏ । ଚୂଡ଼ାମଣି ଶାସ୍ତ୍ର ସାହାଯ୍ୟରେ ଭୂତ,

ବର୍ତ୍ତମାନ, ଭବିଷ୍ୟତର ଜ୍ଞାନ ପ୍ରାପ୍ତି ହୁଏ । କାର୍ଯ୍ୟୋତ୍ସର୍ଗର ମହତ୍ତ୍ୱ ଦେଖାଇବା ପାଇଁ ଧଣୀରାଜ କଥା, ଭୋଗୋପଭୋଗ ପରିମାଣ ବ୍ରତ ନିମିତ୍ତ ମହାଶ୍ରେଷ୍ଠ କଥା ଆଦି ଦ୍ରଷ୍ଟବ୍ୟ । ଶେଷରେ ପ୍ରବ୍ରଜ୍ୟା ପାଇଁ ଉଦ୍ୟୋଗ କରିବାକୁ ପ୍ରଦ୍ୟୁମ୍ନଚନ୍ଦ୍ର କଥାର ରଚନା ହୋଇଛି ।

ଏହି କଥାଗୁଡ଼ିକ ରୁଚିସମ୍ପନ୍ନ ଶୈଳୀରେ ଲିଖିତ । ସମସ୍ତ କଥାରେ ମାନବ ବାଦର ପ୍ରତିଷ୍ଠା ପାଇଁ ଜୋର୍ ଦିଆଯାଇଛି ଓ ଜାତିବାଦର ଖଣ୍ଡନ କରାଯାଇଛି । ଶାରୀରିକ ସୁଖ ଅପେକ୍ଷା ଆତ୍ମିକ ସୁଖର ପ୍ରାଧାନ୍ୟ ଦର୍ଶାଯାଇଛି । ନୀରସ ଉପଦେଶଗୁଡ଼ିକୁ କଥା ମାଧ୍ୟମରେ ଅତ୍ୟନ୍ତ ସୁଖପାଠ୍ୟ କରାଯାଇଛି । ଉପବନ, ଋତୁ, ରାତ୍ରି, ଯୁଦ୍ଧ, ଶ୍ମଶାନ, ରାଜପ୍ରାସାଦ, ନଗରାଦିର ସୁନ୍ଦର ବର୍ଣ୍ଣନା କାହାଣୀଗୁଡ଼ିକରେ ପାଠକମନକୁ ଆକୃଷ୍ଟ କରିପାରିଛି । ଧାର୍ମିକ କଥା ହେଲେ ମଧ୍ୟ ଏଗୁଡ଼ିକରେ ଲେଖକଙ୍କ ମୌଳିକତା ପରିଲକ୍ଷିତ । ନିମ୍ନରେ ସଂକ୍ଷେପରେ କେତୋଟି କଥାର ସାର ଦିଆଯାଉଛି :

ମୂଢ଼ କଥାନକରେ ମୂଢ଼କଳହର ସ୍ୱାଭାବିକ ଚିତ୍ର—ଜଣେ ବଧୂ କୂଅରୁ ପାଣି ଭରି ଆଣୁଥିଲା । ତାର ମାଠିଆଟି କଣା ହୋଇଗଲା । ତାକୁ ତାର ଶାଶୂ ରାଗରେ ଗୋଟିଏ ଚାପୁଡ଼ା ଦେଲା । ବଧୂର ଝିଅ ଏହା ଦେଖି ବୁଢ଼ୀମାର ଗଳାରୁ ହାର ଛିଣ୍ଡାଇ ପକାଇଲା । ବୋହୂର ନଣନ୍ଦ ମା'ର ଅପମାନ ଦେଖି ଝିଅର ମୁଣ୍ଡ ଫଟାଇ ଦେଲା । ବୋହୂ ମଧ୍ୟ ଏହାଦେଖି ନଣନ୍ଦକୁ ମାରିଲା । ଏମିତି ନିତି କଳହ ଲାଗି ରହୁଥାଏ । ଘର ମାଲିକ ଲାଜରେ କାହାରିକୁ କିଛି କହେ ନାହିଁ ।

ସୁଜସ ଶ୍ରେଷ୍ଠି ଓ ତାର ପୁଅମାନଙ୍କୁ ନେଇ ଯେଉଁ କଥା ରଚିତ୍ତ ସେଥିରେ ସୁଜସ ଶ୍ରେଷ୍ଠିର ପୁଅମାନେ ବାପାର ଉପଦେଶ ମାନନ୍ତି ନାହିଁ; କାରଣ ମା ପୁଅମାନଙ୍କୁ ଗାଳିଦେବାକୁ ବାରଣ କରନ୍ତି । ଫଳରେ ପୁଅମାନେ ନାନାପ୍ରକାର କୁସଙ୍ଗରେ ପଡ଼ି ମା'କୁ ମଧ୍ୟ ବେଶାନ୍ତର କରିବାକୁ ଲଗିଲେ ।

## ଲଘୁକଥା ମାଳା—

ସମରାଇଚକହା ଓ ଧୂର୍ତ୍ତାଖ୍ୟାନ ପରି ବୃହତ୍ କଥାର ଲେଖକ ଆଚାର୍ଯ୍ୟ ହରିଭଦ୍ର ବହୁ ଶ୍ରେଷ୍ଠ ଶ୍ରେଷ୍ଠ କଥା ଲେଖିଛନ୍ତି । ଦଶବୈକାଳିକରେ ୩୦ଟି ଓ ଉପଦେଶପଦରେ ୭୦ଟି ପ୍ରାକୃତ କଥା ସଂଗୃହୀତ । ଏହି କଥାଗୁଡ଼ିକୁ ନଅଟି ଭାଗରେ ବିଭକ୍ତ କରି ଡକ୍ଟର ନେମିଚନ୍ଦ୍ର ଶାସ୍ତ୍ରୀ କହିଛନ୍ତି—ସମସ୍ତ କଥା ବିଶ୍ଳେଷଣ ଯୁକ୍ତ । (୧) କାର୍ଯ୍ୟ ଓ ଘଟଣା ପ୍ରଧାନ କଥା (୨) ଚରିତ୍ର ପ୍ରଧାନ କଥା (୩) ଭାବନା ଓ ବୃତ୍ତି ପ୍ରଧାନ (୪) ବ୍ୟଙ୍ଗ ପ୍ରଧାନ (୫) ବୁଦ୍ଧି ଚମତ୍କାର ପ୍ରଧାନ (୬) ପ୍ରତୀକ ପ୍ରଧାନ (୭) ମନୋରଞ୍ଜନ ପ୍ରଧାନ (୮) ନୀତି ଅଥବା ଉପଦେଶ ପ୍ରଧାନ (୯) ପ୍ରଭାବ ପ୍ରଧାନ ।

ଅଶ୍ରୁତପୂର୍ବକ ଲଘୁକଥା ଜଣେ ପରିବ୍ରାଜକ ସ୍ୱର୍ଣ୍ଣପାତ୍ର ନେଇ ଭିକ୍ଷାବୃତ୍ତି କରୁଥିଲେ । ସେ ଘୋଷଣା କଲେ ଯେ ମୋତେ ଯେ ଅଶ୍ରୁତପୂର୍ବ କଥା ଶୁଣାଇବ ମୁଁ ତାକୁ ଏହି ସ୍ୱର୍ଣ୍ଣପାତ୍ରଟି ଦେଇଦେବି । କେତେଜଣ ବହୁତଗୁଡ଼ିଏ କଥା ଶୁଣାଇଲେ ପରେ, ସେହି କଥାଗୁଡ଼ିକ ଶ୍ରୁତ କହି ସେମାନଙ୍କୁ ଫେରାଇଦେଲେ । ସେଠି ଜଣେ ଶ୍ରାବକ ମଧ୍ୟ ଉପସ୍ଥିତ ଥିଲେ । ସେ ପରିବ୍ରାଜକଙ୍କୁ କହିଲେ—ତୁମର ବାପା ମୋ ବାପାଙ୍କ ଠାରୁ ଲକ୍ଷେ ଟଙ୍କା

ନେଇଥିଲେ । ଯଦି ମୋର କଥା ସତ, ତାହାହେଲେ ମୋତେ ମୋ ବାପାଙ୍କଠାରୁ ନେଇଥିବା ଟଙ୍କା ଫେରାଇ ଦିଅ । ଯଦି ଏହା ଅସତ୍ୟ ତେବେ ତାହାହେଲେ ଏହି ସ୍ୱର୍ଣ୍ଣପାତ୍ର ମୋତେ ଦିଅ । ବାଧ୍ୟ ହୋଇ ପରିବ୍ରାଜକ ତାଙ୍କୁ ସ୍ୱର୍ଣ୍ଣପାତ୍ରଟି ଦେଲେ । ଏହା ବୁଦ୍ଧି-ଚମତ୍କାର ପ୍ରଧାନ କଥା ।

## ଧାର୍ମିକ ଉପନ୍ୟାସ

### ତରଙ୍ଗବଇ କହା (ତରଙ୍ଗବତୀ କଥା)—

ପ୍ରସିଦ୍ଧ ଜୈନ ବିଦ୍ୱାନ ପାଦଲିପ୍ତ ସୂରି ଏହି ଗ୍ରନ୍ଥର ରଚୟିତା । ଏହା ପ୍ରାକୃତ କଥା ସାହିତ୍ୟର ପ୍ରାଚୀନତମ ଓ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ହେଲେହେଁ ଏହା ଅପ୍ରାପ୍ୟ; କେବଳ ଅନ୍ୟାନ୍ୟ ଗ୍ରନ୍ଥରୁ ଏହାର ଦୃଷ୍ଟାନ୍ତ ମିଳେ । ସାତବାହାନ ବଂଶୀୟ ରାଜା ହାଲଙ୍କ ବିଦ୍ୱାନ ସଭାରେ ପାଦଲିପ୍ତ ଜଣେ ଲବ୍ଧପ୍ରତିଷ୍ଠ କବି ରୂପରେ ଖ୍ୟାତି ଲାଭ କରିଥିଲେ । ନିଜେ ହାଲ ମଧ୍ୟ ଜଣେ ଖ୍ୟାତନାମା କବି ଥିଲେ (ଦ୍ରଷ୍ଟବ୍ୟ ଗାଥା ସପ୍ତଶତୀ) । ହାଲଙ୍କ ହାଲଙ୍କ ରାଜଦରବାରର ଗୁଣାଢ୍ୟ ଯେପରି ପୈଶାଚୀରେ ବୃହତ୍‌କଥା ରଚନା କରିଥିଲେ ସେହିପରି ପାଦଲିପ୍ତ ପ୍ରାକୃତରେ ତରଙ୍ଗବତୀ କଥା ଲେଖିଥିଲେ । ଏହି କବିଙ୍କ କିଛି ନା’ ଗୋଟି ଗାଥା ଗାଥା-ସପ୍ତଶତୀରେ ସଂକଳିତ ।* ପ୍ରାଚ୍ୟ ବିଦ୍‌ମାନଙ୍କ ଅନୁସାରେ ଏହାର ରଚନାକାଳ ପ୍ରଥମ-ଦ୍ୱିତୀୟ ଶତାବ୍ଦୀ । ଏହି ଗ୍ରନ୍ଥର

* ଗାଥାସପ୍ତଶତୀ—(ବଂଗଳା ଅନୁବାଦକ ରାଧାଗୋବିନ୍ଦ ବସାକ) ର Introduction ୭ ପୃଷ୍ଠା ଦ୍ରଷ୍ଟବ୍ୟ ।

ସଂକ୍ଷିପ୍ତ ରୂପ ତରଙ୍ଗଲୋଲା ରୂପେ ଖ୍ୟାତ, ଯାହା ତରଙ୍ଗବତୀର ଶହେ ବର୍ଷ ପରେ ନେମିଚନ୍ଦ୍ର.ଗଣିଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା । ଗାଥା ସଂଖ୍ୟା ୧୬୪୨ ।

ରାଜଗୃହ ନଗରର ଧନପାଳ ନାମକ ସେଠଙ୍କ ପତ୍ନୀ ସୋମା ତାଙ୍କ ଘର ପାଖ ବସ୍ତୀରେ ଥିବା ବ୍ରାହ୍ମଣୀ ସୁବ୍ରତା ନିଜ ଶିଷ୍ୟ-ପରିବାର ସହ ବସବାସ କରୁଥିଲେ । ଶିଷ୍ୟା ତରଙ୍ଗବତୀ ଭିକ୍ଷା ପାଇଁ ସେଠଙ୍କ ପତ୍ନୀ ନିକଟକୁ ଆସିଲେ । ତରଙ୍ଗବତୀଙ୍କ ସୌନ୍ଦର୍ଯ୍ୟରେ ମୁଗଧ ହୋଇ ସେଠପତ୍ନୀ ଅତ୍ୟନ୍ତ ମୁଗ୍ଧ ହେଲେ ଓ ଧର୍ମ କଥା ଶୁଣାଇବାକୁ ତରଙ୍ଗବତୀଙ୍କୁ କହିଲେ । ଧର୍ମକଥା ଶୁଣିବା ପରେ ତାର ଜୀବନବୃତ୍ତାନ୍ତ ଶୁଣିବାକୁ ଆଗ୍ରହ ସହ ପୃଚ୍ଛିବାରୁ ତରଙ୍ଗବତୀ କହିବାକୁ ଲାଗିଲେ—

ବତ୍ସ ଦେଶରେ କୌଶାମ୍ବୀ ନାମକ ନଗର ଥିଲା । ତାହା ମଧ୍ୟଦେଶର ଶୋଭାସ୍ଥଳୀ ଏବଂ ଯମୁନା କୂଳରେ ଅବସ୍ଥିତ ଥିଲା । ସେହି ରାଜ୍ୟରେ ରାଜା ଉଦୟନ ଓ ରାଣୀ ବାସବଦତ୍ତା ଏକତ୍ର ରାଜତ୍ୱ କରୁଥିଲେ । ଏହି ସହରର ଋଷଭସେନ ନଗରସେଠଙ୍କ ଘରେ ଆଠ ପୁଅଙ୍କ ପରେ ମୁଁ ଜନ୍ମଗ୍ରହଣ କରିଥିଲି । ମୋତେ ସେମାନେ ତରଙ୍ଗବତୀ ନାମରେ ନାମିତ କଲେ । ଆଠ ବର୍ଷ ବୟସରେ ମୁଁ ଲେଖା, ଗଣିତ ରୂପ, ଆଲେଖ୍ୟ, ଗୀତ, ବାଦ୍ୟ, ନାଟ୍ୟ ଇତ୍ୟାଦି କଳାରେ ଶିକ୍ଷାପ୍ରାପ୍ତ କରିସାରିଥିଲି । ଯୌବନାଗମନରେ ଥରେ ବସନ୍ତ ଋତୁରେ ମୁଁ ଆମ ଘରଲୋକଙ୍କ ସହ ଉପବନରେ କ୍ରୀଡ଼ାପାଇଁ ଗଲି । ସେଠି ଗୋଟିଏ ଚକ୍ରବାକ ପକ୍ଷୀକୁ ଦେଖି ମୋର ଜାତିସ୍ମରଣ ହୋଇଗଲା ଏବଂ ନିଜ ସାରସିକାକୁ ମୁଁ ନିଜର ପୂର୍ବଜନ୍ମ-ବୃତ୍ତାନ୍ତ ଶୁଣାଇଲି ।

ଚମ୍ପା ନଗରୀରେ ଚକ୍ରବାକୀ ହୋଇ ଗଙ୍ଗାକୂଳରେ ମୁଁ ନିଜର ଚକ୍ରବାକ ସହ କ୍ରୀଡ଼ା କରୁଥିଲି । ଦିନେ ଗୋଟିଏ ହାତୀ ପାଣି ପିଇବାକୁ ଆସିଲା । ଜଣେ ବ୍ୟାଧ ସେହି ହାତୀକୁ ବାଣ ଛୁଡ଼ିବାବେଳେ ମୋର ପ୍ରିୟ ଚକ୍ରବାକ ସେହି ବାଣରେ ନିହତ ହେଲା । ବ୍ୟାଧ ପଶ୍ଚାତାପପୂର୍ବକ ଚକ୍ରବାକକୁ ଅଗ୍ନି-ସଂସ୍କାର କଲା ଓ ମୁଁ ପ୍ରିୟତମର ବିୟୋଗ ଦୁଃଖରେ ପୀଡ଼ିତ ହୋଇ ଅଗ୍ନିରେ ଝାସ ଦେଇ ପ୍ରାଣତ୍ୟାଗ କଲି । ଏବେ ମୁଁ ତରଙ୍ଗବତୀ ହୋଇ ଜନ୍ମ ପାଇଛି ।

ଉପବନରୁ ଫେରି ମୁଁ ନିଜ ପୂର୍ବଜନ୍ମର ସ୍ୱାମୀଙ୍କୁ ପାଇବାକୁ ଚେଷ୍ଟା କଲି ଓ କାଶୀର ଖଣ୍ଡେ ସୁନ୍ଦର ବସ୍ତ୍ର ଉପରେ ପୂର୍ବଜନ୍ମର ଘଟଣାର ଚିତ୍ର ଲେଖାଇ କୌମୁଦୀ ମହୋତ୍ସବ ସମୟରେ ସେଇଟିକୁ ରାଜମାର୍ଗରେ ରଖାଇ ଦେଲି । ସେଇଟିକୁ ଦେଖି ନଗରର ଧନଦେବ ଶେଠଙ୍କ ପୁତ୍ର ପଦ୍ମଦେବଙ୍କୁ ପୂର୍ବଜନ୍ମର କଥା ସ୍ମରଣ ହେଲା । ସଖୀଠାରୁ ନିଜ ପୂର୍ବଜନ୍ମର ପତିଙ୍କଠାରୁ ସମ୍ବାଦ ପାଇ ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ତା'ପରେ ପଦ୍ମଦେବଙ୍କ ପିତା ମାଗଣି କଲେ, କିନ୍ତୁ ମୋ ପିତା ଏହି ସମ୍ବନ୍ଧ ସ୍ୱୀକାର କଲେନି । କାରଣ ବିକୀ ଇସି ଧନ୍ଦରେ ହିଁ ମୋତେ ଦେବେ ବୋଲି ସେ ଭାବିଥିଲେ ।

ଏଣୁ ନିରାଶ ହୋଇ ଭୋଜପତ୍ରରେ ପତ୍ର ଲେଖି ପଦ୍ମଦେବ ପାଖକୁ ପଠାଇଲି । ସଖୀ ସହ ପ୍ରିୟଙ୍କ ଘରକୁ ଗଲି ଓ ସେଠୁ ନାଆରେ ବସି ନଦୀ ଆର ପାରିରେ ଗାନ୍ଧର୍ବ ବିବାହ ଅନୁସାରେ ଆମେ ବାନ୍ଧା ହେଲୁ । ସେଠି ଚୋରଙ୍କ ଆକ୍ରମଣରେ ଆମେ ବନ୍ଦୀ

ହେଲୁ । ସେମାନେ ଜାତ୍ୟାୟୁମାଙ୍କୁ ଖୁସି କରିବାକୁ ଆମକୁ ବଳି ଦେବାକୁ ଚାହୁଁଥିଲେ । ମୋର ଅସୀମ ବିଳାପରେ ଚୋର ସର୍ଦ୍ଦାର ଆମକୁ ଛାଡ଼ି ଦେଲେ । ତାପରେ କେତେଗୁଡ଼ିଏ ନଗର ଭ୍ରମଣ କରି ସାରି ନିଜ ମାତା-ପିତାଙ୍କ ସହ ମିଳି ଆମର କଥା ଶୁଣାଇଲୁ । ସେମାନେ ଖୁବ୍ ଆଡ଼ମ୍ବରରେ ଆମର ବିବାହ କରାଇ ଦେଲେ । କେତେକାଳ ପରେ ମୁଁ ଦୀକ୍ଷା ଗ୍ରହଣ କରି ଚନ୍ଦନବାଳାଙ୍କ ଶିଷ୍ୟା ହୋଇ ତପ ଏବଂ ଚନ୍ଦ୍ରାଦ୍ଧ କରିବାକୁ ଲାଗିଲି । ବର୍ତ୍ତମାନ ମୁଁ ତାଙ୍କ ସହ ବିହାର କରି କରି ଏହି ସହରକୁ ଆସିଛୁ । ସେଠ ପତ୍ନୀ ଏହି କଥା ଶୁଣି ଦ୍ୱାଦଶ ଶ୍ରାବକ ବ୍ରତ ସ୍ୱୀକାର କଲେ । ତରଙ୍ଗବତୀ କେବଳ ଜ୍ଞାନ ପ୍ରାପ୍ତ କରି ସିଦ୍ଧି ପାଇଲେ । ପଦ୍ମଦେବ ମଧ୍ୟ ସିଦ୍ଧ ହୋଇଗଲେ ।

ନେମିଚନ୍ଦ୍ରଙ୍କ ଅନୁସାରେ ପାଦଲିପ୍ତ ତରଙ୍ଗବତୀ ଦେଶୀ ଭାଷାରେ ରଚନା କରିଥିଲେ ।

ଏଥିରେ ସ୍ତ୍ରୀ ଆତ୍ମ ପ୍ରେମାରମ୍ଭ ଦେଖାଯାଇଛି । ତରଙ୍ଗ-ବତୀର ପ୍ରେମ ଉଦାତ୍ତ । ସେ ତ୍ୟାଗ, ସହିଷ୍ଣୁତା ଏବଂ ନିସ୍ୱାର୍ଥ ସେବାଦି ଗୁଣରେ ପୂର୍ଣ୍ଣ ।

ଘଟଣାବଳୀ ଗୋଟିଏ କେନ୍ଦ୍ରରେ ସମ୍ବଦ୍ଧ । ଦେଶ, କାଳ ଓ ବାତାବରଣ ଚିତ୍ରଣ ବି ପ୍ରଭାବଶାଳୀ ଓ ସୁସମ୍ପନ୍ନ । କଥାବସ୍ତୁ ପୂର୍ଣ୍ଣମାତ୍ରାରେ ସୁସଂଗଠିତ । ନାୟିକାର ଚରିତ୍ର-ଚିତ୍ରଣରେ ଲେଖକ ସଫଳ ହୋଇଛନ୍ତି । ନାୟକର ଚରିତ୍ର ଠିକ୍ ବିକାଶ ଲାଭ ନକରି ଦବି ଯାଇଛି । ଆତ୍ମ-କଥା ଶୈଳୀରେ ଲିଖିତ ଏହି କଥାଗ୍ରନ୍ଥ ରସପୂର୍ଣ୍ଣ ଓ ମର୍ମସ୍ପର୍ଶୀ । ଏଥିରେ କରୁଣ, ଶୃଙ୍ଗାରାଦିର

ସରସ ସୁନ୍ଦର ପରିପାକ ହୋଇପାରିଛି । ଖ୍ରୀଷ୍ଟୀୟ ପ୍ରଥମ-ଦ୍ୱିତୀୟ ଶତାବ୍ଦୀ ଲିଖିତ ଏହି ଗ୍ରନ୍ଥର କଥାତ୍ମକ ମୂଲ୍ୟ ବିଶେଷ ଉଲ୍ଲେଖ-ମାତ୍ର । ଏହି ଗ୍ରନ୍ଥର ଅନୁବାଦ ଯେକୌଣସି ଭାରତୀୟ ଭାଷା ସାହିତ୍ୟର ଶ୍ରୀବୃଦ୍ଧି କରିବ ।*

## ସୁରସୁନ୍ଦରୀ-ଚରିଅଂ (ସୁରସୁନ୍ଦରୀ-ଚରିତ୍)

୧୬ ପରିଚ୍ଛେଦ ବିଶିଷ୍ଟ ଏକ ପ୍ରେମ କଥାର ରଚୟିତା ସାଧୁ ଧନେସର (ଧନେଶ୍ୱର) । ଧନେସର ନାମ ବିଶିଷ୍ଟ ଛ ସାତଜଣ ଜୈନ ଲେଖକଙ୍କ ଦୃଷ୍ଟାନ୍ତ ପ୍ରାକୃତ ସାହିତ୍ୟରେ ମିଳେ । ଗ୍ରନ୍ଥରୁ ପ୍ରାପ୍ତ ଏକ ସୂଚନା ଅନୁସାରେ ଏହି ଧନେଶ୍ୱର 'କଥାକୋଶ ପ୍ରକରଣ' ର ରଚୟିତା ଜିନେଶ୍ୱର ସୂରୀଙ୍କ ଶିଷ୍ୟ ଓ ସେ ଚନ୍ଦ୍ରାବତୀ ନଗରରେ ଖ୍ରୀ: ୧୦୩୮ରେ ଏହି ପ୍ରେମାଖ୍ୟାନ ରଚନା କରିଛନ୍ତି । ପ୍ରତ୍ୟେକ ପରିଚ୍ଛେଦ ୨୫୦ଟି ପଦ୍ୟ ବିଶିଷ୍ଟ ଓ ମୋଟ ୪ ହଜାର ପଦ୍ୟ ସମଗ୍ର ଗ୍ରନ୍ଥରେ ପ୍ରାପ୍ତ । କଥାର ସଂଗଠନ ମୂଳକଥା ସହିତ ଅବାନ୍ତର କଥାଗୁଡ଼ିକର ସମ୍ବନ୍ଧ ଓ ଗୁମ୍ଫନ, ମାନସିକସ୍ଥିତିର ସ୍ୱାଭାବିକ ବର୍ଣ୍ଣନ, ବାତାବରଣର ସୁନ୍ଦର ସୃଷ୍ଟି, ଚରିତ୍ରର ମନୋବୈଜ୍ଞାନିକ ବିକାଶ ଇତ୍ୟାଦି ଅନେକ ଔପନ୍ୟାସିକ ଗୁଣ ଏହି କୃତିରେ ବିଦ୍ୟମାନ ।

ଆଲୋଚକମାନେ ଏହାକୁ ସରସ ଓ କାବ୍ୟ-ଗୁଣସମ୍ପନ୍ନ ରଚନା ରୂପେ ବିବେଚିତ କରନ୍ତି । ରସଗୁଡ଼ିକର ବିବିଧତାରେ

* ବିଶେଷ ଆଲୋଚନା ନିମିତ୍ତ ଦ୍ରଷ୍ଟବ୍ୟ ଡକ୍ଟର ଶାସ୍ତ୍ରୀ ପ୍ରା. ଭା. ଓ ସା: ଆଲୋଚନାତ୍ମକ ଇତିହାସ ପୃ ୪୫୦-୫୬ ଓ ନେମିବିଜ୍ଞାନ ଗ୍ରନ୍ଥମାଳା ।

କବିଙ୍କ କୌଶଳ ଉଲ୍ଲେଖଯୋଗ୍ୟ । ଏଥିରେ ଶାନ୍ତରସର ପ୍ରାଧାନ୍ୟ ରହିଛି । ବିଭିନ୍ନ ବିଷୟର ବର୍ଣ୍ଣନାରେ ଗ୍ରନ୍ଥଟି ପରିପୂର୍ଣ୍ଣ । ଉଦାହରଣ ସ୍ୱରୂପ କେଉଁଠି ସୂର୍ଯ୍ୟୋଦୟ, ବସନ୍ତ, ବନ, ସରୋବର, ନଗର, ରାଜ-ସଭା, ଯୁଦ୍ଧ, ବିବାହ, ବିରହ, ମୂର୍ଚ୍ଛା ଆଦିର ବର୍ଣ୍ଣନା ରହିଛି ଏବଂ କେଉଁଠ କେଉଁଠି ଧର୍ମ, ଆଚାର, ଅହିଂସା, ସତ୍ୟ, ସନ୍ୟାସ ସମ୍ବନ୍ଧୀୟ ଉପଦେଶ ତ କେଉଁଠି ସୁଖ–ଦୁଃଖ, ନର୍କ-ସ୍ୱର୍ଗ ଓ ସଂସାରର ଅସାରତା ସଂପର୍କରେ ଆଲୋଚନା କରାଯାଇଛି । ଅନୁପ୍ରାସ, ଯମକ, ଶ୍ଳେଷ ଆଦି ଶବ୍ଦାଲଙ୍କାରର ଅନାବଶ୍ୟକ ପ୍ରୟୋଗ ସହିତ ସଙ୍ଗେ ଅର୍ଥାଲଙ୍କାରର ସୁନ୍ଦର ପ୍ରୟୋଗ ମଧ୍ୟ ରହିଛି । ସଂସ୍କୃତ, ଅପଭ୍ରଂଶ ଓ ଗ୍ରାମ୍ୟ ଶବ୍ଦ ମଧ୍ୟ କେତେକ ସ୍ଥଳରେ ବ୍ୟବହୃତ ।

## କାଲକାଚାର୍ଯ୍ୟ-କଥାନକ

ଏହା ଏକ ଲଘୁ ଉପନ୍ୟାସ । ଉପନ୍ୟାସରେ ୧୫୬ଟି ପଦ୍ୟ ରହିଛି ଓ ଶେଷାଂଶଟି ଗଦ୍ୟ ଅଟେ । କଥାଟି ଖୁବ୍ ସରଳ ଓ ରୋଚକ । ରାଜକୁମାର କାଳକର ଜ୍ୟେଷ୍ଠ ଭଉଣୀ ସରସ୍ୱତୀଙ୍କୁ ସରସ୍ୱତୀଙ୍କୁ ଉଜ୍ଜୟିନୀର ରାଜା ଗର୍ଦ୍ଦଭିଲ୍ଲ ଚୋରାଇ ନେଇଗଲେ । କାଳକ ଲୋକଙ୍କ ମଧ୍ୟରେ ରାଜାଙ୍କ ପ୍ରତି ବିଦ୍ରୋହାତ୍ମକ ମନୋଭାବ ଜାଗରଣ କଲେ । ତା' ସଙ୍ଗେ ସଙ୍ଗେ ଚୀନ ବଂଶୀୟ ରାଜାଙ୍କୁ ଅଭ୍ୟର୍ଥନା ଜଣାଇ ତାଙ୍କ ସହାୟତାରେ ଉଜ୍ଜୟିନୀ ରାଜ୍ୟ ଉପରେ ଆକ୍ରମଣ କଲେ ଓ ନିଜର ଭଉଣୀଙ୍କୁ ଉଦ୍ଧାର କଲେ । ପରେ କାଳକ ସାଧୁ ହୋଇଯାଇ ଜୈନ ଧର୍ମର ଆଚାର୍ଯ୍ୟ ହୋଇ ପ୍ରସିଦ୍ଧି ପାଇଲେ । ଏହି କୃତିର ଶୈଳୀ ଅଳଂକୃତ ଓ କବିତ୍ୱପୂର୍ଣ୍ଣ ଅଟେ । ଏହାର ରଚନା କାଳ ଦଶମ ଶତାବ୍ଦୀ ବୋଲି ନିର୍ଦ୍ଧାରିତ ।

**ଭୁବନ-ସୁନ୍ଦରୀ**—ଏହି ନାମରେ ଏକ ପ୍ରେମାଖ୍ୟାନ ବିଜୟ ସିଂହଙ୍କ ଦ୍ୱାରା ଲିଖିତ । ଏହି କଥାର କୌଣସି ବିଶେଷତ୍ୱ ନାହିଁ । ଏହାଙ୍କ ରଚନା ତିଥି ୯୧୭ ଖ୍ରୀଷ୍ଟାବ୍ଦ ।

## ସିରି ସିରି ବାଲ-କହା (ସିରି ସିରି ବାଳ କଥା)

ସିଦ୍ଧି ଚକ୍ର ପୂଜାର ମାହାତ୍ମ୍ୟ ପ୍ରଦର୍ଶିତ କରିବା ହେଉଛି ଏହି କଥାର ଉଦ୍ଦେଶ୍ୟ । ରାଜକୁମାର ଶ୍ରୀପାଳ ଆପଣା ଗୃହଙ୍କ ନିକଟରୁ ବାଗି କରି ପଳାଇ ଯାଇ କୃଷ୍ଣ ରୋଗୀଙ୍କ ସହ ମିଶି କୁଷ୍ଠ ରୋଗରେ ଆକ୍ରାନ୍ତ ହେଲେ । ଜଣେ ରାଜା ଆପଣା ପୁତ୍ରୀ, ମଦନ-ସୁନ୍ଦରୀଙ୍କ ଉପରେ ରାଗିଥିଲେ, ଯାହା ଫଳରେ ସେ ତାଙ୍କୁ ଶ୍ରୀପାଳଙ୍କ ସହ ବାହା କରାଇ ଦେଲେ । ରାସ୍ତାରେ ଏକ ସାଧୁ ମୁନିଚନ୍ଦ୍ର ତାଙ୍କୁ ସିଦ୍ଧଚକ୍ରର ନବପଦ ପୂଜାର ଉପଦେଶ ଦେଲେ । ଭ୍ରମଣ କରୁଥିବା ସମୟରେ କିଛି ରସାୟନ ବିତ୍ ଭେଟିଲେ, ସେମାନଙ୍କ ଠାରୁ ସୁନା ପାଇ ଓ ଏକ ସିଦ୍ଧରେ 'ଜଳତାରିଣୀ' ତଥା 'ପରଶସ୍ତ୍ର ନିବାରିଣୀ' ନାମରେ ଏକ ତାନ୍ତ୍ରିକ ପାଇ ସେ ଆଗକୁ ଆଗେଇଲେ ।

କୌଶାମ୍ବୀର ଜଣେ ବଣିଆ ଧବଳ ଧନୋପାର୍ଜନ ନିମିତ୍ତ କେଉଁ ସ୍ଥାନକୁ ଯାଉଥିଲେ । ପଥରେ ତାଙ୍କର ଜଳଯାନ ଖରାପ ହୋଇଗଲା । ଶ୍ରୀପାଳ ନବପଦ ଧ୍ୟାନ କରି ତାହାଙ୍କୁ ବିପତ୍ତିରୁ ଉଦ୍ଧାର କଲେ ଓ ସେ ଜଳ ଜଳଯାହାଜରେ ଅଗ୍ରସର ହେଲେ । ରାସ୍ତାରେ ସେ ବବ୍ବର କନ୍ୟା ମଦନ ସେନା ସହ ବିବାହ କଲେ । ଦୁଇ ପତ୍ନୀଙ୍କ ସହ ରତ୍ନଦ୍ୱୀପରେ ପହଞ୍ଚିଲେ । ସେଠାରେ ରତ୍ନେଶ୍ୱର

ଦେବୀଙ୍କ ଅଞ୍ଚଳରେ ବିଦ୍ୟାଧରୀ ମଦନମଞ୍ଜୁଷା ସହ ବିବାହ କଲେ । ଧବଳ ତାକୁ ମାତ୍ର ଦେଇ ତାର ପତ୍ନୀଙ୍କୁ ବଶ୍ୟ କରିବାର ଚେଷ୍ଟା କଲେ । ଶ୍ରୀପାଳଙ୍କୁ ସମୁଦ୍ରରେ ଫୋପାଡ଼ ଦେଲା କିନ୍ତୁ ଭାଗ୍ୟ ବଶତଃ ସେ ବଞ୍ଚି ଯାଇ କୋଙ୍କଣରେ ପହଞ୍ଚିଲେ ଓ ସେଠାରେ ମଦନ ମଞ୍ଜୁଷା ସହ ବିବାହ କଲା । ପରେ ତାର ପତ୍ନୀମାନେ ଚକ୍ରେଶ୍ୱରୀ ଦେବୀଙ୍କ ସହାୟତାରେ ଆପଣା ସତୀତ୍ୱ ରକ୍ଷା କରି ଧବଳ ସହ ଆସି ସେଠାରେ ପହଞ୍ଚିଲେ । ଧବଳ କୌଣସି ଷଡ଼ଯନ୍ତ୍ର ଶୀକାର ହୋଇ ପ୍ରାଣତ୍ୟାଗ କଲେ । ଶ୍ରୀପାଳ ଖୁସିରେ ପରିବାରର ଭରଣପୋଷଣ କଲେ ।

ଏହି ଆଖ୍ୟାନଟିର ଭାଷା ସରଳ ଓ ଏଥିରେ ମହାରାଷ୍ଟ୍ରୀର ପ୍ରୟୋଗ ଦେଖିବାକୁ ମିଳେ । ଏହାର ରଚୟିତା ରତ୍ନଶେଖର ସୂରି ଚତୁର୍ଦ୍ଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ବିଦ୍ୟମାନ ଥିଲେ ।

**ନମ୍ମୟାସୁନ୍ଦରୀ କହା** (ନର୍ମଦାସୁନ୍ଦରୀ କଥା)

ଏହି କହା (କଥା) ର ରଚୟିତା ମହେନ୍ଦ୍ର ସୂରି (ସମୟ ୧୧୩୦ ଖ୍ରୀ) । ଏହି କଥାରେ ଗଦ୍ୟ ଅପେକ୍ଷା ପଦ୍ୟର ସଂଖ୍ୟା ଖୁବ୍ ବେଶୀ ।

ନର୍ମଦାସୁନ୍ଦରୀ ବହୁ ବାଧା ବିଘ୍ନ ସତ୍ତ୍ୱେ କିପରି ନିଜର ଚରିତ୍ର ରକ୍ଷା କରି ପାରିଥିଲେ ତାହା ଏଠାରେ ବର୍ଣ୍ଣିତ । ମହେଶ୍ୱର ଦତ୍ତ ସହ ନର୍ମଦାସୁନ୍ଦରୀର ବିବାହ ଅତ୍ୟନ୍ତ ଆଡ଼ମ୍ବର ସହକାରେ ହୋଇଥିଲା । ମହେଶ୍ୱର ଦତ୍ତ ନର୍ମଦାସୁନ୍ଦରୀଙ୍କୁ ସାଙ୍ଗରେ ନେଇ ଧନ ଉପାର୍ଜନ ଉଦ୍ଦେଶ୍ୟରେ ଯବନ ଦ୍ୱୀପକୁ ଗଲେ । ବାଟରେ ନିଜ ସ୍ତ୍ରୀର ଚରିତ୍ର ଉପରେ ସନ୍ଦେହ କରି ନିଦ୍ରାବସ୍ଥାରେ ତାକୁ

ଗୋଟିଏ ନିର୍ଜନ ଦ୍ୱୀପରେ ଛାଡ଼ିଦେଲେ । ନର୍ମଦା ସୁନ୍ଦରୀ ଅସହାୟ ଅବସ୍ଥାରେ ପଡ଼ି ବିଳାପ କଲା । କେତେକ ସମୟ ପରେ ସେ ତାର କକା ବୀର ଦାସ ସହ ମିଶିଲା । ସେ ତାକୁ ବବ୍ବୁରକୂଳକୁ ନେଇଗଲା । ଏଠି ବେଶ୍ୟାମାନଙ୍କର ଏକ ପଡ଼ା ଥିଲା । ସାତଶହ ବେଶ୍ୟାଙ୍କର ସ୍ୱାମିନୀ ପ୍ରସିଦ୍ଧ ଗଣିକା ହରିଣୀ ଏଠି ରହୁଥିଲା । ସମସ୍ତ ବେଶ୍ୟା ରୋଜଗାର କରି ହରିଣୀକୁ ଦିଅନ୍ତି ଓ ସେ ରାଜାଙ୍କୁ ଏକତୃତୀୟାଂଶ ବା ଚତୁର୍ଥାଂଶ ଦିଏ । ହରିଣୀ ବୀରଦାସ ବଣିକର ସମ୍ବାଦ ପାଇ ଦାସୀକୁ ତା ପାଖକୁ ପଠାଇଲା । ବୀର ଦାସ ନିଜେ ହରିଣୀ ପାଖକୁ ନଯାଇ ଅଠ ଶହ ଦ୍ରମ ପଠାଇ ଦେଲା । ଏଥିରେ ହରିଣୀ ଅତ୍ୟନ୍ତ କ୍ରୁଦ୍ଧ ହେଲା ଏବଂ ଅବସରରେ ନର୍ମଦାସୁନ୍ଦରୀକୁ ବୀର ଦାସ ବହୁତ ଖୋଜିବା ପରେ ନପାଇ ଭରତକୁ ଫେରିଲା । ଏଣେ ନର୍ମଦାସୁନ୍ଦରୀ ବେଶ୍ୟାଗୃହରେ ରହି ଆହାର ତ୍ୟାଗ କଲା । ହରିଣୀ ବେଶ୍ୟା କପଟ ସମ୍ଭାଷଣ ଦ୍ୱାରା ତାହାର ମନ ପରିବର୍ତ୍ତନ କରିବାକୁ ଚେଷ୍ଟା କଲା । ଏବଂ ଗଣିକା ହୋଇ ନିଜ ଯୌବନକୁ ଉପଭୋଗ କରିବାକୁ ତାକୁ ଉପଦେଶ ଦେଲା—'ହେ ସୁନ୍ଦରୀ, ମନୁଷ୍ୟ ଜନ୍ମ ଦୁର୍ଲଭ, ଯୌବନ କ୍ଷଣଭଙ୍ଗୁର, ବିଶେଷ ସୁଖଭୋଗ ହିଁ ଯୌବନର ଫଳ । କେବଳ ବେଶ୍ୟାମାନଙ୍କୁ ହିଁ ଏହି ଫଳ ପ୍ରାପ୍ତି ହୋଇଥାଏ, କୁଳବଧୂମାନେ ଏହି ସୁଯୋଗରୁ ବଞ୍ଚିତ । କେବଳ ଏକ ପ୍ରକାର ଭୋଜନ ପ୍ରତିଦିନ ଖାଇଲେ ଭଲ ଲାଗେନା । ପ୍ରତିଦିନ ନୂଆ ନୂଆ ଭୋଜନ ଦରକାର । ସେହିପରି ନୂଆ ନୂଆ ପୁରୁଷ ନୂଆ ନୂଆ ସୁଖଭୋଗ ଦେଇଥାନ୍ତି । ବେଶ୍ୟାମାନେ ଅମୃତ ପାନ କଲାପରି ମଦ୍ୟ ପାନ କରି ସ୍ୱଚ୍ଛନ୍ଦ ବିହାର କରନ୍ତି । ବେଶ୍ୟାବସ୍ଥା ସାକ୍ଷାତ୍ ସ୍ୱର୍ଗପରି ଜଣାଯାଏ, ଆଉ ଅଧିକା କଣ ଦରକାର ? ରତି ପରି ତୁମର ସୁନ୍ଦର ରୂପ ଦେଖି

ପୁରୁଷମାନେ ତୁମର କିଙ୍କର ହୋଇଯିବେ, ତୁମର ବଶରେ ରହି ତୁମର ମନୋଭିଳାଷ ପୂରଣ ପାଇଁ ସର୍ବସ୍ୱ ଦାନ କରିବେ ।

ଏହିପରି ବହୁବିଧ ପ୍ରଲୋଭନ ଦେଖାଇ ହରିଣୀ ନର୍ମଦା ସୁନ୍ଦରୀର ବ୍ରତ ଭଙ୍ଗ କରାଇଲେ । ଦୁଷ୍ଟ କାମୁକ ପୁରୁଷମାନଙ୍କ ଦ୍ୱାରା ବହୁ ଶାରୀରିକ ଯନ୍ତ୍ରଣା ସହିବାକୁ ପଡ଼ିଲା । ଶେଷରେ ହରିଣୀ ନାମକ ଅନ୍ୟ ଏକ ବେଶ୍ୟା ତାକୁ ନିଜ ଘରକୁ ନେଇ ବନ୍ଦିନୀ କରି ରଖିଲା । ହରିଣୀ ବେଶ୍ୟା ମଲା ପରେ ନର୍ମଦାସୁନ୍ଦରୀ ସେହି ବେଶ୍ୟାପଡ଼ାର ଠିକା ନେଲା । ରାଜ୍ୟର ରାଜା ଏହି ସୁନ୍ଦରୀର ରୂପ ଲାବଣ୍ୟର ଖବର ପାଇ ଅନୁଚରମାନଙ୍କ ଦ୍ୱାରା ତାକୁ ସବାରୀରେ ନିଜ ନିକଟକୁ ଅଣାଇଲେ । ରାସ୍ତାରେ ସବାରୀରେ ଆସୁଥିବା ସମୟରେ ଗୋଟିଏ ପାଖରେ ନର୍ମଦାସୁନ୍ଦରୀ ଓହ୍ଲାଇ ଜାଣି ଜାଣି ନିଜ ଦେହରେ କାଦୁଅ ପଙ୍କାଦି ବୋଳି ଏଣୁତେଣୁ ପାଗଳମାନଙ୍କ ପରି ବକିବାକୁ ଲାଗିଲା । ଏହା ଦେଖି ଅନୁଚର ବର୍ଗ ତାକୁ କୌଣସି ଗ୍ରହ ପୀଡ଼ିତ ଜାଣି ଚିକିତ୍ସାର ବ୍ୟବସ୍ଥା କଲେ, କିନ୍ତୁ ବାସ୍ତବ କଥା ଅଲଗା । ସେ ଜାଣିଶୁଣି ଏମିତି କରୁଥିଲା । ଏଣୁ ତାକୁ ଛାଡ଼ି ଦିଆଗଲା । ସେ କାଦୁଅ ଦେହରେ ବୋଳି ହୋଇ ଖପର ଖଣ୍ଡେ ଧରି ଭିକ ମାଗିବାକୁ ଦ୍ୱାର ଦ୍ୱାର ବୁଲିଲା । ଶେଷରେ ଜିନଦେବ ନାମକ ଶ୍ରାବକଙ୍କୁ ଦେଖି ନିଜର ଧର୍ମବନ୍ଧୁ ଜାଣି ତାର ସମସ୍ତ ଘଟଣା ବୃତ୍ତାନ୍ତ କହିଲା । ଜିନଦେବ ତାର ଦାସଙ୍କ ବନ୍ଧୁ । ସେ ନର୍ମଦାସୁନ୍ଦରୀକୁ ତାର ଦାସଙ୍କ ପାଖକୁ ନେଇଗଲେ । ଏହିପରି ବହୁ କଷ୍ଟ ଓ ସାଧନା ଫଳରେ ନର୍ମଦାସୁନ୍ଦରୀ ନିଜର ସତୀତ୍ୱ ରକ୍ଷା କରିପାରିଲା ଓ ଶେଷରେ ଶ୍ରମଣ ଦୀକ୍ଷା ଗ୍ରହଣ କଲା ।

ଏହି ଗ୍ରନ୍ଥରେ କଥାତତ୍ତ୍ୱ ଅପେକ୍ଷା କାବ୍ୟତତ୍ତ୍ୱର ପ୍ରାବଲ୍ୟ ରହିଛି । କଥାବସ୍ତୁ ଓ ଚରିତ୍ର ଚିତ୍ରଣରେ କୁଶଳତା ଦେଖାଯାଏ ।

କୁତୂହଳ ଓ ଜିଜ୍ଞାସା କଥାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବୃଦ୍ଧି ପାଉଛି । ମନୋରଂଜନ ଓ (କଥୀତ) ଉପାଦେୟ ଉଭୟ ପ୍ରଚୁର ମାତ୍ରାରେ ମିଳେ ।

**ପାଇଅକହାସଂଗହ** (ପ୍ରାକୃତ କଥା ସଂଗ୍ରହ)

ଏହି କଥାସଂଗ୍ରହର ରଚୟିତା ସମ୍ବନ୍ଧରେ ବିଶେଷ କିଛି ଜଣାଯାଏନି । ଏଥିରେ ୧୨ଟି ପ୍ରାକୃତ କଥା ସଂଗୃହୀତ । ସଂଗ୍ରହର ସମୟ ଖ୍ରୀଷ୍ଟାବ୍ଦ ୧୩୬୧ ।

ଏଥିରେ ଦାନର ମହତ୍ତ୍ୱ ଦେଖାଇବା ପାଇଁ ଧନଦେବ-ଧନଦତ୍ତ କଥା ଓ ସମ୍ୟକତ୍ୱ ଦେଖାଇବା ପାଇଁ ଶ୍ରେଷ୍ଠି କଥା, ଦାନ ବିଷୟରେ ଚଣ୍ଡଗୋପ କଥା, କୃପଣତା ପାଇଁ କୃପଣ ଶ୍ରେଷ୍ଠି କଥା ଏହିପରି ଅନିତ୍ୟତା, ତପ ଇତ୍ୟାଦି ସମ୍ବନ୍ଧୀୟ କଥା ଏହି ସଂଗ୍ରହରେ ରହିଛି ।

କନକ ନାମକ ସେଠର ଧର୍ମବତୀ ନାମ୍ନୀ ଭାର୍ଯ୍ୟା ଥିଲା । ତାର ପୁତ୍ର ଜାତ ନହେବାରୁ ସେ ଅନ୍ୟ ସ୍ତ୍ରୀ ଗ୍ରହଣ ପାଇଁ ନିଜ ସ୍ୱାମୀଙ୍କୁ କହିଲା । ଦ୍ୱିତୀୟ ବିବାହ ପରେ କାଳୀଦେବୀଙ୍କ ଉପାସନାରେ ଦୁଇ ସ୍ତ୍ରୀର ଦୁଇଟି ପୁତ୍ର ଜାତ ହେଲା ।

ଜୟଲକ୍ଷ୍ମୀ ଦେବୀ କଥାରେ ମନ୍ତ୍ର-ତନ୍ତ୍ରବେତ୍ତା ଅଘୋର ନାମକ ଯୋଗୀନ୍ଦ୍ରର ଉଲ୍ଲେଖ ମିଳେ । ରାତ୍ରିରେ ପୂଜା ସାମଗ୍ରୀ ନେଇ ସେ ନିଶ୍ଚଳ ଧ୍ୟାନରେ ଆସୀନ ହୋଇ ନଭୋଗାମିନୀ ବିଦ୍ୟା ସିଦ୍ଧ କରିବାକୁ ଲାଗିଲେ ।

ଧର୍ମଦତ୍ତ କଥାରେ ଧର୍ମଦତ୍ତ କୁମାରର କଥା ରହିଛି । ଗଜପୁର ନଗରରେ ଘଣଧବଳ ନାମକ ସେଠ୍ ରହୁଥିଲା । ଶାସନ-ଦେବୀଙ୍କୁ ଉପାସନା କରି ସେ ପୁତ୍ର ଲାଭ କଲା । ତାର ନାମ ଧର୍ମଦତ୍ତ । ଧର୍ମଦତ୍ତ ବଡ ହେବା ପରେ ତିନୋଟି କନ୍ୟାଙ୍କୁ ବିବାହ କଲା । କେତେ କାଳ ପରେ ଧନାର୍ଜନ ଉଦ୍ଦେଶ୍ୟରେ ସେ ପତ୍ନୀ ସହ ବିଦେଶକୁ ଗଲା । ରାସ୍ତାରେ କୃଷ୍ଣ ନାମକ ବ୍ରାହ୍ମଣକୁ ମିଶିଲେ ଓ ତାଙ୍କ ସହିତ ଯାତ୍ରା କଲେ । ବାଟରେ ଧର୍ମଦତ୍ତ ବ୍ରାହ୍ମଣକୁ ଗୋଟିଏ କାହାଣୀ ଶୁଣାଇବାକୁ କହିଲେ । ବ୍ରାହ୍ମଣ କହିଲେ ଯଦି ମୋତେ ୫୦୦ ଦମ୍ମ ଆଗୁଆ (advance) ଦେବ ତାହାହେଲେ ମୁଁ ଏକ ଅନୁଭବପୂର୍ଣ୍ଣ ରୋଚକପୂର୍ଣ୍ଣ କାହାଣୀ କହିବି । ଧର୍ମଦତ୍ତ ତାକୁ ୫୦୦ ଦମ୍ମ ଦେବା ପରେ ସେ କହିଲା—

ପ୍ରତ୍ୟେକ ନୀଚ ଲୋକ ସହ ମିତ୍ରତା କରିବା ଉଚିତ ନୁହେଁ । ଧର୍ମଦତ୍ତ କହିଲା କ'ଣ ଏଇଟିକ କଥା ପାଇଁ ତୁମେ ମୋଠୁ ଏତେ ଏତେ ଟଙ୍କା ମାରିନେଲ । ବ୍ରାହ୍ମଣ କହିଲା—ଯଦି ୧୦୦୦ଦମ୍ମ ଦେବ ତେବେ ଆହୁରି ସୁନ୍ଦର କାହାଣୀଏ କହିବି । ଧର୍ମଦତ୍ତ ହଜାରେ ଦମ୍ମ ଦେଲା । ବ୍ରାହ୍ମଣ କହିଲା—'ମହିଳାମାନଙ୍କୁ କେବେ ହେଲେ ବିଶ୍ୱାସ କରିବା ଉଚିତ ନୁହେ ।' ଯଦି ଏହି ଦୁଇଟିକୁ ତୁମେ ମନେ ରଖିବ ତୁମେ କେବେ ହେଲେ ହାରିବ ନାହିଁ । ଗଲାବେଳେ ବ୍ରାହ୍ମଣ ନେଇଥିବା ଜବଧାନ ମୁଠାଏ ଦେଇ କହିଲା ଯେ ଏଗୁଡିକୁ ବୁଣିବା ସଙ୍ଗେ ସଙ୍ଗେ ଗଜେଇବ । ଜବଧାନ ନେଇ ଧର୍ମଦତ୍ତ ଆଗେଇଲା । ନଗରର ରାଜାଙ୍କୁ ରତ୍ନାଦି ଉପହାର ଦେଇ ତାଙ୍କୁ ପ୍ରସନ୍ନ କଲା । ରାଜା ମଧ୍ୟ ତାଙ୍କୁ ଶୁଳ୍କ ମୁକ୍ତ କରିଦେଲେ । ସେହି ନଗରୀରେ ଗଙ୍ଗଦତ୍ତ ନାମକ ଜଣେ ଧୂର୍ତ୍ତ ରହୁଥିଲା । ଅବସର ଭଲ୍ତି ସେ

ଧର୍ମଦତ୍ତ ସହ ବନ୍ଧୁତା ସ୍ଥାପନ କଲା । ଧୀରେ ଧୀରେ ଚନ୍ଦ୍ର ଦେବୀଙ୍କ ନିକଟକୁ ମଧ୍ୟ ସେ ନିଃସଂକୋଚରେ ଯା'ଆସ କଲା ।

ଦିନେ ଧର୍ମଦତ୍ତଙ୍କୁ ରାଜା ପଚାରିଲେ—"ତୁମେ ଯଦି କୌଣସି ଆଶ୍ଚର୍ଯ୍ୟ ଦେଖିଛ କୁହ ।" ଧର୍ମଦତ୍ତ କହିଲା—ମହାରାଜ, ମୋ ପାଖରେ ଏମିତି ଯବଧାନ ଅଛି ଯାହାକୁ ବୁଣିବା ସଙ୍ଗେ ସଙ୍ଗେ ଗଜାଏ । କିନ୍ତୁ ଏ ଭିତରେ ଗଙ୍ଗଦତ୍ତ (ଧୂର୍ତ୍ତ) ଚନ୍ଦ୍ରଶ୍ରୀ ଦେବୀ ଠାରୁ ସେହି ଜବଧାନ ଏଣେ ତେଣେ କରି ଦେଇଥିଲା । ଫଳରେ ଧର୍ମ-ଦତ୍ତ ରାଜାଙ୍କ ସମକ୍ଷରେ ନିଜ ପ୍ରତିଜ୍ଞା ପୂରଣ ନ କରିପାରିବାରୁ ଲଜ୍ଜିତ ହେଲେ । ଶେଷରେ କୁଟ ନାମକ ବ୍ରାହ୍ମଣକୁ ଡକାଗଲା । "ବ୍ରାହ୍ମଣ କହିଲା ମୁଁ କହିଥିବା ଦୁଇଟି କଥା ତୁମେ ଭୁଲିଗଲ—ନୀଚ ପୁରୁଷ ସହ ମିତ୍ରତା କଲ ଓ ସ୍ତ୍ରୀମାନଙ୍କୁ ବିଶ୍ୱାସ କରିବା ଯୋଗୁଁ ତୁମର ଆଜି ଏ ଦଶା ।

ସୁନ୍ଦରୀର ପ୍ରେମ କଥା କଥା ଅତ୍ୟନ୍ତ ସରସ ଓ ମନୋ-ରଞ୍ଜକ । ଧନସାର ସେଠର କନ୍ୟା ସୁନ୍ଦରୀ ବିକ୍ରମ ରାଜାଙ୍କ ଗୁଣ ଶୁଣି ତାଙ୍କୁ ମନେ ମନେ ପ୍ରେମ କରିବାକୁ ଲାଗିଲା । ତାର ମା' ବାପା ସିଂହଳ ଦେଶର କୌଣସି ସେଠ ପୁଅ ସହ ତାର ବିବାହ ନିଶ୍ଚିତ କରିଥିଲେ । ସୁନ୍ଦରୀ ନିଜ ଚତୁରତାରେ ଗୋଟିଏ ରତ୍ନଥଳୀ ସହ ଗୋଟିଏ ଶୁଆ ରାଜାଙ୍କ ନିକଟକୁ ପଠାଇଲା । ରାଜା ଶୁଆର ପେଟ କାଟି ଏକ ସୁନ୍ଦର ହାର ଓ କସ୍ତୁରୀରେ ଲିଖିତ ଏକ ସୁନ୍ଦର ପ୍ରେମ ପତ୍ର ପାଇଲେ । ପତ୍ରରେ ଲେଖାଅଛି—

ପ୍ରାଣନାଥ ! ମୁଁ ସଦାସର୍ବଦା ତୁମରି ଗୁଣାବଳୀରେ ଲୀନ, ସେ ଅବସର କେବେ ଆସିବ, ଯେତେବେଳେ ମୋର ନେତ୍ର

ଆପଣଙ୍କର ସାକ୍ଷାତ ଦର୍ଶନ ପାଇବ । ବୈଶାଖ କୃଷ୍ଣ ଦ୍ୱାଦଶୀ ଦିନ ସିଂହଳ ଦ୍ୱୀପରେ ଜିନଦାସ ନାମକ ଶ୍ରେଷ୍ଠୀପୁତ୍ର ସହ ମୋର ବିବାହ ହେବାର ଅଛି । ନାଥ ! ମୋର ଏହି ଶରୀରକୁ ଆପଣଙ୍କ ବ୍ୟତୀତ ଅନ୍ୟ କେହି ଭୋଗ କରି ନପାରେ, ବର୍ତ୍ତମାନ ଆପଣ ଯାହା ଉଚିତ ବିଚାରୁଛନ୍ତି କରିବେ ।' ରାଜା ସ୍ୱୀୟ ଅଗ୍ନିବେତାଳ ଭୃତ୍ୟ ସାହାଯ୍ୟରେ ରତ୍ନପୁର ପହଞ୍ଚି ସୁନ୍ଦରୀ ସହ ବିବାହ କଲେ ।

ଏହି କଥାମାନ ଦୈନନ୍ଦିନ ଘଟଣା ଉପରେ ଆଶ୍ରିତ । ଏଥିରେ ସମକାଳୀନ ସାମାଜିକ ଓ ପାରିବାରିକ ଜୀବନର ଚିତ୍ର ସୁନ୍ଦର ଓ ସରଳ-ସହଜ ବୋଧଗମ୍ୟ ଭାଷାରେ ରଚିତ । ଜୀବନର ଶାଶ୍ୱତ ମୂଲ୍ୟବୋଧର ସଂଯୋଜନାରେ ପ୍ରେମ, ଶୀଳ, ତ୍ୟାଗାଦିର ସୁନ୍ଦର ଅଭିବ୍ୟଂଜନା ଦ୍ରଷ୍ଟବ୍ୟ ।

**ଆଖ୍ୟାନକ ମଣିକୋଷ**ରେ ମର୍ମଭେଦକ ବର୍ଣ୍ଣନା ନାହିଁ । ଏହାର ରଚୟିତା ନେମିଚନ୍ଦ୍ର ସୂରି । ସମସ୍ତ କଥାର ଲକ୍ଷ୍ୟ ଏକ ପ୍ରକାର । ଆଖ୍ୟାନଗୁଡ଼ିକରେ କାର୍ଯ୍ୟ, ପରିମାଣ କିଂବା ଆରମ୍ଭ, ଉତ୍କର୍ଷ ଓ ଅନ୍ତ ଏତେ ବିଶେଷତା ନାହିଁ । ଭାରତୀୟ ପୌରାଣିକ ଆଖ୍ୟାନଗୁଡ଼ିକୁ ଜୈନ ଧର୍ମର ପରିଧାନରେ ନୂଆ ରୂପରେ ଉପସ୍ଥାପିତ କରାଯାଇଛି ।

ବିଷୟ ବୈବିଧ୍ୟ ଦୃଷ୍ଟିକୋଣରୁ ଏହାର ଯଥେଷ୍ଟ ମୂଲ୍ୟ ଅଛି ।*

---

* ସବିଶେଷ ବିବରଣୀ ପାଇଁ ଦ୍ରଷ୍ଟବ୍ୟ :
ଡଃ ଜୈନ ପ୍ରା: ସାଃ ଇତିହାସ
ଡଃ ନେମୀଚନ୍ଦ୍ର ଶାସ୍ତ୍ରୀ ପ୍ରାଃ ଭା: ଓ. ଆ ଇତିହାସ ।

## ସିରିବାଲ କହା ( ଶ୍ରୀପାଳ କଥା )

ଖ୍ରୀଷ୍ଟୀୟ ୧୩୭୧ ରେ ରତ୍ନଶେଖର ସୂରି ଏହାକୁ ରଚନା କରିଥିଲେ ଓ ତାଙ୍କ ଶିଷ୍ୟ ହେମଚନ୍ଦ୍ର ଏହାକୁ ଲିପିବଦ୍ଧ କରିଥିଲେ । ଭାଷାଶୈଳୀ ସରଳ ଓ ଅଳଂକୃତ । ଉଜ୍ଜୟିନୀ ନଗରୀରେ ପ୍ରଜାପାଳ ନାମରେ ଜଣେ ରାଜା ଥିଲେ । ତାଙ୍କର ଦୁଇ ରାଣୀ ଥିଲେ । ରାଣୀ ସୌଭାଗ୍ୟ ସୁନ୍ଦରୀଙ୍କର ସୁର ସୁନ୍ଦରୀ ଓ ରାଣୀ ରୂପସୁନ୍ଦରୀଙ୍କ ମଦନସୁନ୍ଦରୀ ନାମରେ ଦୁଇ କନ୍ୟା ଥିଲେ । ଉଭୟେ ଅଧ୍ୟାପକମାନଙ୍କଠାରୁ ଲେଖ, ଗଣିତ ଲକ୍ଷଣ, ଶକୁନ, ମନ୍ତ୍ର, ତନ୍ତ୍ର ଓ ନାଟକ ପ୍ରଭୃତିରେ ଶିକ୍ଷା ଲାଭ କରିଥିଲେ । ରାଜା ବିବାହ ସମ୍ବନ୍ଧରେ କନ୍ୟାମାନଙ୍କୁ ପଚାରିବାରୁ ସୁରସୁନ୍ଦରୀ କହିଲା—'ଯେ ସମସ୍ତ କଳାରେ କୁଶଳ ହୋଇଥିବ, ତରୁଣ ହୋଇଥିବ ଓ ରୂପ-ଲାବଣ୍ୟ ସଂପନ୍ନ ହୋଇଥିବ, ସେହି ମୋର ବର ହେବ । ଯଦି ତାହାହେଁ ଅପଣ ହେମିତ ବିଚାରିବେ କରିବେ ।'

ମଦନସୁନ୍ଦରୀ କହିଲା – 'କୁଳୀନ ବାଳିକାମାନେ ନିଜ ବର ସମ୍ବନ୍ଧରେ କିଛି କହନ୍ତି ନାହିଁ । ମା-ବାପା ଯେଉଁ ବର ତାଙ୍କପାଇଁ ବାଛନ୍ତି ତାହାହିଁ ସେମାନେ ଗ୍ରହଣ କରିଥାନ୍ତି ।' ମଦନ ସୁନ୍ଦରୀ କହିଲା—'ବାପା ନିଜ କର୍ମବଳରେ ସବୁକିଛି ହୋଇପାରେ, ପୁଣ୍ୟଶୀଳ କନ୍ୟାକୁ ନୀଚ କୁଳରେ ଦେଲେ ବି ସେ ସୁଖୀ ହୁଏ; ପୁଣ୍ୟହୀନ କନ୍ୟାକୁ ଉଚ୍ଚକୁଳରେ ଦେଲେ ବି ସେ ଦୁଃଖ ଭୋଗ କରେ ।' ଏହା ଶୁଣି ରାଜା କ୍ରୋଧାନ୍ୱିତ ହୋଇ ମଦନସୁନ୍ଦରୀକୁ ଉମ୍ବର ରାଜା (କୁଷ୍ଠରୋଗୀ) ସହ ବିବାହ କରାଇ ଦେଲେ । ମଦନସୁନ୍ଦରୀ ନିଜ ପତିଙ୍କ କୁଷ୍ଠରୋଗକୁ ସିଦ୍ଧଚକ୍ର ସାହାଯ୍ୟରେ ମୁକ୍ତ କଲେ ଓ ଉମ୍ବର ରାଜା ସହ ରହୁଥିବା ସାତଶହ

କୁଷ୍ଠରୋଗୀକୁ ମଧ୍ୟ ମୁକ୍ତ କରିପାରିଥିଲେ । ସେହି ଉମ୍ବର ରାଜା ହେଉଛନ୍ତି ଶ୍ରୀପାଳ । ଯାହାଙ୍କ ବାଲ୍ୟାବସ୍ଥାରେ ପିତାର ମୃତ୍ୟୁ ପରେ ନିଜ କକାଙ୍କ ଦ୍ୱାରା ହତ୍ୟା ଭୟରେ ଶିଶୁ ଅବସ୍ଥାରେ ନିଜ ମା ଦ୍ୱାରା ରକ୍ଷା ପାଇବା ପାଇଁ ବନ ମଧ୍ୟରେ କୁଷ୍ଠରୋଗୀମାନଙ୍କ ମେଳରେ ରହି କୁଷ୍ଠ ରୋଗ ଗ୍ରସ୍ତ ହୋଇଥିଲେ । ଉମ୍ବର ନାମକ କୁଷ୍ଠ ରୋଗର ନାମାନୁସାରେ ତାଙ୍କୁ ଉମ୍ବର ରାଜା କୁହାଯାଉଥିଲା । ସେ ଥିଲେ ଚମ୍ପା ନଗରୀର ସିଂହରଥ ରାଜାଙ୍କର ପୁତ୍ର । କୁଳ ଗୌରବ ପ୍ରାପ୍ତ୍ୟାର୍ଥ ସେ ମା ଓ ପତ୍ନୀଠାରୁ ଆଦେଶ ନେଇ ବିଦେଶ ଗଲେ । ସେଠାରେ ସେ ମଦନ ମଂଜୁଷା ଓ ମଦନମଞ୍ଜରୀଙ୍କ ସହ ବିବାହ କଲେ ଓ ରାଜ୍ୟ ଲାଭ କଲେ ।

ଏହି କଥାରେ ସିଦ୍ଧି ଚକ୍ର ପୂଜାର ମହାତ୍ମ୍ୟ ପ୍ରଦର୍ଶନ କରାଯାଇଛି । ଏଥିରେ ଧାର୍ମିକ ଉପନ୍ୟାସର ସବୁ ଗୁଣ ରହିଛି । ଏଥରେ ଚରିତ୍ରର ଉତ୍‌ଥାନ ପତନ, କଥା ପ୍ରବାହର ଗତି ଓ ଦଶା ପରିବର୍ତ୍ତନର ସରସତା ଓ ରୋଚକତାଦି ଗୁଣ ବିଦ୍ୟମାନ । ଜୀବନରେ ଲକ୍ଷ୍ୟ ସିଦ୍ଧି ନିମିତ୍ତ ନିରନ୍ତର ପରିଶ୍ରମ, ପ୍ରୟାସ ଓ ସଂଯମର ମୂଲ୍ୟ ନିରୂପଣ କରାଯାଇଛି ।

## ରୟଣସେହରୀ କହା (ରତ୍ନଶେଖରୀ କଥା)

ଜିନହର୍ଷ ସୂରି ହେଉଛନ୍ତି ଏହି ଗ୍ରନ୍ଥର ରଚୟିତା । ଏହାର ରଚନାକାଳ ପଞ୍ଚଦଶ ଶତାବ୍ଦୀ । ଏଥିରେ ପର୍ବଦିନ ମାନଙ୍କର ଧର୍ମ ସାଧନର ମହତ୍ତ୍ୱ ପ୍ରଦର୍ଶିତ ।

ରତ୍ନଶେଖର ରତ୍ନପୁର ରାଜ୍ୟ ଓ ତାଙ୍କର ପ୍ରଧାନ ମନ୍ତ୍ରୀ ମତିସାଗର । ରାଜା ବସନ୍ତ ବିହାର ସମୟରେ କିନ୍ନର ଦମ୍ପତିଙ୍କ

କଥାବାର୍ତ୍ତାରୁ ରତ୍ନବତୀର ରୂପଗୁଣାଦିର ପ୍ରଶଂସା ଶୁଣି ରତ୍ନ ବତୀଙ୍କୁ ପାଇବା ପାଇଁ ଅଧୀର ହୋଇପଡ଼ିଲେ । ମନ୍ତ୍ରୀସାଗର ଯୋଗିଣୀ ବେଶ ଧାରଣ କରି ସିଂହଳଦ୍ୱୀପ ରାଜକୁମାରୀ ରତ୍ନବତୀ ପାଖରେ ପହଞ୍ଚିଲା । ରତ୍ନବତୀ ବରପ୍ରାପ୍ତି ବିଷୟରେ ଯୋଗିଣୀଙ୍କୁ ପ୍ରଶ୍ନ ପଚାରିଲା । ସେ ଉତ୍ତରରେ କହିଲା 'କାମଦେବ ମନ୍ଦିରରେ ଦ୍ୟୁତ କ୍ରୀଡ଼ା କରୁଥିବା ଯେଉଁ ବ୍ୟକ୍ତି ତୁମକୁ ମନ୍ଦିରରେ ପ୍ରବେଶ କରିବାରେ ବାଧା ଦେବ ସେ ତୁମର ବର ହେବ ।'

ମନ୍ତ୍ରୀ ଫେରି ଆସି ରାଜାଙ୍କୁ ଏ ସବୁ ଖବର ଦେଲା । ରାଜା ରତ୍ନଶେଖର ସିଂହଳ ଦ୍ୱୀପକୁ ପ୍ରସ୍ଥାନ କରି ସେଠାରେ ଥିବା କାମଦେବ ମନ୍ଦିରରେ ମନ୍ତ୍ରୀ ସହ ଦ୍ୟୁତ କ୍ରୀଡ଼ା କରିବାକୁ ଲାଗିଲେ । ରତ୍ନବତୀ ସଖୀମାନଙ୍କ ସହ ପୂଜା କରିବାକୁ ସେହି ମନ୍ଦିରକୁ ଆସିଲା । ମନ୍ଦିରରେ ପୁରୁଷମାନଙ୍କୁ ଦେଖି ସଖୀ ସେମାନଙ୍କୁ କହିଲା ଯେ ତାର ସ୍ୱାମିନୀ ରାଜକୁମାରୀ କୌଣସି ପୁରୁଷର ମୁଖ ଚାହାନ୍ତି ନାହିଁ । ମନ୍ତ୍ରୀ କହିଲେ—'ଆମର ରାଜା ରତ୍ନଶେଖର ବହୁ ଦୂରରୁ ଆସିଛନ୍ତି । ନିଜ ପରିବାର ସହ ସେ ଦ୍ୟୁତ କ୍ରୀଡ଼ା କରୁଛନ୍ତି । ସେ କୌଣସି ନାରୀର ମୁଖ ଦେଖିବାକୁ ଚାହାନ୍ତି ନାହିଁ । ଏଣୁ ତୁମେ ରାଜକୁମାରୀଙ୍କୁ କୁହ ଯେ ସେ ବର୍ତ୍ତମାନ ମନ୍ଦିର ଭିତରକୁ ଆସିବେନି । ସଖୀ ରାଜାର ରୂପର ପ୍ରଶଂସା କରି ରାଜକୁମାରୀଙ୍କୁ କହିଲା ଯେ ଜଣେ ଅପୂର୍ବ ରୂପଧାରୀ ରାଜା ମନ୍ଦିରରେ ବସି ଦ୍ୟୁତ କ୍ରୀଡ଼ା କରୁଛନ୍ତି । ରାଜକୁମାରୀଙ୍କୁ ଯୋଗିଣୀ କହିଥିବା କଥା ମନେ ପଡ଼ିଲା । ହର୍ଷରେ ପୁଲକିତ ହୋଇ ସେ ମନ୍ଦିରକୁ ପ୍ରବେଶ କଲା । ରାଜା କୁମାରୀଙ୍କୁ ଦେଖି ବସ୍ତ୍ରରେ ନିଜ ମୁହଁ ଘୋଡ଼ାଇ ଦେଲେ ।

ରତ୍ନବତୀ ପଚାରିଲେ ଯେ ରାଜା କାହିଁକି ନାରୀ ମୁଖ ଦେଖିବାକୁ ଚାହାନ୍ତି ନାହିଁ । ନାରୀମାନେ କଣ ଏମିତି ପାପ କଲେ ।

ମନ୍ତ୍ରୀ କହିଲେ— ନାରୀଙ୍କ ଚରିତ୍ର ସମ୍ବନ୍ଧରେ ମୁଁ କ'ଣ କହିବି ? ସେମାନେ ମିଥ୍ୟା କହନ୍ତି । ...'ନାରୀ ଅଜସ୍ର କୂଟ-କପଟ କରେ ଓ କରାଏ । ଅନ୍ୟ ପୁରୁଷ ପରେ ସର୍ବଦା ରକ୍ତ । ନୀଚ ସଂଗତି କରେ ।'

ରତ୍ନବତୀ କହିଲେ—କୁଳୀନ ସ୍ତ୍ରୀ ମାନଙ୍କ ସମ୍ବନ୍ଧରେ ଏ ସବୁ କଥା କୁହାଯାଇ ନପାରେ । ଯେ ଏମିତି କହେ ତାର ମନୁଷ୍ୟ ଜନ୍ମ ହିଁ ନିରର୍ଥକ ।

ଶେଷରେ ରତ୍ନଶେଖର ଓ ରତ୍ନବତୀର ଖୁବ୍ ଆଡ଼ମ୍ବରରେ ବିବାହାଦି ସମ୍ପନ୍ନ ହେଲା । ଦୁହେଁ ରତ୍ନପୁର ଫେରି ଆସିଲେ ଓ ଦୁହେଁ ଜୈନଧର୍ମ ପାଳନ କଲେ ଓ ବ୍ରତ, ଉପବାସ, ପ୍ରୌଷଧା-ଦିରେ ନିଜ ସମସ୍ତ ଅତିବାହିତ କଲେ ।

ଥରେ ରାଜା ପ୍ରୌଷଧରେ ଅଛନ୍ତି ରାଣୀ ଋତୁସ୍ନାତା ପୁତ୍ର ଲାଭ ଆଶାରେ ରାଜାଙ୍କ ନିକଟରେ ପହଞ୍ଚି ନିରାଶ ହୋଇ ଜଣେ ଦାସ ସହ ହାତୀରେ ଚାଲିଗଲେ । ରାଜା ମଧ୍ୟ ତାଙ୍କୁ ଧରିବାକୁ ଦଉଡିଲେ; କିନ୍ତୁ ଏହା ଏକ ଇନ୍ଦ୍ରଜାଲ ମାତ୍ର । ସେ ନିଜକୁ ଦରବାରରେ ରାଣୀଙ୍କ ସହ ପାଇଲେ । ଏହି ସମୟରେ ମୃତାତ୍ମା ମନ୍ତ୍ରସାଗର ଅଦୃଶ୍ୟ ଶକ୍ତି ରୂପରେ ତାର ପରୀକ୍ଷା କଥା କହି ଭ୍ରମ ଦୂର କଲେ । ପୁରାତନ ସଂସ୍କାର ଗତ ପରଂପରାକୁ ଲେଖକ ଛାଡି ପାରିନାହାନ୍ତି ।

ପାଷ, ଚରିଷ ଚିଷଣ, କଥାର ଗତି ଓ ରୋଚକତାର ଦୃଷ୍ଟିରୁ ଏହା ଏକ ଉତ୍ତମ ଉପନ୍ୟାସ ହୋଇ ପାରିଛି । ଏହାର ଶୈଳୀ ଅତ୍ୟନ୍ତ ସରସ ଓ ସୁନ୍ଦର ।

୪

# କାବ୍ୟ

ପ୍ରାକୃତ ସାହିତ୍ୟରେ କାବ୍ୟର ଏକ ବିଶିଷ୍ଟ ସ୍ଥାନ ରହିଛି । ଜୈନ ପଣ୍ଡିତମାନେ ପ୍ରାକୃତ କାବ୍ୟରେ ପ୍ରାୟ ଧର୍ମୋପଦେଶ, ଆଖ୍ୟାନ ଓ ଚରିତର ସମାବେଶ କରିଛନ୍ତି, କିନ୍ତୁ ଅଜୈନ ବିଦ୍ୱାନମାନେ କାବ୍ୟରେ ପ୍ରେମ ଓ ଶୃଙ୍ଗାରକୁ ସ୍ଥାନ ଦେଇଛନ୍ତି । ମୁକ୍ତକ ରଚନା ବୈଦିକ କାଳରୁ ପ୍ରଚଳିତ ହୋଇଥିଲେ ମଧ୍ୟ ମୁକ୍ତକ କାବ୍ୟ ପ୍ରାକୃତ ସାହିତ୍ୟର ଏକ ବିଶେଷ ଅଙ୍ଗ । ଆଚାର୍ଯ୍ୟ ଆନନ୍ଦବର୍ଦ୍ଧନଙ୍କ ମତାନୁସାରେ ମୁକ୍ତକର ରଚନା କ୍ଷେତ୍ରରେ ପ୍ରାକୃତ ସଂସ୍କୃତ ଅପେକ୍ଷା ଉନ୍ନତ । ମୁକ୍ତକର ବ୍ୟାଖ୍ୟା କରିବା ସମୟରେ ସେ (ଧ୍ୱନ୍ୟାଲୋକ ୩, ପୃ ୧୪୩-୧୪୪)ରେ ଲେଖନ୍ତି— ଏଥିରେ ପୂର୍ବାପର ପ୍ରସଂଗ ବିନା ରସାସ୍ୱାଦନ କରିହୁଏ । ଅଗ୍ନି-ପୁରାଣ (୩୩୭ — ୩୩ ପୃ ୪୨୧) ରେ ଚମତ୍କାର କ୍ଷମ ଶ୍ଳୋକକୁ ହିଁ ମୁକ୍ତକ କୁହାଯାଏ । ସଂସ୍କୃତରେ ସମସ୍ତ ଆଚାର୍ଯ୍ୟଗଣ ମୁକ୍ତକକୁ ସ୍ୱୟଂ ସଂପୂର୍ଣ୍ଣ, ଅନ୍ୟ ନିରପେକ୍ଷ ଏକ ଛନ୍ଦାତ୍ମକ ରଚନା ବୋଲି ସ୍ୱୀକାର କରନ୍ତି । ପ୍ରବନ୍ଧ କାବ୍ୟ ଓ ମୁକ୍ତକ କାବ୍ୟ ମଧ୍ୟରେ ପାର୍ଥକ୍ୟ ହେଲା—ପ୍ରବଂଧ କାବ୍ୟରେ ସାନୁବଂଧତା ରହେ, ଏଥିର କଥା ପ୍ରବାହ ନିରନ୍ତର ପ୍ରଚଳିତ ଓ ପାରସ୍ପରିକ ଆଦାନ-ପ୍ରଦାନର ଭାବନାରେ ସଂଯୋଜିତ ଥାଇ ପଦ୍ୟ ଗୋଟିଏ ଅନ୍ୟଟି ଉପରେ ଆଧାରିତ । ଯେପରି ପୂର୍ବାପର ସଂବନ୍ଧଠାରୁ ନିରପେକ୍ଷ, ମାର୍ମିକ ଖଣ୍ଡ ଅଥବା ସଂବେଦନାକୁ ପ୍ରସ୍ତୁତ କରୁଥିବା ମୁକ୍ତକ କାବ୍ୟରେ

କଥା ପ୍ରବାହପୂର୍ଣ୍ଣ ହୁଏ ନାହିଁ ଓ ପ୍ରତ୍ୟେକ ପଦ୍ୟ ପରସ୍ପର ଠାରୁ ଭିନ୍ନ । ପ୍ରବନ୍ଧ କାବ୍ୟରେ ଅଭିଧା ଓ ମୁକ୍ତକ କାବ୍ୟରେ ବ୍ୟଞ୍ଜନାର ମୁଖ୍ୟତା ରହିଥାଏ । ମୁକ୍ତକ ଅପେକ୍ଷାକୃତ ଲଘୁରଚନା ହୁଏ ତଥା ଏହାର ପ୍ରଭାବ ସୂକ୍ଷ୍ମ ଅଧିକ ଓ ବ୍ୟାପକ କମ । ମୁକ୍ତକରେ କବି ଅର୍ଥ ପ୍ରକଟ କରିବା ପାଇଁ ବନେଇ ଚୁନେଇ ନୂଆ ଶବ୍ଦ ତିଆରି କରେ । ଯାହାକୁ ବୁଝିବାକୁ ଶ୍ରୋତାକୁ ପରିକଳ୍ପିତ ପ୍ରତିଭା ଦରକାର । ପ୍ରାକୃତରେ ପ୍ରେମ, ଶୃଙ୍ଗାର, ଧର୍ମ, ଶାନ୍ତ ଓ ବୀର ରସ ସମ୍ବନ୍ଧୀୟ ସରସ ମୁକ୍ତକ କାବ୍ୟର ରଚନା ହୋଇଛି ।

ଆଚାର୍ଯ୍ୟ ହେମଚନ୍ଦ୍ର, ମୁକ୍ତକର ସଂଦାନତକ (ଯୁଗ୍ମକ), ବିଶେଷକ, କଲାପକ କୁଲକ, କୋଶ, ପ୍ରଘଟ୍ଟକ, ବିକୀର୍ଣ୍ଣ ଓ ସଂଘାତ ନାମକ ଭେଦ ସ୍ୱୀକାର କରିଛନ୍ତି । ଦୁଇଟି ପଦ୍ୟରେ ପୂର୍ଣ୍ଣ ରଚନାକୁ ସଂଦାନତକ, ତିନୋଟି ପଦ୍ୟରେ ପୂର୍ଣ୍ଣ ରଚନାକୁ ବିଶେଷକ, ଚାରୋଟି ପଦ୍ୟରେ ପୂର୍ଣ୍ଣ ରଚନାକୁ କଲାପକ ଓ ପାଞ୍ଚୋଟି ପଦ୍ୟରେ ପୂର୍ଣ୍ଣ ରଚନାକୁ କୋଶ କହନ୍ତି । ଗୋଟିଏ ଅନ୍ୟଠାରୁ ଭିନ୍ନ ମୁକ୍ତକ ପଦ୍ୟର ରଚନାକୁ କୋଶ କହନ୍ତି । ଜଣେ କବିଙ୍କ ଦ୍ୱାରା ଲିଖିତ ପଦ୍ୟ ସମୂହକୁ ପ୍ରଘଟ୍ଟକ, ଅନେକ କବିଙ୍କ ଦ୍ୱାରା ରଚିତ ପଦ୍ୟ ସମୂହକୁ ବିକୀର୍ଣ୍ଣକ ତଥା ଜଣେ କବି ଦ୍ୱାରା ଗୋଟିଏ ବିଷୟ ଉପରେ ରଚିତ ପଦ୍ୟ ସମୂହକୁ ସଂଘାତ କହନ୍ତି । ପ୍ରାକୃତର ଗାଥାସପ୍ତଶତୀ, ଉର୍ଦ୍ଧୁ ହଜାରା ଶତକ ଆଦି ତଥା ହିନ୍ଦୀ ସାହିତ୍ୟର ବିହାରୀ ସତସଈ, ମତିଶତକ, ଭାବସଂଚୂଣିକା ଆଦି ମୁକ୍ତକ କୋଶାନ୍ତର୍ଗତ । ଧ୍ୱନ୍ୟାଲୋକରେ ଆନନ୍ଦବର୍ଦ୍ଧନ ଶୃଙ୍ଗାର ରସର ବ୍ୟଞ୍ଜନାପୂର୍ଣ୍ଣ ଅମରୁଶତକର ମୁକ୍ତକଗୁଡ଼ିକ ଲଘୁ ହେଲେ ମଧ୍ୟ ଏହାର ଗୋଟିଏ ଗୋଟିଏ ମୁକ୍ତକରେ ଏତେ ରସାଭିବ୍ୟଞ୍ଜନା

ବୋଲି ସ୍ୱୀକାର କରାଯାଇଛି ଯେ ଗୋଟିଏ ଗୋଟିଏ ପ୍ରବନ୍ଧ କାବ୍ୟରେ ହୋଇପାରେ କି ନାହିଁ କହିବା ଆବଶ୍ୟକ ନାହିଁ କାରଣ ଅମଣ ଚକର ଶୃଙ୍ଗାର ମୁକ୍ତକର ପରମ୍ପରାକୁ ଆଗକୁ ବଢ଼ାଇଥିବା ଏହି ଅମର ରଚନା ପ୍ରାକୃତ ମୁକ୍ତକ ଦ୍ୱାରା ଖୁବ୍ ପ୍ରଭାବିତ ।

ପ୍ରାକୃତର ଅଧିକାଂଶ ମୁକ୍ତକ ମହାରାଷ୍ଟ୍ରୀ ପ୍ରାକୃତରେ ଲିଖିତ । ମହାକବି ଦଣ୍ଡୀ ମହାରାଷ୍ଟ୍ରୀକୁ ସର୍ବଶ୍ରେଷ୍ଠ ମାନି ତାକୁ ସୂକ୍ତି ରୂପ ରତ୍ନସାଗର କହନ୍ତି । ଉଦାହରଣ : ସେତୁବନ୍ଧ । ବଜ୍ଜାଲଗ୍ଗରେ ପ୍ରାକୃତ କାବ୍ୟକୁ ଅମୃତର ଉପମା ଦାୟକ ବୋଲି ବ୍ୟକ୍ତ କରାଯାଇ କୁହାଯାଇଛି—ଯେଉଁ ବ୍ୟକ୍ତି ଏହାକୁ ପାଠ କରିନାହାନ୍ତି ସେ କାମ କଥାର ଆନନ୍ଦ କଦାପି ପାଇପାରେ ନାହିଁ । କୋମଳ-କାନ୍ତ ପଦାବଳି ପୂର୍ଣ୍ଣ ପ୍ରାକୃତ କାବ୍ୟକୁ ମହିଳାଙ୍କ ପରି ସୁକୁମାର କୁହାଯାଇଛି ଓ ସଂସ୍କୃତ କାବ୍ୟକୁ ପୁରୁଷ ପରି କଠୋର ଭାବେ ବ୍ୟକ୍ତ କରାଯାଇଛି । ପ୍ରାକୃତ କାବ୍ୟକୁ ସର୍ବସାଧାରଣର ବୋଲି ବ୍ୟକ୍ତ କଲାବେଳେ ଜ୍ଞାନପଞ୍ଚମୀ କଥାର ଲେଖକ ମହେଶ୍ୱର ସୂରି କହନ୍ତି—ଏହାକୁ ସୁଲଳିତ ପଦର ସମାହାର କହନ୍ତି ।

ଧ୍ୱନି ପରିବର୍ତ୍ତନ ଦୃଷ୍ଟିରୁ ମହାରାଷ୍ଟ୍ରୀ ପ୍ରାକୃତ ଏକ ଅତ୍ୟନ୍ତ ସମୃଦ୍ଧଶାଳୀ ଭାଷା । ତେଣୁ କାବ୍ୟ ଓ ନାଟକରେ ଏହାର ପ୍ରଚଳନ ଖୁବ୍ ବେଶୀ । ବାକ୍ୟ ଓ ଭାଷାରୁ କଠିନ ଶବ୍ଦାବଳୀ ଦୂର କରି ତା ସ୍ଥାନରେ ସୁଲଳିତ ଶବ୍ଦ ସଂଯୋଗମାନ ବ୍ୟବହାର କଲେ ।

ପ୍ରାକୃତ କାବ୍ୟର ମୂଳରେ ପହଞ୍ଚିବାକୁ ହେଲେ ପ୍ରାଚୀନ ଜୈନ ଆଗମ ପ୍ରତି ଦୃଷ୍ଟିପାତ କରିବା ଆବଶ୍ୟକ ଏହି ଆଗମ

ପ୍ରତି ଦୃଷ୍ଟି ପାତ କରିବା ଆବଶ୍ୟକ । ଏହି ଆଗମ ଅର୍ଦ୍ଧମାଗଧୀ ପ୍ରାକୃତରେ ରଚିତ ଓ ଭଗବାନ ମହାବୀରଙ୍କ ଉପଦେଶର ଏଥିରେ ସଂକଳନ କରାଯାଇଛି । ଅଧିକାଂଶ ସୂକ୍ତ ଉପଦେଶାତ୍ମକ ଶ୍ରେଣୀଭୁକ୍ତ କିନ୍ତୁ ଏଥିରେ ବହୁ ରସାଭିବ୍ୟଞ୍ଜକତା ଦେଖାଦେଇଛି । ସାଧାରଣ କଥାରେ ମଧ୍ୟ ଏଠାରେ ଖୁବ୍ ପ୍ରଭାବୋତ୍ପାଦକ ଢଙ୍ଗରେ କୁହାଯାଇଛି ତଥା ଉପମା ଓ ଦୃଷ୍ଟାନ୍ତ ଆଦି ଅଳଂକାରର ଛଟା ସଂଯୋଜନ ଚମତ୍କାରପୂର୍ଣ୍ଣ । ଜୀବନ କ୍ଷଣଭଙ୍ଗୁର, ଏ ବିଷୟରେ ନିମ୍ନୋକ୍ତ ଗାଥା ଉଲ୍ଲେଖ ଯୋଗ୍ୟ :—

> ଅସଂଖୟଂ ଜୀବିୟମା ପମାୟଏ,
> ଜରୋବଣୀୟସ୍ସ ହୁ ଣତ୍ଥି ତାଣଂ ।
> ଏବଂ ବିୟାଣାହି ଜଣେ ପମତ୍ତେ,
> କିନ୍ନୁ ବିହିଂସା ଅଜୟା ଗହିଂତି ॥
> (ଉତ୍ତରାଧ୍ୟୟନ, ଅସଂସ୍କୃତ ଅଧ୍ୟୟନ)

ଅର୍ଥାତ୍ , ଛିଣ୍ଡିଯାଇଥିବା ଜୀବନତନ୍ତୁ ପୁଣି ଯୋଡ଼ ହୋଇ ପାରିବ ନାହିଁ, ଏଣୁ ହେ ଗୌତମ ! ତୁମେ କ୍ଷଣେ ମଧ୍ୟ ପ୍ରମାଦ କରନା । ବୃଦ୍ଧାବସ୍ଥାରେ ଗ୍ରସ୍ତ ପୁରୁଷର କୌଣସି ଆଶ୍ରୟ ନାହିଁ, ପୁଣି ଭଲ ହିଂସୁକ ଓ ପ୍ରମାଦପୂର୍ଣ୍ଣ ଜୀବ କାହାର ଶରଣ ପାଇବେ ? ଆସଂତାକାଳ ଉପରେ ବିଶ୍ୱାସ କରନା—

> ଜସ୍ସତ୍ଥି ମଚ୍ଚୁଣା ସକ୍ଖଂ, ଜସ୍ସ ବଽତ୍ଥି ପଲାୟଣଂ ।
> ଜୋ ଜାଣଇନ ମରିସ୍ସାମି, ସୋହୁ କଂଖେ ସୁଏ ସିୟା ॥
> (ଉତ୍ତରାଧ୍ୟୟନ : ଇଷୁକାରୀୟ ଅଧ୍ୟୟନ)

ଅର୍ଥାତ୍, ଯାହାର ମୃତ୍ୟୁ ସହ ମିତ୍ରତା ରହିଛି, ଅଥବା ଯେ ମୃତ୍ୟୁ ସହ ପଳାଇପାଏ ଓ ଯେ ଏହା ବିଶ୍ୱାସ କରେ ଯେ ସେ ମରିବ ନାହିଁ, ସେ ଆଗାମୀ କାଲକୁ ବିଶ୍ୱାସ କରିପାରେ ।

ଧର୍ମାଚରଣ କାହିଁକି ଆବଶ୍ୟକ ?

ଜରା ଜାବ ନ ପୀଲେଇ, ବାହ୍ମୀ ଜାବ ନ ବଡ଼୍ଢ଼ଇ ।
ଜାବଦିୟା ନ ହାୟଂତି, ଣାବ ଧମ୍ମଂ ସମାଚରେ ॥
( ଦଶବୈକାଳିକ : ଅଷ୍ଟମ ଅଧ୍ୟୟନ )

—ବୃଦ୍ଧାବସ୍ଥା ଯେଉଁ ପର୍ଯ୍ୟନ୍ତ ପୀଡ଼ା ଉତ୍ପନ୍ନ, ବ୍ୟାଧି କଷ୍ଟ ଭୋଗିପାରନ୍ତିନ ଓ ଇନ୍ଦ୍ରିୟ କ୍ଷୀଣ ହୁଏ ନାହିଁ, ସେ ପର୍ଯ୍ୟନ୍ତ ଧର୍ମର ଆଚରଣ କରିବା ଆବଶ୍ୟକ ।

ପ୍ରାକୃତ ସାହିତ୍ୟର ସୁପ୍ରସିଦ୍ଧ ମୁକ୍ତକ ରଚନା ହେଉଛି ଗାହାସତ୍ତସଈ ଓ ବଜ୍ଜାଲଗ୍ଗଂ ।

ପ୍ରାକୃତ ମହାକାବ୍ୟ ମଧ୍ୟରେ ସେତୁବନ୍ଧ, କଂସବହୋ, ଗଉଡ଼ବହୋ ଓ ଲୀଲାବଈର ସ୍ଥାନ ଉଚ୍ଚରେ ।

## ପ୍ରବନ୍ଧ କାବ୍ୟ

### ସେତୁବନ୍ଧ

ଏହା ପ୍ରାକୃତ ଭାଷାର ସର୍ବୋତ୍କୃଷ୍ଟ ମହାକାବ୍ୟ । ଏହାର ଭାଷା ମହାରାଷ୍ଟ୍ରୀ ପ୍ରାକୃତ । ଏହାର ରଚୟିତା ପ୍ରବର ସେନ ଖ୍ରୀଷ୍ଟୀୟ ପଂଚମ ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥିଲେ । ଏହି

କାବ୍ୟରେ ୧୫ଟି ଆଶ୍ୱାସ (ସର୍ଗ * ରହିଛି । ଏଥିରେ ବାନର ସେନା ସହ ଲଙ୍କାଯାତ୍ରା ଠାରୁ ଆରମ୍ଭ କରି ରାବଣ ବଧ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଛି ।

କାବ୍ୟର ଆରମ୍ଭ ଶରତ ବର୍ଣ୍ଣନାରେ ହୋଇଛି । ରାମଚନ୍ଦ୍ର ବାଳୀ ବଧ କରି ସୁଗ୍ରୀବଙ୍କୁ ରାଜା କଲେ ଏବଂ ନିଷ୍କ୍ରିୟ ଅବସ୍ଥାରେ ଅତ୍ୟନ୍ତ କଷ୍ଟରେ ବର୍ଷାଋତୁ ଅତିବାହିତ କଲେ । ଶରତ ଋତୁ ଆରମ୍ଭରେ ସୀତାଙ୍କର ଅନୁସନ୍ଧାନ ପାଇଁ ପଠାଯାଇଥିବା ହନୁମାନଙ୍କର ପ୍ରତ୍ୟାଗମନ ବିଳମ୍ବିତ ହେବାରୁ ରାମଚନ୍ଦ୍ର ସୀତା ବିଚ୍ଛେଦ ଜନିତ ଶୋକରେ ଅଭିଭୂତ ହେଲେ । ସୀତାଙ୍କ ସ୍ମୃତିରେ ରୋମାଞ୍ଚିତ ହୋଇ ରାବଣଙ୍କ ଉପରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବାନର ସେନା ସହ ଲଂକା ଯାତ୍ରାରମ୍ଭ କଲେ । ସେ ବିନ୍ଧ୍ୟ ପର୍ବତ ପାରହୋଇ ଦକ୍ଷିଣ ସାଗର ତଟରେ ପହଞ୍ଚିଲେ । ସେଠାରେ ସୁଗ୍ରୀବଙ୍କ ଭାଷଣରେ, ବାନର ସେନା ଉଲ୍ଲାସରେ ନାଚି ଉଠିଲେ । ଜାମ୍ବବାନ ସମସ୍ତ ବାନରଙ୍କୁ ଉଚିତ କାର୍ଯ୍ୟ କରିବା ପାଇଁ ବୁଝାଇ ପ୍ରେରଣା ଦେଲେ । ଏହି ସମୟରେ ଆକାଶ ମାର୍ଗରୁ ବିଭୀଷଣ ଆସି ହନୁମାନ ସହ ରାମଚନ୍ଦ୍ରଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ।

ସମୁଦ୍ରକୁ ରାମଚନ୍ଦ୍ର ବହୁ ପ୍ରାର୍ଥନା କରିବା ହେଲେ ସମୁଦ୍ର ବିଚଳିତ ହୋଇନଥିଲା । ଫଳରେ ରାମଚନ୍ଦ୍ର କ୍ରୁଦ୍ଧ ହୋଇ ଧନୁରେ ବାଣ ମାଡ଼ିଲେ । ବାଣର ପ୍ରକୋପରେ ସମୁଦ୍ର କ୍ଷୁବ୍ଧ

* ପ୍ରାକୃତୈର୍ନିର୍ମିତେ ତସ୍ମିନ୍ ସର୍ଗା ଆଶ୍ୱାସ ସଂଜ୍ଞକାଃ ।
ଛନ୍ଦସା ସ୍କନ୍ଧକେନୈତତ୍ କ୍ୱଚିଦ୍ ଗଳିତକୈରପି ॥
ସାହିତ୍ୟ ଦର୍ପଣ : ୬. ୩୨୭

ହେଲା ଏବଂ ସମୁଦ୍ରସ୍ଥିତ ଜୀବଜନ୍ତୁମାନେ ବ୍ୟାକୁଳ ହେବାକୁ ଲାଗିଲେ । ତେଣୁ ବରୁଣ ପ୍ରାର୍ଥନା କଲେ ଓ ସେତୁ ନିର୍ମାଣ ପାଇଁ ସମ୍ମତି ପ୍ରଦାନ କଲେ । ସେତୁ ନିର୍ମାଣପାଇଁ ବଡ଼ ବଡ଼ ପର୍ବତମାନଙ୍କୁ ଅଣାଗଲା ଏବଂ ଏମାନଙ୍କୁ ସମୁଦ୍ର ଗର୍ଭରେ ବନ୍ଧ ବାନ୍ଧିବା ଦେଖି ସମୁଦ୍ର ଅତ୍ୟନ୍ତ କ୍ଷୁବ୍ଧ ହୋଇ ଉଠିଲା । ବାନରମାନଙ୍କର ପ୍ରଚେଷ୍ଟା ସତ୍ତ୍ୱେ ସେତୁ ନିର୍ମାଣ ହୋଇପାରିଲା ନାହିଁ । ଫଳରେ ବାନରସେନାଗଣ ଅତ୍ୟନ୍ତ ହତୋତ୍ସାହ ହେଲେ । ସୁଗ୍ରୀବ, ନଳ ସହ ମନ୍ତ୍ରଣା ଆରମ୍ଭ କଲେ । ଅଳ୍ପ ସମୟ ମଧ୍ୟରେ ସେତୁବନ୍ଧର ନିର୍ମାଣ କାର୍ଯ୍ୟ ଶେଷ ହେଲା ଓ ବାନରସେନା ସମୁଦ୍ର ପାର ହୋଇ ଲଙ୍କାପୁରୀରେ ପହଞ୍ଚିଲେ । ଠିକ୍ ସମୟରେ ରାକ୍ଷସମାନେ ମଧ୍ୟ ରାବଣର ଆଜ୍ଞା ଅମାନ୍ୟ କରିବାକୁ ଲାଗିଲେ । ଏଥିରେ ରାମଚନ୍ଦ୍ରଙ୍କ ପ୍ରତାପ ବଢ଼ିବାକୁ ଲାଗିଲା ।

ରାବଣ ସୀତାଙ୍କୁ ସନ୍ତୁଷ୍ଟ କରି ନପାରି ରାମଚନ୍ଦ୍ରଙ୍କ ମାୟା ମୁଣ୍ଡ ଦେଖାଏ । ପତିବ୍ରତା ସୀତା କିନ୍ତୁ ଏଥିରେ ସନ୍ତୁଷ୍ଟ ଲାଭ କରିବାର ଚାର୍ଷୀ ନୁହନ୍ତି । ତାଙ୍କର ଏତାଦୃଶ ଶୋକାଭିଭୂତ ଅବସ୍ଥା ଦେଖି ତ୍ରିଜଟା ତାଙ୍କୁ ଆଶ୍ୱାସନା ଦେବାକୁ ଆସେ । ବହୁ ଆଶ୍ୱାସନା ସତ୍ତ୍ୱେ ସୀତା ତିଳେ ମାତ୍ର ସନ୍ତୁଷ୍ଟ ହୋଇନଥିଲେ । ପ୍ରାତଃକାଳରେ ବାନରମାନଙ୍କ କଳରବ ଶୁଣି ସୀତା ରାକ୍ଷସଙ୍କ ମାୟା ବୁଝିପାରିଲେ । ରାବଣର ଯୁଦ୍ଧଭେରୀ ବାଜି ଉଠିଲା । ରାକ୍ଷସମାନେ ଜାଗ୍ରତ ହେଲେ ଓ ସମ୍ଭୋଗରତ ଲଳନାମାନଙ୍କୁ ଛାଡ଼ି ଯୁଦ୍ଧ କ୍ଷେତ୍ରକୁ ଆସିଲେ । ଉଭୟ ପକ୍ଷ ମଧ୍ୟରେ ଘୋର ସଂଘର୍ଷ ଆରମ୍ଭ ହେଲା । ଯୁଦ୍ଧକ୍ଷେତ୍ରରେ ରାମଚନ୍ଦ୍ର ରାବଣଙ୍କ ଦେଖାନପାଇ କ୍ଷୁବ୍ଧ ହେଲେ । ରାକ୍ଷସମାନଙ୍କ ଉପରେ ବାଣ ବୃଷ୍ଟି

କଲେ । ମେଘନାଦ, ରାମ ଓ ଲକ୍ଷ୍ମଣଙ୍କୁ ନାଗପାଶ ବନ୍ଧନରେ ବାନ୍ଧିଲେ । ଏହାଦେଖି ଦେବତାମାନେ ବ୍ୟାକୁଳ ହେଲେ ଓ ବାନର ସେନା କିଂକର୍ତ୍ତବ୍ୟ ବିମୂଢ଼ ହେଲେ । ରାମଚନ୍ଦ୍ରଙ୍କ ଆହ୍ୱାନକ୍ରମେ ଗରୁଡ଼ ଆସି ନାଗପାଶ ବନ୍ଧନ ଫିଟାଇଲେ ଓ ପରେ ପରେ ରାବଣ ବହୁ ଆତ୍ମୀୟ ସ୍ୱଜନଙ୍କୁ ହରାଇବା ଖବର ପାଇ ଅଟ୍ଟହାସ କରି ରଣାଙ୍ଗନରେ ପ୍ରବେଶ କଲେ । ରାମଙ୍କ ବାଣରେ ଆହତ ହୋଇ ଲଙ୍କାପୁରୀରେ ପ୍ରବେଶ କରି କୁମ୍ଭକର୍ଣ୍ଣଙ୍କୁ ଜଗାଇଲେ । ଅସମୟରେ କୁମ୍ଭକର୍ଣ୍ଣ ନିଦ୍ରାଭଙ୍ଗି ଯୁଦ୍ଧ ପାଇଁ ଦୌଡ଼ିଲେ । କୁମ୍ଭକର୍ଣ୍ଣଙ୍କ ଉପସ୍ଥିତିରେ ପ୍ରଥମେ ପ୍ରଥମେ ବାନର-ସେନାମାନେ ଭୀତତ୍ରସ୍ତ ହେଲେ । ପରେ ପରେ ଉଭୟଙ୍କର ଯୁଦ୍ଧ ଲାଗିଲା ଓ କୁମ୍ଭକର୍ଣ୍ଣ ନିହତ ହେଲେ । ବିଭୀଷଣଙ୍କ ମନ୍ତ୍ରଣାରେ ଲକ୍ଷ୍ମଣ ଇନ୍ଦ୍ରଜିତକୁ ମାରିଲେ । ଇତ୍ୟବସରରେ ରାମଚନ୍ଦ୍ର ଓ ରାବଣଙ୍କ ମଧ୍ୟରେ ମୁର୍ହାମୁର୍ହି ଯୁଦ୍ଧ ଆରମ୍ଭ ହୋଇ ସାରିଥାଏ । ରାମଙ୍କ ଆକ୍ରମଣ ସତ୍ତ୍ୱେ ରାବଣଙ୍କ ଶରୀରର କୌଣସି ଅଙ୍ଗକ୍ଷୟ ହେଉନଥିଲା କିନ୍ତୁ ପରେ ପରେ ଦଶଟିଯାକ ମୁଣ୍ଡକୁ ରାମଚନ୍ଦ୍ର ଗୋଟିଏ ବାଣରେ କାଟି ପକାଇଲେ । ରାବଣ ବଧ ହେଲେ ଓ ରାବଣଙ୍କୁ ସଂସ୍କାର କରାଗଲା । ସୀତାଙ୍କୁ ଅଗ୍ନିପରୀକ୍ଷା କରି ରାମଚନ୍ଦ୍ର ଅଯୋଧ୍ୟାପୁରକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି ମହାକାବ୍ୟଟିରେ ରାବଣ ବଧ ପର୍ଯ୍ୟନ୍ତ ବର୍ଣ୍ଣନା ରହିଥିବାରୁ ଏହାକୁ 'ରାବଣ ବଧ' ବୋଲି କୁହାଯାଏ । ଅନ୍ୟାନ୍ୟ କେତେକ ସ୍ଥଳରେ ଏହାକୁ 'ଦହମୁହବହ (ଦଶମୁଖ ବଧ)' ବୋଲି ମଧ୍ୟ ନାମକରଣ କରାଯାଇଛି । ଏ କୃତିର ପ୍ରବନ୍ଧରେ ସମୁଦ୍ର, ପର୍ବତ, ସର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଆଦି ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା

ଖୁବ୍ କାବ୍ୟାତ୍ମକ । ଉତ୍ତରାର୍ଦ୍ଧରେ ମାନବ ପ୍ରକୃତିର ଚିତ୍ରଣରେ କବିଙ୍କ ଅନୁଭୂତି, ଗମ୍ଭୀରତା ଏବଂ ବ୍ୟାପକ ଦୃଷ୍ଟି ଭଙ୍ଗୀର ପରିଚୟ ମିଳେ । ଏଥିରେ ରାମଙ୍କ କ୍ଷୋଭ, ରାବଣଙ୍କ ଶଂକା, ସୀତାଙ୍କ ତ୍ରାସ, ବିଭୀଷଣଙ୍କ କୃତଜ୍ଞତା, ରାକ୍ଷସଗଣଙ୍କ ସ୍ୱଭାବସ୍ତ ଜନିତ କାର୍ଯ୍ୟକଳାପ ଆଦିର ମାନବିକ ଭାବନାର ସୂକ୍ଷ୍ମ ଚିତ୍ରଣ ରହିଛି । ବାନରସେନା ଓ ରାକ୍ଷସମାନଙ୍କ ମଧ୍ୟରେ ହୋଇଥିବା ସଂଗ୍ରାମ ଓ ଦ୍ୱନ୍ଦ୍ୱ ଯୁଦ୍ଧର ବର୍ଣ୍ଣନ ଚିତ୍ର ବସ୍ତୁତମଯ୍ୟ ଢଂଗରେ ଅଭିବ୍ୟକ୍ତ । ଏଥିରେ ବୀର-ରସର ପ୍ରାଧାନ୍ୟ ରହିଛି । ଅନ୍ୟ ରସର ମଧ୍ୟ ସମାବେଶ ରହିଛି । ଦଶମ ଆଶ୍ୱାସରେ କାମିନୀ-କେଳି ତଥା ରାକ୍ଷସୀମାନଙ୍କ ସଂବେଗ ବର୍ଣ୍ଣନା ଓ ସେମାନଙ୍କର ରୂପ-ଗୁଣ-ସୌନ୍ଦର୍ଯ୍ୟର ଚିତ୍ରଣ ଉଚ୍ଚକୋଟୀର ।

ଏହାର ପରବର୍ତ୍ତୀ କୃତମାନଙ୍କ ଅପେକ୍ଷା ଏଥିରେ ସମାସ-ଗୁମ୍ଫକର ପ୍ରୟୋଗ ଖୁବ୍ ଅଧିକ । ସମାଲୋଚକମାନଙ୍କ ମତରେ ଏଥିରେ ସଂସ୍କୃତ କାବ୍ୟ ଶୈଳୀର ଗଭୀର ପ୍ରଭାବ ରହିଛି । ଏହି କୃତିଦ୍ୱାରା ପ୍ରାକୃତ ଓ ଅପଭ୍ରଂଶ ସାହିତ୍ୟ ବିଶେଷ ପ୍ରଭାବିତ । ଏହି ଗ୍ରନ୍ଥର ପ୍ରସ୍ତୁତ କେତେକ ଟୀକା ମଧ୍ୟରେ ଆକବରଙ୍କ ସମସାମୟିକ ରାମଦାସ କୃତ 'ରାମପ୍ରଦୀପ' ପ୍ରସିଦ୍ଧ ।

## ଗଉଡ଼ବହୋ

ଏହା ଏକ ଐତିହାସିକ କାବ୍ୟ । ଏହା ଲୌକିକ ଚରିତ୍ର ଆଶ୍ରୟରେ ଲିଖିତ ଏକ ପ୍ରବନ୍ଧ କାବ୍ୟ । ଏହାର ରଚୟିତା ବପ୍ପଇରାଅ (ବାକ୍ ପତିରାଜ) । ପ୍ରାୟ ଖ୍ରୀ: ଅ: ୭୫୦ ରେ ମହାରାଷ୍ଟ୍ରୀ ପ୍ରାକୃତରେ ଏହାକୁ ରଚନା କରିଥିଲେ । ସେ

କନୌଜର ରାଜା ଯଶୋବର୍ମାଙ୍କ ଆଶ୍ରୟରେ ରହୁଥିଲେ । ଯଶୋବର୍ମାଙ୍କ ପ୍ରଶଂସାରେ ହିଁ ଏହି କାବ୍ୟ ରଚିତ । ଏଥିରେ ଗୌଡ଼ ଦେଶର ଜଣେକ ରାଜାଙ୍କ ବଧର ବର୍ଣ୍ଣନା ମାତ୍ର ଦୁଇଟି ପଦ୍ୟରେ ସମାପ୍ତ ହୋଇଛି । ଏଣୁ କଥାର ଆଖ୍ୟାନ ଦୃଷ୍ଟିରୁ ଗ୍ରନ୍ଥଟିର ନାମ ଗୌଡ଼ବହୋ ରଖାଯାଇଛି । ଭାଷା ଦୃଷ୍ଟିରୁ ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଆର୍ଯ୍ୟାଛନ୍ଦରେ ଲିଖିତ ଏହି ଗ୍ରନ୍ଥରେ ଉତ୍ପ୍ରେକ୍ଷା, ଉପମା ଏବଂ ଅର୍ଥାନ୍ତରନ୍ୟାସ ଅଳଙ୍କାରର ସୁନ୍ଦର ପ୍ରୟୋଗ ମିଳେ ।

ମଂଗଳାଚରଣରେ ବ୍ରହ୍ମା, ହରି, ନୃସିଂହ, ମହାବରାହ, ବାମନ, କୂର୍ମ, କୃଷ୍ଣ, ବଳରାମ, ଶିବ, ଗୌରୀ, ଗଣପତି, ଲକ୍ଷ୍ମୀ ଆଦିଙ୍କ ବର୍ଣ୍ଣନା ମିଳେ ।

କବି ପ୍ରଶସ୍ତିରେ ଭବଭୂତି, ବ୍ୟାସ, କାଳିଦାସ, ସୁବନ୍ଧୁ ଆଦିଙ୍କ ନାମରେ ଉଲ୍ଲେଖ କରିଥାଛନ୍ତି । କବି ପ୍ରାକୃତ ଭାଷା ସମ୍ବନ୍ଧରେ କହନ୍ତି—"ପ୍ରାକୃତ ଭାଷାରେ ନୂତନ ଅର୍ଥର ଦର୍ଶନ ହୋଇଥାଏ । ରଚନାରେ ତାହା ସମୃଦ୍ଧ ଏବଂ କୋମଳତା ହେତୁ ମାଧୁର୍ଯ୍ୟପୂର୍ଣ୍ଣ ଅଟେ । ସମସ୍ତ ଭାଷାର ସନ୍ନିବେଶ ପ୍ରାକୃତ ଭାଷାରେ ହୋଇଛି । ସମସ୍ତ ଭାଷାର ଉଦ୍‌ଭବ ପ୍ରାକୃତ ଭାଷାରୁ ହିଁ ହୋଇଛି, ଯେଉଁପରି 'ଜଳ ସମୁଦ୍ରକୁ ଯାଏ ଓ ସମୁଦ୍ରରୁ ଆସେ' । ଏହାକୁ ଅଧ୍ୟୟନ କଲେ ବିଶେଷ ପ୍ରକାରର ହର୍ଷ, ଉଲ୍ଲାସ, ଜାତ ହେବା ସଙ୍ଗେ ସଙ୍ଗେ ନେତ୍ର ବିକଶିତ ଓ ଉଜ୍ଜ୍ୱଳିତ ହୁଏ ଏବଂ ହୃଦୟ ପ୍ରଫୁଲ୍ଲିତ ହୁଏ ।

ଯଶୋବର୍ମା ଏକ କୁଳବାନ୍ ରାଜା ଯେ ସମସ୍ତ ପୃଥିବୀର ଦୁଃଖିଙ୍କୁ ବିନାଶ କରି ଇନ୍ଦ୍ରଙ୍କୁ ପ୍ରସନ୍ନ କରିଛନ୍ତି । ତାଙ୍କର ଗୁଣ-

ଗାଣମା ପୃଥିବୀର ଚତୁର୍ଦ୍ଦିଗରେ ବ୍ୟାପ୍ତ । ସେ ଯେତେବେଳେ ସେନାବାହିନୀ ସହ ଯାଆନ୍ତି ସେତେବେଳେ ପାଦର ଧୂଳିରେ ସମଗ୍ର ସ୍ୱର୍ଗ ଆଚ୍ଛାଦିତ ହୁଏ ଓ ଭୂ ଭାଗକୁ ଧାରଣ କରିଥିବା ନାଗ କଷ୍ଟ ଅନୁଭବ କରେ । ଏହିପରି ଯଶୋବର୍ମାଙ୍କ ଶକ୍ତି ଓ ସୌନ୍ଦର୍ଯ୍ୟର ସମ୍ୟକ୍ ବର୍ଣ୍ଣନା କରାଯାଇଛି । ତାଙ୍କର ସମର କୌଶଳ ଦେଖି ଦେବାଙ୍ଗନାମାନଙ୍କ ମନରେ ମନ୍ମଥ ବିକାର ଜାତ ହୋଇଛି । ମନ୍ଦରର ପକ୍ଷ ଛେଦନ କରିଥିବା ଇନ୍ଦ୍ର ମଧ୍ୟ ତାହାଙ୍କ ସହ ଏକାଠି ବସିବା ପାଇଁ ଇଚ୍ଛା ପ୍ରକାଶ କରନ୍ତି । ସେ ଶତ୍ରୁମାନଂକୁ ସ୍ୱ ଦେଶମରେ ବିନଷ୍ଟ କରିବା ସଂଗେ ସଂଗେ ସେମାନଂକୁ ନିଜ ଅଧୀନରେ ରଖନ୍ତି, ଏବଂ ସେମାନଂକର ଜଳକ୍ରୀଡ଼ା ସ୍ଥାନ ମାନଙ୍କରେ ବାରାଙ୍ଗନାମାନଙ୍କ ସହ ଜଳକ୍ରୀଡ଼ା କରନ୍ତି ।

କବି ନିଜ କାବ୍ୟର ନାୟକଙ୍କୁ ବାଳକ ହରିଙ୍କ ଅବତାର କହି ପ୍ରଳୟର ଅବଶେଷ ରୂପରେ ବର୍ଣ୍ଣନା କରିଛନ୍ତି । ଏଥିରେ ବିଶ୍ୱଦହନର ରୋମାଂଚକାରୀ ବର୍ଣ୍ଣନା ମଧ୍ୟ କରିଛନ୍ତି ।

ଯଶୋବର୍ମାଙ୍କ ଶତ୍ରୁମାନଙ୍କର ବିଧବା ରମଣୀମାନଂକର ଜୀବନ୍ତ ବର୍ଣ୍ଣନା କବି ନିଜ ଗ୍ରନ୍ଥରେ କରିଛନ୍ତି । ସେମାନଂକ ବିଳାପ, ବିକ୍ଷିପ୍ତ କେଶ ବାସ ଏବଂ ଅବିରତ ଅଶ୍ରୁ ପ୍ରବାହିତ ନୟନର ବର୍ଣ୍ଣନା ହୃଦୟ ବିଦାରକ ମର୍ମସ୍ପର୍ଶୀ ।

ବର୍ଷା ଋତୁ ପରେ ଯଶୋବର୍ମାଂକର ବିଜୟ ଯାତ୍ରା ବର୍ଣ୍ଣନା ଅତ୍ୟନ୍ତ ଆନନ୍ଦ ଦାୟକ । ଏହି ଉତ୍ସବକୁ ସୁନ୍ଦରୀ ଯୁବତୀଗଣ ନିଜ ନିଜ ଗୃହର ବାତାୟନ ମଧ୍ୟ ଦେଇ ଉପଭୋଗ କରନ୍ତି ।

ଅତଏବ ଆନନ୍ଦଦେବୀ ନିଜର ପ୍ରସାଧନକୁ ଭୁଲି, ନିଜର ଅଳଂକାରଗୁଡ଼ିକୁ ଅନ୍ୟତ୍ର ପିନ୍ଧି ଚାଲିଯାଆନ୍ତି ।

ବିଜୟ ଯାତ୍ରାରେ ବିନ୍ଧ୍ୟବାସି, ମହିଷାସୁର ମର୍ଦ୍ଦିନୀ, ଶରତ-କାଳୀନ ପୂଜାର ବର୍ଣ୍ଣନା ଆସିବନ୍ତି । ଦେଖି ଶ୍ମଶାନରେ ସାଧକଗଣ ମହାମାଂସ ବିକ୍ରୀ କରନ୍ତି । ଗୌଡ ନୃପତି ଯଶୋବର୍ମାଙ୍କ ଭୟରେ ଭୀତତ୍ରସ୍ତ ହୋଇ ସେଠାରୁ ପଳାୟନ କରନ୍ତି । ଏ ପ୍ରସଂଗରେ ଗ୍ରୀଷ୍ମ ଓ ବର୍ଷାଋତୁର ବର୍ଣ୍ଣନା ମଧ୍ୟ ଉଲ୍ଲେଖ ଯୋଗ୍ୟ ।

ଶରତକାଳ ଆଗମନରେ ବିଜୟଯାତ୍ରା ଆରମ୍ଭ ହୁଏ । କନୌଜରୁ ମଗଧ ପର୍ଯ୍ୟନ୍ତ ବିଜୟ ଯାତ୍ରାରେ ଗଲାବେଳେ ପ୍ରକୃତିର ବିଭିନ୍ନ ଋତୁ ପର୍ଯ୍ୟାୟର ଦୃଶ୍ୟ ଖୁବ୍ ଚିତ୍ତାକର୍ଷକ । ଯଶୋବର୍ମା ବିନ୍ଧ୍ୟ ପର୍ବତ ନିକଟରେ ଉପସ୍ଥିତ ହେବାପୂର୍ବରୁ ଗୌଡ଼ଦେଶାଧି-ପତି ସେଠାରୁ ପଳାୟନ କରନ୍ତି । କିନ୍ତୁ ପରେ ଧରାପଡି ଏହାଙ୍କ ଦ୍ୱାରା ନିହତ ହୁଅନ୍ତି । ଯଶୋବର୍ମା ପୂର୍ବ ଦିଗରେ ଯାତ୍ରା କରି ବିଜୟ ଶେଷରେ କନୌଜ ପ୍ରତ୍ୟାବର୍ତ୍ତନ କରନ୍ତି ।

ଏ ସମୁଦାୟ ଗ୍ରନ୍ଥରେ ପଦ୍ୟ ସଂଖ୍ୟା ମାତ୍ର ୧୨୦୯ । ବର୍ଣ୍ଣନା ପ୍ରାୟ ଶିଥିଳ ଓ ଅପ୍ରାସଂଗିକ କିନ୍ତୁ ପ୍ରକୃତି ବର୍ଣ୍ଣନା ସୁନ୍ଦର, ସଜୀବ ଓ ଜୀବନ୍ତ । ଗ୍ରାମ୍ୟ ଜୀବନର ଚିତ୍ରଣ ଖୁବ୍ ବସ୍ତୁତ ଓ ଅନୁଭୂତିପୂର୍ଣ୍ଣ ।୮

## ଲୀଲାବଈ (ଲୀଲାବତୀ)

ଲୀଲାବଈ ଗ୍ରନ୍ଥରେ କବି ନିଜର ପରିଚୟ ଦେଇ ନାମୋଲ୍ଲେଖ କରିନାହାନ୍ତି । ଏ କୃତିର ଅଜ୍ଞାତନାମା ଟୀକାକାରଙ୍କ

ଘଷାରେ—"କୁତୂହଲନାମ୍ନା ଦ୍ୱିଜେନ ବିରଚିତଂ ଲୀଳାବତୀ ନାମ କଥାରତ୍ନ ଶୃଣୁତ।" କୋଊହଲ ନାମକ ବ୍ରାହ୍ମଣ ନିଜ ପତ୍ନୀଙ୍କ ଅନୁରୋଧ କ୍ରମେ 'ମହାରାଷ୍ଟ୍ରୀ' ପ୍ରାକୃତରେ ଏହି କାବ୍ୟ ରଚନା କରିଛନ୍ତି । ଏହି କାବ୍ୟର ରଚନାକାଳ ପ୍ରାୟ ଅଷ୍ଟମ-ନବମ ଶତାବ୍ଦୀ (ଖ୍ରୀ) ବୋଲି ଧରାଯାଏ । ଏହାର ରଚୟିତା ଏକ ପଣ୍ଡିତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଡକ୍ଟର ନେମିଚନ୍ଦ୍ର ଶାସ୍ତ୍ରୀ ଏହାକୁ ଶାସ୍ତ୍ରୀୟ ମହାକାବ୍ୟ କହି ସମୀକ୍ଷା କରିଛନ୍ତି । ଏଥିରେ ସନ୍ନିବେଶିତ ରୋମାଣ୍ଟିକ କଥାବସ୍ତୁର ସଂଯୋଜନା ନାଟକୀୟ ଶୈଳୀରେ କରାଯାଇଛି । ବସ୍ତୁ-ବ୍ୟାପାର ଓ ଭାବାଭିବ୍ୟଞ୍ଜନାର ଗାମ୍ଭୀର୍ଯ୍ୟ ଏତେ ବେଶି ଯେ ଏହାକୁ ରୋମାଣ୍ଟିକ୍ ମହାକାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।* ଏହି କାବ୍ୟରେ କଥାତତ୍ତ୍ୱ ପୂର୍ଣ୍ଣମାତ୍ରାରେ ପରିଲକ୍ଷିତ—ବିବିଧ ଘଟଣା ଏବଂ ଅବାନ୍ତର କଥାମାନ ଜାଲପରି ବିଛେଇ ହୋଇ ପଡ଼ିଛି ।

ପ୍ରତିଷ୍ଠାନର ରାଜା ସାତବାହାନ ଓ ସିଂହଳ ରାଜକୁମାରୀ ଲୀଳାବତୀଙ୍କ ପ୍ରେମକଥା ଏଥିରେ ବର୍ଣ୍ଣିତ । ଅନୁଷ୍ଟୁପ୍ ଛନ୍ଦରେ ୧୮୦୦ ଗାଥା ଏଥିରେ ରହିଛି । କେତେକ ଗଦ୍ୟ ମଧ୍ୟ ଏଥିରେ ମିଳେ । ଏହାର ଶୈଳୀ ଅଳଂକୃତ ଓ ଭାଷା ପ୍ରବାହପୂର୍ଣ୍ଣ ।

କୁବଳୟାବଳୀ ବିପୁଳାଶୟ ରାଜ ଓ ଅପସରା ରମ୍ଭାଙ୍କ କନ୍ୟା । ସେ ଗନ୍ଧର୍ବ କୁମାର ଚିତ୍ରାଙ୍ଗଦଙ୍କ ପ୍ରେମରେ ଆସକ୍ତ ହୋଇଥିଲେ । ଦୁହେଁ ଗନ୍ଧର୍ବ ବିବାହ କଲେ । କୁବଳୟାବଳୀର

* ପ୍ରା. ଭାଷା ଔର ସାହିତ୍ୟକା ଆଲୋଚନାତ୍ମକ ଇତିହାସ ପୃ ୨୮୯ ।

ପିତା ଏହାଶୁଣି ଜାଣି କ୍ରୋଧରେ ଚନ୍ଦ୍ରାଙ୍ଗଦଙ୍କୁ ଶାପ ଦେବାରୁ ସେ ସୁଶୋଣନନ ନାମକ ରାକ୍ଷସ ହୋଇଗଲେ । କୁବଳୟାବଳୀ ଜୀବନ ହୋଇ ଆତ୍ମହତ୍ୟା କରିବାକୁ ବସିଲେ, କିନ୍ତୁ ତା'ର ମା' ରମ୍ଭା ଉପସ୍ଥିତ ହୋଇ ଉପଦେଶ ଦେଇ ଧୈର୍ଯ୍ୟ ଧରିବାକୁ କହି ତାଙ୍କୁ ଯକ୍ଷରାଜ ନଳକୁବେରଙ୍କ ପାଖରେ ରଖିଲେ ।

ବିଦ୍ୟାଧର ହଂସଙ୍କ ବସନ୍ତଶ୍ରୀ ଓ ଶରଦଶ୍ରୀ ନାମରେ ଦୁଇ କନ୍ୟା । ବସନ୍ତଶ୍ରୀ ନଳକୁବେରଙ୍କ ସହ ବିବାହ କରିଥିଲେ । ମହାନୁମତୀ ଏ ଦୁହିଁଙ୍କ କନ୍ୟା । ମହାନୁମତୀ ଓ କୁବଳୟାବଳୀଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରୀତି ଥିଲା । ଥରେ ସେ ଦୁହେଁ ବିମାନ ଯୋଗେ ମଳୟ ପର୍ବତକୁ ଗଲେ । ସେଠି ସିଦ୍ଧକୁମାରୀମାନଙ୍କ ସହ ଝୁଲଣ ଖେଳ ଖେଳୁ ଖେଳୁ ମହାନୁମତୀ ଓ ସିଦ୍ଧକୁମାର ମାଧବାନଳଙ୍କ ମଧ୍ୟରେ ପ୍ରେମ ହୋଇଗଲା । ଘରକୁ ଫେରି ମହାନୁମତୀ ବିରହ ପୀଡ଼ାରେ ବ୍ୟାକୁଳ ହେବାକୁ ଲାଗିଲେ । ପରେ ଜଣାଗଲା ଯେ ମାଧବାନଳଙ୍କୁ କୌଣସି ଶତ୍ରୁ ପାତାଳପୁରକୁ ନେଇ ଯାଇଛି । ମହାନୁମତୀ ଓ ତା'ର ସଖୀ କୁବଳୟାବଳୀ ମନୋରଥ ସିଦ୍ଧି ପାଇଁ ଗୋଦାବରୀ ନଦୀ ତଟରେ ଭବାନୀଙ୍କର ଉପାସନା କରିବାକୁ ଲାଗିଲେ ।

ଏତେବେଳ ଯାଏଁ ଅବାନ୍ତର କଥାର ହିଁ ପ୍ରସାର ଚାଲିଥିଲା । ପ୍ରଧାନ କଥା—ସିଂହଳ ରାଜକନ୍ୟା ଲୀଳାବତୀ ଶାରଦଶ୍ରୀଙ୍କ ଗର୍ଭରୁ ଜାତ ହୋଇଥିଲା । ଦିନେ ଲୀଳାବତୀ ରାଜା ସାତବାହନଙ୍କର ଚିତ୍ର ଦେଖି ମୋହିତ ହୋଇଗଲା । ଓ ପରେ ସ୍ୱପ୍ନରେ ମଧ୍ୟ ସେ ତାଙ୍କୁ ଦେଖିଲା । ମା' ବାପାଙ୍କ ଅନୁମତି ନେଇ

ସେ ନିଜ ପ୍ରିୟଙ୍କୁ ଖୋଜିବାକୁ ଯାତ୍ରାରମ୍ଭ କଲେ । ତାଙ୍କ ସାଙ୍ଗ ସାର୍ଥୀମାନେ ଗୋଦାବରୀ ତଟରେ ବସା କଲେ । ସେଠି ସେ ତା ମାଉସୀର ଝିଅ ମହାନୁମତୀଙ୍କୁ ଦେଖିଲେ । ସେ ବହୁଦିନ ଏକା ସାଙ୍ଗରେ ସେଠି ରହିଲେ । ଇତି ମଧ୍ୟରେ ରାଜା ସାତବାହାନ ରାଜ୍ୟ ବିସ୍ତାର ଉଦ୍ଦେଶ୍ୟରେ ସିଂହଳ ଦେଶ ଆକ୍ରମଣ କରିବାକୁ ଚାହିଁଲେ । କିନ୍ତୁ ତାଙ୍କ ସେନାପତି ବିଜୟାନନ୍ଦ ସିଂହଳ ସହ ମୈତ୍ରୀ ରକ୍ଷିବା ଭଲ ବୋଲି ପରାମର୍ଶ ଦେଲେ । ସେ ମୈତ୍ରୀ ସଂସ୍ଥାପନର ଆବାହକ ରୂପେ ସାତବାହାନ ବିଜୟାନନ୍ଦଙ୍କୁ ସିଂହଳ ଉଦ୍ଦେଶ୍ୟରେ ପଠାଇଲେ । ଗୋଦାବରୀ ନଦୀ ପାର ହୋଇ ଯାଉଥିବା ସମୟରେ ବିଜୟାନନ୍ଦଙ୍କ ନୌକା ଭାଙ୍ଗିଯିବାରୁ ସେ ଗୋଦାବରୀ ତଟରେ ରହିଗଲେ । ସେଠି ସେ ଜାଣିପାରିଲେ ଯେ ସିଂହଳ ରାଜକୁମାରୀ ସେଠାରେ ରହୁଛନ୍ତି । ସେ ଲୀଳାବତୀଙ୍କ ଅନିନ୍ଦ୍ୟ ରୂପ ବିଭବ କଥା ରାଜା ସାତବାହାନଙ୍କୁ ଜଣାଇଲେ । ସାତବାହାନ ସେନାପତିଙ୍କ ସହ ସେଠି ଉପସ୍ଥିତ ହୋଇ ଲୀଳାବତୀ ସହ ବିବାହ କରିବାକୁ ଚାହିଁଲେ । କିନ୍ତୁ ଲୀଳାବତୀ ଗୋଟିଏ ସର୍ତ୍ତରେ ବିବାହ କରିବାକୁ ଅସ୍ୱୀକାର କଲେ । ତାହା ହେଲା ଯେତେଦିନ ପର୍ଯ୍ୟନ୍ତ ମହାନୁମତୀର ପ୍ରିୟଙ୍କ ସନ୍ଧାନ ନମିଳିଛି ସେ ଯାବତ୍ ସେ ବିବାହ କରିବେ ନାହିଁ । ରାଜା ପାତାଳପୁରରୁ ମାଧବାନିଳଙ୍କୁ ଉଦ୍ଧାର କଲେ, ଅ.ସାତ ପାଇ ସେ ପୁଣି ରାଜକୁମାର ହେଲେ । ଦୈବାତ୍ ସେହି ସମୟରେ ଯକ୍ଷରାଜ ନଳକୁବେର, ବିଦ୍ୟାଧର ହଂସ ଓ ସିଂହଳରାଜ ଏକତ୍ରିତ ହେଲେ । ସମସ୍ତଙ୍କର ସମ୍ମେଳନରେ ବିବାହ କାର୍ଯ୍ୟ ସମାହିତ ହେଲା ।

ଏଥିରେ ପ୍ରାକୃତିକ ଦୃଶ୍ୟର କଳାତ୍ମକ ବର୍ଣ୍ଣନା, ପ୍ରେମିକ ଓ ପ୍ରେମିକାଙ୍କ ଦୃଢତା ପଞ୍ଚବାଣର ବିବାଦ ବର୍ଣ୍ଣନା, ଉଲ୍ଲେଖଯୋଗ୍ୟ ।

## କୁମାରପାଲ ଚରିଅ (କୁମାରପାଳ ଚରିତ)

ଏହାକୁ ଦ୍ୱ୍ୟାଶ୍ରୟ କାବ୍ୟ କୁହାଯାଏ । ହେମଚନ୍ଦ୍ର ନିଜ ବ୍ୟାକରଣର ନିୟମାବଳୀକୁ ସ୍ପଷ୍ଟ କରିବା ପାଇଁ ଏହି କାବ୍ୟକୁ ରଚନା କରିଥିଲେ । ଦ୍ୱିତୀୟ ଭାଗ ଆଠ ସର୍ଗରୁ ପ୍ରଥମ ଛଅଟି ସର୍ଗ ମହାରାଷ୍ଟ୍ରୀ ପ୍ରାକୃତର ଉଦାହରଣାଦିରେ ଓ ଅବଶିଷ୍ଟ ଦୁଇଟି ସର୍ଗରେ ଶୌରସେନୀ, ମାଗଧୀ ପୈଶାଚୀ, ଚୂଳିକାପୈଶାଚୀ ଓ ଅପଭ୍ରଂଶ ଭାଷାରେ ରଚନା କରିଥିଲେ । ସଂସ୍କୃତରେ ଭଟ୍ଟି କାବ୍ୟ ପାଣିନିଙ୍କ ଅଷ୍ଟାଧ୍ୟାୟୀ ଜ୍ଞାନ ପାଇଁ ଏହା ରଚିତ । ଏହି କାବ୍ୟର ପ୍ରଥମ ଭାଗରେ ସିଦ୍ଧହେମର ସାତ ଅଧ୍ୟାୟରେ ବର୍ଣ୍ଣିତ ସଂସ୍କୃତ ବ୍ୟାକରଣର ନିୟମ ବୁଝାଇ ସୋଲଙ୍କୀ ବଂଶର ମୂଳରାଜଙ୍କ ଠାରୁ ଆରମ୍ଭ କରି ଜୈନଧର୍ମୋପାସକ କୁମାରପାଳ ପର୍ଯ୍ୟନ୍ତ ଇତିହାସ ୨୦ଟି ସର୍ଗରେ ବର୍ଣ୍ଣିତ । ଏହିପରି ଦୁଇଟି ଉଦ୍ଦେଶ୍ୟ ସାଧିତ ହେଉଥିବାରୁ ଏହାକୁ ଦ୍ୱ୍ୟାଶ୍ରୟ କାବ୍ୟ କହନ୍ତି ।

ଅଣହିଲପୁର ନଗରରେ ରାଜା କୁମାରପାଳ ଶାସନ କରୁଥିଲେ । ସେ ନିଜ ବାହୁ ବଳରେ ରାଜ୍ୟର ସୀମା ବିସ୍ତୀର୍ଣ୍ଣ କରିଥିଲେ । ସ୍ତୁତିପାଠକମାନେ ପ୍ରାତଃକାଳରେ ସ୍ତୁତି ପାଠ ଦ୍ୱାରା ରାଜାଙ୍କୁ ଜଗାଇ ଦେଉଥିଲେ । ରାଜା ତତ୍ପରେ ନିତ୍ୟକର୍ମ କରି ତିଳକ ଲଗାଉଥିଲେ, ବ୍ରାହ୍ମଣମାନଙ୍କ ଠାରୁ ଆଶୀର୍ବାଦ ଗ୍ରହଣ

କରୁଥିଲେ, ଲୋକଙ୍କ ଗୁହାର ଶୁଣୁଥିଲେ, ମାତୃଗୃହରେ ପ୍ରବେଶ କରି ଲକ୍ଷ୍ମୀଙ୍କ ପୂଜା କରୁଥିଲେ ଓ ଶେଷରେ ହାଣୀରେ ବସି ଛନ ମନ୍ଦିରକୁ ଦର୍ଶନ ପାଇଁ ଯାଉଥିଲେ । ନିୟମାନୁଯାୟୀ ରାଜଦରବାର ବସୁଥିଲା ଓ ସଭା ଭଙ୍ଗ ପରେ ଅଶ୍ୱାରୋହଣ କରି ଧବଳ ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ମଧ୍ୟାହ୍ନ ଅତିବାହିତ ହେବାପରେ ସେ କ୍ରୀଡ଼ାର୍ଥେ ଯାଉଥିଲେ । କବିଙ୍କ ବସନ୍ତ ଋତୁର ଶୋଭା ବର୍ଣ୍ଣନା ଖୁବ୍ ରମଣୀୟ । ଏ ପ୍ରସଙ୍ଗରେ କ୍ରୀଡ଼ାରେ ମିଳିତ ନରନାରୀଙ୍କ ବିଭିନ୍ନ ଅବସ୍ଥାର ବର୍ଣ୍ଣନା ଉପଭୋଗ୍ୟ ।

ଗ୍ରୀଷ୍ମଋତୁ ବର୍ଣ୍ଣନରେ କବି ନିଦାଘର ଦାହର ଉତ୍କଟ ବର୍ଣ୍ଣନା କରିଛନ୍ତି । ଏହି ଋତୁରେ ଜଳକ୍ରୀଡ଼ାର ବର୍ଣ୍ଣନା ରହିଛି । ପଞ୍ଚମ ସର୍ଗରେ ବର୍ଷା, ହେମନ୍ତ ଓ ଶିଶିର ଋତୁମାନଙ୍କର ବର୍ଣ୍ଣନା ରହିଛି । ପଦ୍ମାବତୀ ଦେବୀଙ୍କ ପୂଜାର ବ୍ୟବସ୍ଥା କରାଯାଇଛି । ଏହି ପ୍ରସଙ୍ଗରେ ଯୁଷ୍ମଦ୍ ଶବ୍ଦର ଏକବଚନ ଓ ବହୁବଚନ ରୂପ ଗୁଡ଼ିକର ଉଦାହରଣ ପ୍ରସ୍ତୁତ କରାଯାଇଛି :

ତ୍ୱଂ ତ୍ୱାଂ ତ୍ୱୟା ତୁଭ୍ୟଂ ତ୍ୱତ୍ ତବ ତ୍ୱୟି ଆନେହି ନବାଇଂ ମାବଲ୍ଲିସୁମାଇଂ
ୟୂୟଂ ଯୁଷ୍ମାନ୍ ଯୁଷ୍ମାଭିଃ ଯୁଷ୍ମଭ୍ୟଂ ଯୁଷ୍ମତ୍ ଯୁଷ୍ମାକଂ ଯୁଷ୍ମାସୁ ଆସନଂ ଦେହି ।

ହେ ସଖି ! ତୁ, ତୁ, ତୁ, ତୁ ଓ ତୁ (ତ୍ୱଂ, ତ୍ୱାଂ, ତ୍ୱୟା, ତୁଭ୍ୟଂ, ତ୍ୱତ୍—ଏଗୁଡ଼ିକ ଯୁଷ୍ମଦ୍ ଶବ୍ଦର ପ୍ରଥମା ଏକ ବଚନର ରୂପ)— ତୁମେ ସମସ୍ତେ ନୂତନ ଫୁଲ ପୁଷ୍ପ ଆଣ । ହେ ସଖିମାନେ ତୁମେ, ତୁମେ, ତୁମେ, ତୁମେ ଓ ତୁମେ (ୟୂୟଂ, ଯୁଷ୍ମାନ୍, ଯୁଷ୍ମାଭିଃ, ଯୁଷ୍ମଭ୍ୟଂ, ଯୁଷ୍ମତ୍ ଓ ଯୁଷ୍ମାକଂ ଏଗୁଡ଼ିକ ଶବ୍ଦର ବହୁବଚନ ରୂପ)—ତୁମେ ସମସ୍ତେ ଆସନ ଆଣ ।

ଉଦ୍ୟାନରୁ ଫେରି ରାଜା ମହଲକୁ ଆସି ସନ୍ଧ୍ୟାକର୍ମ ସମାପନ କରନ୍ତି । ବିଦ୍ୟାର୍ଥୀଗଣ ସନ୍ଧ୍ୟା ସମୟରେ ନଈ'ଘୂଲେ ଖେଳାଖେଳି କରନ୍ତି ଚକ୍ରବାକ ଚକ୍ରବାକୀର ବିରହ ହୁଏ ।

ଚନ୍ଦ୍ରୋଦୟ ହୁଏ । ରାଜା ମଣ୍ଡପରେ ଆସୀନ ହୁଅନ୍ତି । ପୁରୋହିତ ମନ୍ତ୍ରପାଠ କରନ୍ତି ବାଜା ବାଜେ ଓ ବାରାଙ୍ଗନାଗଣ ଥାଳିରେ ଦୀପାବଳୀ ରଖି ଉପସ୍ଥିତ ହୁଅନ୍ତି । ରାଜାଙ୍କ ସମ୍ମୁଖରେ ସେଠ, ସାର୍ଥବାହାଦି ମହାଜନମାନେ ଆସନ ଗ୍ରହଣ କରନ୍ତି । ତାପରେ ସନ୍ଧିବିଗ୍ରହିକ ରାଜାଙ୍କ ବଳବୀର୍ଯ୍ୟ ବର୍ଣ୍ଣନା ଯଶୋଗାନ କରନ୍ତି—'ହେ ରାଜନ୍ ! ଆପଣଙ୍କ ଯୋଦ୍ଧାମାନେ କୋଙ୍କଣ ଦେଶରେ ପହଞ୍ଚି ମଲ୍ଲିକାର୍ଜୁନ ନାମକ କୋଙ୍କଣାଧୀଶଙ୍କ ସେନା ସହ ଯୁଦ୍ଧ କଲେ ଓ ଯୁଦ୍ଧରେ ମଲ୍ଲିକାର୍ଜୁନ ନିହତ ହେଲେ । ପୁଣି ଦକ୍ଷିଣ ଦିଗରେ ଦିଗ୍‌ବିଜୟ କଲେ । ପଶ୍ଚିମରେ ସିନ୍ଧୁଦେଶରେ ଆପଣଙ୍କ ଶିରୋଧାର୍ଯ୍ୟ କରାଯାଇଛି । ଯବନାଧୀଶ ଆପଣଙ୍କ ଭୟରେ ତାମ୍ବୁଲ ସେବନ ତ୍ୟାଗ କଲେ । ବାରାଣସୀ, ମଗଧ, ଗୌଡ, କାନ୍ୟକୁବ୍ଜ, ଚେଦି, ମଥୁରା ଏବଂ ଦିଲ୍ଲୀ ନରେଶଗଣ ଆପଣଙ୍କର ବଶବର୍ତ୍ତୀ ହୋଇଗଲେ ।' ଏହିପ୍ରି ଶ୍ରବଣ ପରେ ରାଜା ଶୟନାର୍ଥେ ଚାଲି ଯାଆନ୍ତି । ନିଦ୍ରାରୁ ଉଠି ପରମାର୍ଥ ଚିନ୍ତା କରନ୍ତି । ଏହି ପ୍ରସଙ୍ଗରେ ସଂସାର ପରିଭ୍ରମଣ, ସ୍ତ୍ରୀ ସଙ୍ଗ ତ୍ୟାଗ, ସ୍ଥୂଳଭଦ୍ର, ବଜ୍ରର୍ଷି ଗୌତମସ୍ୱାମୀ, ଅଭୟକୁମାର ଆଦି ମୁନି ମହାତ୍ମାମାନଙ୍କ ପ୍ରଶଂସା, ଜିନବଚନ ହୃଦୟଙ୍ଗମ କରିବା ଦ୍ୱାରା ମୋକ୍ଷ-ପ୍ରାପ୍ତି, ପଞ୍ଚପରମେଷ୍ଠିମାନଙ୍କ ନମସ୍କାର, ଶ୍ରୁତଦେବୀ ସ୍ତୁତି ଇତ୍ୟାଦି ବର୍ଣ୍ଣିତ । ଶ୍ରୁତଦେବୀ ରାଜା କୁମାରପାଳଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦିଅନ୍ତି ଓ ରାଜା ତାଙ୍କଠାରୁ ଉପଦେଶ ପ୍ରାର୍ଥନା କରନ୍ତି । ଏହି

ଉପଦେଶରେ ମାଗଧୀ, ପୈଶାଚୀ, ଚୂଳିକାପୈଶାଚୀ ଓ ଅପ-ଭ୍ରଂଶର ଉଦାହରଣ ରହିଛି । ମାଗଧୀ—

"ପୁଣ୍ଣ୍ୟେ ନଶୀଦ-ପଣ୍ଡ୍ରେ ସୁପଞ୍ଜଲେ ସୁଦ-ପଧେଣ ବଶ୍ଚନ୍ତେ
ଶଯଲ-ସୁସ୍ସ-ବଣ୍ଣଲଓଂ ଗଶ୍ଚନ୍ତେ ଲହନ୍ତି ପଲମପଦଂ ।।"

ଅର୍ଥାତ୍, ପୁଣ୍ୟାତ୍ମା, କୁଶାଗ୍ର ପ୍ରଜ୍ଞାବାନ୍, ସୁପ୍ରାଞ୍ଜଳ, ସତ୍-ମାର୍ଗର ଅନୁସରଣ କରି ସକଳ ସଂସାର ବନ୍ଧନତାର ଆଚରଣ କରି ପରମପଦ ପ୍ରାପ୍ତି ହୁଏ । ପୈଶାଚୀ—

"ସୁତି ଅରହ-ପରମମଂତା ପଢ଼ନ୍ତି ସୁଚିତ ନାରଚିତ ନ ଜୀବବଧେ
ପ୍ରାତିସ-ଜାତିସ-ଜାଣି ତତୋ ଜନୋ କବ୍ରୁତିଂ ପ୍ରାତି ।।"

ଅର୍ଥାତ୍, ଯଦି କେହି ଅହର୍ତ୍ତଙ୍କ ପରମମନ୍ତ୍ର ପାଠ କରେ, ଜୀବବଧ କରେ ନାହିଁ, ତାହାହେଲେ ଯେ କୌଣସି ଜାତିର ଲୋକ ହେଉନା କାହିଁକି ମୋକ୍ଷ ପ୍ରାପ୍ତି ହୋଇଥାଏ ।

ଏହି ମହାକାବ୍ୟର କଥାବସ୍ତୁ ମାତ୍ର ଗୋଟିଏ ଦିନକର । ଯଦିଓ କବି କଥାକୁ ବଢ଼ାଇବା ପାଇଁ ଋତୁ ବର୍ଣ୍ଣନା ଓ କ୍ରୀଡ଼ା ବର୍ଣ୍ଣନା କରିଛନ୍ତି, ତଥାପି କଥାବସ୍ତୁ ମହାକାବ୍ୟର ଯୋଗ୍ୟ ହୋଇପାରିନି । ବସ୍ତୁ ବର୍ଣ୍ଣନ ଦୃଷ୍ଟିରୁ ଏହା ଏକ ସଫଳ କୃତି । ଋତୁ, ସନ୍ଧ୍ୟା, ଉଷା, ପ୍ରାତଃ ଏବଂ ଯୁଦ୍ଧାଦିର ବର୍ଣ୍ଣନା ସଜୀବ ହୋଇପାରିଛି । କଥାରେ ଚମତ୍କାରିତା ଓ କମନୀୟତା ଉଲ୍ଲେଖ-ଯୋଗ୍ୟ । ନାୟକର ଚରିତ ଭବ୍ୟ ଓ ଉଦାତ୍ତ । ଉପମା, ଉତ୍ପ୍ରେକ୍ଷା, ଦୃଷ୍ଟାନ୍ତ, ଦୀପକ, ଅତିଶୟୋକ୍ତି, ରୂପକ ପ୍ରଭୃତି ଅଳଂକାରମାନଙ୍କର ସୁନ୍ଦର ପ୍ରୟୋଗ ଏହି କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି । ରସ ଦୃଷ୍ଟିରୁ ମଧ୍ୟ ଏହା ଏକ ଉତ୍ତମ କାବ୍ୟ । ଏହା ଶୃଙ୍ଗାର, ବୀର ଓ ଶାନ୍ତ ସମ୍ବନ୍ଧୀୟ ଶ୍ରେଷ୍ଠ ପଦର ସମାହାର ।

## ଖଣ୍ଡକାବ୍ୟ

ପ୍ରାକୃତରେ ଖଣ୍ଡକାବ୍ୟଗୁଡ଼ିକର ସଂଖ୍ୟା କମ୍ । ସାହିତ୍ୟ ଦର୍ପଣରେ ବିଶ୍ୱନାଥ ମହାପାତ୍ର ଖଣ୍ଡକାବ୍ୟ ସମ୍ବନ୍ଧରେ କହିଛନ୍ତି ଯେ—'ଖଣ୍ଡକାବ୍ୟଂ ଭବେତ୍ କାବ୍ୟ ସ୍ୟୈକଦେଶାନୁସାରିତ ।'* ଅର୍ଥାତ୍ କାବ୍ୟର ଏକ ଅଂଶକୁ ଯାହା ଅନୁସରଣ କରେ ତାହା ଖଣ୍ଡ କାବ୍ୟ । ମହାକାବ୍ୟ ପରି ଖଣ୍ଡକାବ୍ୟ ମଧ୍ୟ ପ୍ରବନ୍ଧ ପ୍ରଧାନ କାବ୍ୟ । କେବଳ ଏଥିରେ ଜୀବନର ପୂର୍ଣ୍ଣ ଚିତ୍ର ସ୍ଥାନରେ ଜୀବନ ଗୋଟିଏ ମର୍ମସ୍ପର୍ଶୀ ପକ୍ଷ ଚିତ୍ରଣ ହୋଇଥାଏ । ଅତଏବ ଖଣ୍ଡକାବ୍ୟ ଜୀବନର କୌଣସି ଏକ ମାର୍ମିକ ପକ୍ଷର ଅନୁଭୂତିର କାବ୍ୟାତ୍ମକ ଅଭିବ୍ୟଞ୍ଜନା । ଡକ୍ଟର ନେମିଚନ୍ଦ୍ର ଶାସ୍ତ୍ରୀଙ୍କ ଅନୁସାରେ ପ୍ରାକୃତ ଖଣ୍ଡକାବ୍ୟମାନଙ୍କର ନିମ୍ନଲିଖିତ ତତ୍ତ୍ୱ ବର୍ଣ୍ଣିତ†—

୧ : ଲୋକ ଜୀବନ-ଲୋକ ଜୀବନର ସାମାନ୍ୟ ଏବଂ ସହଜ ପ୍ରବୃତ୍ତି ।

୨ : ବୀରଭାବ—ବୀର ନାୟକର ଆଖ୍ୟାନର ସମାବେଶ, ଫଳରେ ଯୁଦ୍ଧ ଓ ଶୃଙ୍ଗାରର ସମନ୍ୱୟ କରି ଘୃଣା ଓ କ୍ରୋଧ, ଭୟ ଆଦିର ଆନୟନ ।

୩ : ପ୍ରେମତତ୍ତ୍ୱ—ଜନରୁଚି ଅନୁକୂଳ ପ୍ରେମତତ୍ତ୍ୱର ସମାବେଶ ।

୪ : ପୌରାଣିକତା—ପୌରାଣିକ କଥାବସ୍ତୁର ଆଶ୍ରୟ ହେତୁ ପୌରାଣିକ ମାନର ସମାବେଶ ।

୫ : ଅହିଂସା, ବୀରତ୍ୱ, ତପ, ତ୍ୟାଗ ଇତ୍ୟାଦି ସନ୍ଦେଶ ତଥା ନାନା ସାଧନାର ଉପସମୟ ରୂପ ।

* ସାହିତ୍ୟ ଦର୍ପଣ, ୬/୩୨୯ ।

† ଦ୍ରା : ପ୍ରା. ଭିର ସା. ଆ. ଇତିହାସ ପୃ ୨୯୮ ।

## କଂସବହୋ

ଏହା ଏକ ଆଖ୍ୟାନକ କାବ୍ୟ । ଏଥିରେ କଂସ ବଧ ବିଷୟ ବର୍ଣ୍ଣିତ । ଶୈଳୀରେ କାଳିଦାସ, ଭାରବି ଓ ମାଘଙ୍କ ପ୍ରଭାବ ସ୍ପଷ୍ଟ । ଶିଶୁପାଳ ବଧ ଲେଖକଙ୍କ କଂସବହୋ ଲେଖିବାର ବିଶେଷ ପ୍ରଭାବ କରିଛି ।* ମାଲବାର ପ୍ରଦେଶର ନମ୍ବିପ୍ରମ୍ ଜନ୍ମିତ ରାମପାଣିବାଦ (ଖ୍ରୀ ୧୭୦୭-୧୭୭୫) ଏହି କାବ୍ୟଟି ରଚନା କରିଥିଲେ । ସେ 'ପ୍ରାକୃତ ପ୍ରକାଶ' ଉପରେ 'ପ୍ରାକୃତ ବୃତ୍ତି' ନାମକ ଟୀକା ଓ ଉଷାନିରୁଦ୍ଧ କାବ୍ୟ ରଚନା କରିଥିଲେ ।

କଂସବହୋର କଥାବସ୍ତୁ ଶ୍ରୀମଦ୍ ଭାଗବତରୁ ଗୃହୀତ । ଏଥିରେ ଚାରୋଟି ସର୍ଗ । ସଂସ୍କୃତର ବହୁ ଛନ୍ଦ ଓ ଅଳଙ୍କାର ମଧ୍ୟ ପ୍ରଯୁକ୍ତ । ଏହାର ଭାଷା ମହାରାଷ୍ଟ୍ରୀ । ସ୍ଥାନେ ସ୍ଥାନେ ଶୌରସେନୀର ପ୍ରୟୋଗ ମଧ୍ୟ ରହିଛି । ଏହାର ଭାଷା ଶୁଦ୍ଧ ସାହିତ୍ୟିକ ପ୍ରାକୃତ, କାରଣ ଏହା କୌଣସି ଲୋକଭାଷାର ଆଶ୍ରୟରେ ଲିଖିତ ନୁହେଁ କେବଳ ପ୍ରାକୃତ ବ୍ୟାକରଣ ଅଧ୍ୟୟନ କରି ଭାଷାର ପ୍ରୟୋଗ କରାଯାଇଛି ।**

---

* Kamsavaho is sufficient to indicate the influence of classical Sanskrit writers like Kalidasa, Magha etc on our author. X X X To me it appears that Sisupalbadha was the model before our author when he composed Kamsavaho. (ଡ଼ଃ ଏନ୍ : ଉପାଧ୍ୟେ ସଂପାଦିତ କଂସବହୋ Introduction, P. XXXII)

** ପୂର୍ବୋକ୍ତ XXXIV—XXXV ପୃଃ ଦ୍ରଷ୍ଟବ୍ୟ ।

ଅକ୍ରୂର ଗୋକୁଳରେ ପହଞ୍ଚି କୃଷ୍ଣ ଓ ବଳରାମଙ୍କୁ କଂସର ସନ୍ଦେଶ ଦିଅନ୍ତି । ଧନୁ ଉତ୍ସବ ପାଇଁ ଦୁଇ ଭେଣ୍ଡା ଆମନ୍ତ୍ରିତ । ଆନନ୍ଦେ ରଥରେ ବସି ମଥୁରା ଯାତ୍ରା କରନ୍ତି । ଅକ୍ରୂର କୃଷ୍ଣଙ୍କ ବିରହାତୁର ଦୁଃଖୀ ଗୋପୀମାନଙ୍କୁ ଉପଦେଶ ଦିଅନ୍ତି । କୃଷ୍ଣ ମଥୁରା କୋଦଣ୍ଡଶାଳାରେ ପହଞ୍ଚି ଅନାୟାସରେ ଧନୁଭଙ୍ଗ କରିଦିଅନ୍ତି । ଏଠି ମଥୁରା ନଗରୀର ସରସ ବର୍ଣ୍ଣନା କରିଛନ୍ତି ।

ଜହି କଂଚଣ ଗେହ-କଂତି-କଵ୍ୱେ ।
ଗଅଣେ ବାଲ-ଦିଣେସମୋହମୁଦ୍ଧା ॥
ବିହଡେଇଣ ଦିଣେ ଵିଆସୁ ଦଗ୍ଧଂ ।
ରଅଣୀଅଂ ପି ରହଂଗଣାମ-ଜୁଗଂ ॥ (୨/୪୫)

ଅର୍ଥାତ, ଏଠି ଆକାଶ ସୋପାନରେ ଉଥିତ ହୋଇଥିବା ଭବନଗୁଡ଼ିକ କାନ୍ତିରେ ବ୍ୟାପ୍ତ, ଏଣୁ ଚକ୍ରବାକ ଯୁଗଳ ଏହାକୁ ବାଳରବି ଭାବି, ଶର୍ବରୀମାନଙ୍କ (=ରାତ୍ରମାନଙ୍କ) ରେ ସନ୍ଧି ସମୟରେ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ପୃଥକ୍ ହୁଅନ୍ତି ନାହିଁ ।

ତୃତୀୟ ସର୍ଗର ପ୍ରାତଃକାଳରେ ବନ୍ଦୀଜନଙ୍କ ବନ୍ଦନାରେ କୃଷ୍ଣ ବଳରାମ ଜାଗ୍ରତ ହୋଇ ନଗର ଦ୍ୱାରରେ ଥିବା ଚାଣୂର ଓ ମୁଷ୍ଟିକ ନାମକ ମଲ୍ଲ ସହ ଯୁଦ୍ଧ କରି ତାଙ୍କୁ ସ୍ୱର୍ଗକୁ ପଠାଇ ଦେଲେ । ଏହି ଖବର ପାଇ କ୍ରୋଧ ଜର୍ଜରିତ ହୋଇ ନିଜେ ଢାଲ, ତରବାରୀ ଧରି ଉଠି ଆସିଲା । କୃଷ୍ଣ ସେହି ମୁହୂର୍ତ୍ତରେ କଂସକୁ ଖଡ୍ଗରେ ଛେଦ କରିଦେଲେ । ସ୍ୱର୍ଗରୁ ପୁଷ୍ପ ବୃଷ୍ଟି ହେଲା, ଦୁଂଦୁଭି ବାଜି ଉଠିଲା ଓ ଦେବାଙ୍ଗନାମାନେ ଆକାଶରେ ନାଚି ଉଠିଲେ ।

କଂସର ମୃତ୍ୟୁରେ ସମସ୍ତ ଜନତା ସନ୍ତୋଷ ଲାଭ କଲେ । କୁଳଯୁବତୀ ସ୍ୱଚ୍ଛନ୍ଦ ହୋଇ ବିଚରଣ କରି ପାରିଲେ । ଯୁବକଗଣ ସଂଥିଲ୍ଲା ନି[illegible] ନଶାଣାଲେ । ଉଗ୍ରସେନ ରାଜା ହେଲେ ଓ କୃଷ୍ଣ ନିଜ ମା-ବାପାଙ୍କୁ କାରାଗାରରୁ ମୁକ୍ତ କଲେ । କୃଷ୍ଣଙ୍କ ବାଲଲୀଳା ବର୍ଣ୍ଣନା ମଧ୍ୟ ରହିଛି ।

ଭାଷା ସମ୍ବନ୍ଧରେ ଅଧ୍ୟାପକ ଏ. ଏନ୍. ଉପାଧ୍ୟାୟଙ୍କ ମତରେ ଦ୍ରଷ୍ଟବ୍ୟ—ମଧ୍ୟବର୍ତ୍ତୀ ଅଳ୍ପପ୍ରାଣ, କ, ଗ ଇତ୍ୟାଦିର ଲୋପ । ମହାପ୍ରାଣ —ଖ—, —ଘ— > —ହ— ହୁଏ । ପୂର୍ବକାଳିକ କ୍ରିୟା ରୂପ —ଊଣ ପ୍ରତ୍ୟୟାନ୍ତ; କାରକ—ସପ୍ତମୀ ଏକବଚନ ମ୍ମି ଇତ୍ୟାଦି ମହାରାଷ୍ଟ୍ରୀର ଲକ୍ଷଣ । ମାଗଧୀର ଦୃଷ୍ଟାନ୍ତ—ଅହକେ ଏବଂ ର ସ୍ଥାନରେ ବ୍ୟବହୃତ କ :—କାଲଣ<କାରଣ, ମୁହଲ< ମୁଖର । ବହୁ ଶବ୍ଦର ମଧ୍ୟବର୍ତ୍ତୀ—ତ—ଲୋପ ନ ହୋଇ> --ଦ ହୁଏ : ଅଦଥ୍ଥ<ଅତଥି, ତଦୋ<ତତଃ, ବାମଦା<ବାମତା ଇତ୍ୟାଦି । ଲମ୍ବଦୋ, କମ୍ବଦୋ, ସୁରଦୋଦରେ ପଞ୍ଚମୀ ବିଭକ୍ତିରେ —ଦୋ ପ୍ରତ୍ୟୟ ମିଳେ । ହୋଦୁ, ଅହଦୋଦୁ ରୂପମାନଙ୍କରେ —ଉ> —ଦୁ ମିଳେ । ଏହା ଶୌରସେନୀର ପ୍ରବୃତ୍ତି । ଏଥିରେ ମହାରାଷ୍ଟ୍ରୀ, ଶୌରସେନୀ ଓ ମାଗଧୀର ପ୍ରୟୋଗ ରହିଛି ।† —

## ଉସାଣିରୁଦ୍ଧ

ରମପାଣିବାଦଙ୍କ ଏହି କାବ୍ୟଟି କଂସବଧୋର ପୂର୍ବରୁ ରଚିତ । କଂସବହୋର ପ୍ରୌଢ଼ତା ଏଥିରେ ନାହିଁ । ଗ୍ରନ୍ଥର ସର୍ଗ ବିଭକ୍ତ ଏହି କାବ୍ୟ ମଧ୍ୟମ ଧରଣର ପ୍ରେମ କାବ୍ୟ । ଗଣର କନ୍ୟା

---

† ପ୍ରା: ଭା: ଓର ସା: ଅ: ଇତିହାସ ପୃ: ୩୦୫

ଉଷା ଅନିରୁଦ୍ଧଙ୍କୁ ସ୍ୱପ୍ନରେ ଦେଖିଲେ । ପ୍ରଚ୍ଛନ୍ନ ରୂପରେ ଉଷା ଘରକୁ ସେ ଅଣାଯାଇ ଦୁହେଁ କ୍ରୀଡ଼ା କରିବାକୁ ଲାଗିଲେ । ଗୁପ୍ତଚରମାନେ ଏ ଘଟଣା ଜାଣି ରାଜାଙ୍କୁ ଜଣାଇଲେ । ରାଜା ଅନିରୁଦ୍ଧଙ୍କୁ ଧରାଇ ଜେଲ୍‌ରେ ପକାଇ ଦେଲେ । ଉଷା ତାର ବିଚ୍ଛେଦରେ ବିଳାପ କରୁଥାଏ । କୃଷ୍ଣ ଏ ଖବର ପାଇ ନିଜ ନାତିର ଉଦ୍ଧାର ପାଇଁ ବାଣ ସହ ଯୁଦ୍ଧ କରିବାକୁ ବାହାରିଲେ । ବାଣର ସେନା ପରାଜିତ ହେଲେ ଏବଂ ତାର ସହାୟକ ଶିବ କୃଷ୍ଣଙ୍କୁ ସ୍ତୁତି କଲେ । ବାଣ ନିଜ କନ୍ୟା ଉଷାଙ୍କୁ ଅନିରୁଦ୍ଧ ସହ ବିବାହ କରିଦେଲେ । ଉକ୍ତ ସମୟରେ ନଗରର ନାରୀମାନେ ନିଜ ନିଜ କାମ ଛାଡ଼ି ଉଷା ଓ ଅନିରୁଦ୍ଧଙ୍କୁ ଦେଖିବାକୁ ଦୌଡ଼ିଲେ । ଭୁଲରେ କିଏ କଙ୍କଣ ସ୍ଥାନରେ ଅନ୍ୟ ଅଳଙ୍କାର ପିନ୍ଧି ପକାଇଲେ ଓ କିଏ ଖିଅିଲ ନୀବୀକୁ ହାତରେ ଧରି ଚାଲିଛି । ନାନା କ୍ରୀଡ଼ାରେ ରତ ହୋଇ ଉଷା ଓ ଅନିରୁଦ୍ଧ କାଳଯାପନ କଲେ ।

ଏହି ଖଣ୍ଡକାବ୍ୟରେ ସମସ୍ତ ପ୍ରବନ୍ଧକାବ୍ୟର ଗୁଣ ରହିଛି । କଥାବସ୍ତୁ ସରସ ହୋଇପାରିଛି । ଉଷା ଓ ଅନିରୁଦ୍ଧଙ୍କର ରୂପଗୁଣର ସୁନ୍ଦର ବର୍ଣ୍ଣନ ଅତ୍ୟନ୍ତ ଆକର୍ଷକ ଓ ମନୋହର ହୋଇ ପାରିଛି । ଉପମା, ରୂପକ, ଉତ୍ପ୍ରେକ୍ଷାଦି ଅଳଙ୍କାରର ପ୍ରୟୋଗ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି । ବୀର ଓ ଶୃଙ୍ଗାର ରସର ଭବ୍ୟ ଚିତ୍ରଣ ହୋଇପାରିଛି ।

## ମୁକ୍ତକ କାବ୍ୟ

### ଗାହାସତ୍ତସଈ ( ଗାଥାସପ୍ତଶତୀ )

ଏହି ଗ୍ରନ୍ଥଟିରେ ପ୍ରାକୃତର ଶ୍ରେଷ୍ଠତମ କବିମାନଙ୍କର ବାଛି ବାଛି ପ୍ରାୟ ସାତ ଶହ ଗାଥା ସଂଗୃହୀତ । ଏହା ୧୯୩୩ ଖ୍ରୀ. ରେ

ନିର୍ଣ୍ଣୟସାଗର ପ୍ରେସ୍ ବମ୍ବେରୁ ପ୍ରକାଶିତ । ପ୍ରଥମେ ଏହି ଗ୍ରନ୍ଥ ଗାଥା କୋଷ ନାମରେ ପରିଚିତ ଥିଲା । ବାଣଭଟ୍ଟଙ୍କ ହର୍ଷ ଚରିତରେ ଏହି ନାମର ଉଲ୍ଲେଖ ମିଳିଛି । ଉପମା, ରୂପକ ପ୍ରଭୃତି ଅଳଙ୍କାର ଦ୍ୱାରା ମଣ୍ଡିତ ଧ୍ୱନି-ଅର୍ଥ-ପ୍ରଧାନ ଏହି ଗାଥାମାନ ମହାରାଷ୍ଟ୍ରୀ ପ୍ରାକୃତରେ ଆର୍ଯ୍ୟାଛନ୍ଦରେ ଲିଖିତ । କିମ୍ବଦନ୍ତୀରୁ ଜଣାଯାଏ ସଂଗ୍ରହ କର୍ତ୍ତା କୋଟିଏ ଗାଥାରୁ ସାତଶହ ଗାଥା ବାଛି ଏଥିରେ ରଖିଛନ୍ତି ।† ଦାବ, ରୁଦ୍ରଟ, ମମ୍ମଟ, ବାଗ୍‌ଭଟ୍ଟ, ବିଶ୍ୱନାଥ ପ୍ରଭୃତି କାବ୍ୟ ଓ ଆଳଙ୍କାରିକ ଆଚାର୍ଯ୍ୟଗଣ ଏହି କାବ୍ୟକୁ ମୁକ୍ତ କଣ୍ଠରେ ପ୍ରଶଂସା କରିଛନ୍ତି । ପୁନଶ୍ଚ ଏ ସଂପର୍କରେ ଗୋବର୍ଦ୍ଧନାଚାର୍ଯ୍ୟ କହିଛନ୍ତି ଯେ କେବଳ ପ୍ରାକୃତ କାବ୍ୟରେ ହିଁ ଏତାଦୃଶ ସରସତା ମିଳେ, ସଂସ୍କୃତରେ ଏହା ମିଳେ ନାହିଁ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଏହିପରି ଉତ୍କୃଷ୍ଟ ଭାବପୂର୍ଣ୍ଣ କାବ୍ୟ ପ୍ରାକୃତରେ ରଚିତ ହୋଇଥିବା ଦେଖି କୌତୂହଳ ଜାତ ହୁଏ । ଏହି ଗ୍ରନ୍ଥର ଅନୁକରଣରେ ସଂସ୍କୃତରେ ଆର୍ଯ୍ୟାସପ୍ତଶତୀ ରଚିତ । ହର୍ଷ ଚରିତରେ ବାଣ ଲେଖିଛନ୍ତି—

ଅବିନାଶିନମଗ୍ରାମ୍ୟମକରୋତ୍ ସାତବାହନଃ ।
ବିଶୁଦ୍ଧଜାତିଭିଃ କୋଷ ରତ୍ନୈରିବ ସୁଭାଷିତୈଃ ॥

† ଦ୍ରଷ୍ଟବ୍ୟ : ପ୍ରଥମ ଶତକର ତୃତୀୟ ପଦ—

ସତ୍ତ ସଆଇଂ କଇ-ବଚ୍ଛଲେଣ କୋଡୀଅ ମଜ୍ଝଆରମ୍ମି
ହାଲେଣ ବିରଇଆଇଂ ସାଲଂକାରାଣଂ ଗାହାଣଂ ॥

(ଅର୍ଥାତ୍, ଅଳଙ୍କାର ମଣ୍ଡିତ ଏକ କୋଟି ଗାଥା ମଧ୍ୟରୁ କେବଳ ସାତ ଶହ ଗାଥା କବିବତ୍ସଳ ହାଳଙ୍କ ଦ୍ୱାରା ସଂପାଦିତ (=ସଂଗୃହୀତ) । )

ଏହି କାବ୍ୟର ପ୍ରତ୍ୟେକ ଗାଥା ସ୍ୱତନ୍ତ୍ର । ଏଥିରେ ଲୋକ ଜୀବନର ବିବିଧ ପକ୍ଷର ଜୀବନ୍ତ ଅଭିବ୍ୟକ୍ତି ହୋଇଛି । ଗାଥା-ମାନଙ୍କରେ ବର୍ଣ୍ଣିତ ଦୃଶ୍ୟ ଗ୍ରାମ୍ୟଜୀବନରୁ ନିଆଯାଇଛି । ଗ୍ରାମବାସୀମାନେ ନଗରର କୋଳାହଳରୁ ଦୂରରେ ଥିଲେ ସୁଦ୍ଧା ସେମାନଙ୍କ ହୃଦୟରେ ପ୍ରେମ, ଦୟା, ସହୃଦୟତା, ଏକ-ନିଷ୍ଠତା ପ୍ରଭୃତିର ଆଧିକ୍ୟ ଦୃଷ୍ଟ ହୁଏ । ତତ୍କାଳୀନ ଲୋକଙ୍କ ପ୍ରଥାଗୁଡ଼ିକର ସୁନ୍ଦର ଚିତ୍ରଣ ମଧ୍ୟ ମିଳେ । ଶୃଙ୍ଗାରର ବର୍ଣ୍ଣନାରେ ସଂଯୋଗ ପକ୍ଷରେ ଆଲମ୍ବନ ନାୟକ-ନାୟିକା, ସଖୀ, ଦୂତୀ, ଷଡ୍ ଋତୁ ଓ ଅନୁଭାବ, ସାତ୍ତ୍ୱିକଭାବ; ନାୟିକାମାନଙ୍କ ସ୍ୱଭାବଜ ଅଳଙ୍କାର ଇତ୍ୟାଦିର ମନୋହର ବର୍ଣ୍ଣନା ହୋଇଛି । ବିପ୍ରଯୋଗ ପକ୍ଷରେ ପୂର୍ବରାଗ, ମାନ, ପ୍ରବାସର ସାଧନ, ଗୁଣଶ୍ରବଣ, ଚିତ୍ର-ଦର୍ଶନ, ମାନମୋଚନର ଅନେକ ଉପାୟ ଏବଂ ବିପ୍ରଯୋଗଜନିତ କାମଦଶାଦିର ବର୍ଣ୍ଣନ ବର୍ଣ୍ଣିତ । ନଖଶିଖ ବର୍ଣ୍ଣନରେ କେବଳ ପରଂପରା ଭୁକ୍ତ ଉପମାନଗୁଡ଼ିକର ପ୍ରୟୋଗ କରାଯାଇ (ସେଥିରେ) ନିରୂପଣ ଦ୍ୱାରା ରସାଳପ୍ରସୂ ଚେତନାର ଏତାଦୃଶ ଅସନ୍ଦିଗ୍ଧ ନିରୂପଣ କରାଯାଇଛି ଯେ ଯେଉଁଥିରେ ପ୍ରେମ-ବିହ୍ୱଳତା, ଲାଳସା, ଅତୃପ୍ତି, ସମ୍ମିଳନ-ସୁଖ ଜନିତ ଆତ୍ମ-ବିସ୍ମୃତିର ମର୍ମସ୍ପର୍ଶୀ ଚିତ୍ର ଅଙ୍କିତ ।

ଏହି କାବ୍ୟରେ ପ୍ରେମର ଅଭିବ୍ୟଂଜନା ଅତ୍ୟନ୍ତ ଗମ୍ଭୀର । ପାର୍ଥିବ ପ୍ରେମର ପୂର୍ଣ୍ଣ ବିକାଶ, ବିଳାସ, ନୈସର୍ଗିକ ଏବଂ କମନୀୟ ଭାବରେ ପ୍ରତିଫଳିତ । ପ୍ରେମ ଏବଂ ସୌନ୍ଦର୍ଯ୍ୟର ଚିତ୍ରଣ ଉତ୍ତରୋତ୍ତର ସୂକ୍ଷ୍ମ ଏବଂ ଅଲୌକିକ ହୋଇ ଯାଇଛି । ଶୃଂଗାର ଜନିତ ସ୍ତମ୍ଭ, ରୋମାଞ୍ଚ, ସ୍ୱରଭଂଗ, କଂପ ଆଦି ହେତୁ ଉପରେ ପୂର୍ଣ୍ଣ ବର୍ଣ୍ଣନା

ରହିଛି । ଶୃଙ୍ଗାର ରସର ଅଭିବ୍ୟକ୍ତି କୌଣସି ନିର୍ଦ୍ଦିଷ୍ଟ ପ୍ରକାରର ନାୟକ ନାୟିକାଙ୍କୁ ଲକ୍ଷ୍ୟ କରି କରାଯାଏ ନାହିଁ । ବରଂ ସାଧାରଣ ନାୟକ ନାୟିକାମାନଙ୍କର ମାନସିକ ଅବସ୍ଥାର ଚିତ୍ରଣ କରାଯାଇଛି ।

ପ୍ରତ୍ୟେକ ଗାଥାରେ କୌଣସି ନା କୌଣସି ଚମତ୍କାରିତାର ମାଧୁର୍ଯ୍ୟ ଦେଖିବାକୁ ମିଳିବା ସଙ୍ଗେ ସଙ୍ଗେ ବ୍ୟଙ୍ଗାତ୍ମକ ଶୈଳୀର ରମଣୀୟ ଛଟା ପରିଲକ୍ଷିତ ହୁଏ । ଅଳଙ୍କାର ସଂଯୋଜନା ଦ୍ୱାରା କବି ଭାବରାଜିକୁ ଉଦ୍ଭାସିତ କରିପାରିଛନ୍ତି । ମରକତସୂଚ ଦ୍ୱାରା ଗୁନ୍ଥାଯିବା ମୋତି ପରି, ତୃଣର କୀର୍ତ୍ତି [illegible]ଶରେ ଶୋଭା ପାଉଥିବା ଶିଶିରକୁ ମୃଗମାନେ ଚାଟୁଥିଲେ, କେଉଁଠାରେ କଳା ମେଘରୁ ପ୍ରାଣ ଭଳି ବିଜୁଳି ଧୁ ଧୁ କମ୍ପି ଉଠୁଥିଲା । ପୁନଶ୍ଚ କେଉଁଠାରେ କୁମୁଦ ଦଳ ଉପରେ ଅଞ୍ଜଳି ଦିଆଯାଇ ବସିଥିବା ଭ୍ରମରମାନେ ଅନ୍ଧକାର ଗଣ୍ଠି ଭଳି ଜଣା ପଡୁଥିଲେ ।

ଚମତ୍କାର ପୂର୍ଣ୍ଣ ସୂକ୍ତିର ବହୁଳତା ଏଥିରେ ଦେଖିବାକୁ ମିଳେ । ପୁନଶ୍ଚ ଗ୍ରାମ୍ୟ ଜୀବନର ମଧୁର କ୍ଷଣରେ ଗ୍ରାମ୍ୟ ବାତାବରଣର ଚିତ୍ରଣ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଯଥା :

ଦୁର୍‌ଗଅ-କୁଟୁମ୍‌ବଅଟ୍‌ଠୀ କହଂ ଣୁ ମଏ ଧୋଇଏଣ ସୋଢ଼ବ୍‌ବା
ଦସିଓସରନ୍ତ ସଲିଲେଣ ଉଅଅ ରୁଣ୍‌ଣଂ ବ ପଏଡେଣ ॥

(ପ୍ରଥମ-ଅଷ୍ଟାଦଶ ପଦ)

ଏଥିରେ କୃଷକମାନଙ୍କର ଦୈନନ୍ଦିନ ଜୀବନର ଘଟଣ ଅଘଟଣ ଉପରେ ଧନ୍ୟ ବୈଶିଷ୍ଟଗୁଡ଼ିଏ ଚିତ୍ର ରହିଛି । ଝଡ଼ଭିନ୍ନ

ସ୍ଥଳରେ କୃଷକଙ୍କର କାର୍ଯ୍ୟ ବର୍ଣ୍ଣନା ସାଙ୍ଗକୁ ତାର ଅନୁଭୂତି ମଧ୍ୟ ସ୍ପଷ୍ଟ ଭାବେ ବ୍ୟକ୍ତ । ଶରତ୍ କାଳରେ ପ୍ରଚୁର ଶାଳ ଧାନ ଆଦାୟ ପରେ କୃଷକର ମନରେ ଯେଉଁ ପ୍ରକାର ଆନନ୍ଦ ଦେଖାଯାଏ ତାହା ନିମ୍ନୋକ୍ତ ପ୍ରକାରେ—

"ଣିପ୍ପଣ୍ଣ-ସସ୍ସ-ରିଦ୍ଧୀ ଚ୍ଛନ୍ଦଂ ଗାଇ ପାମରୋ ସରଏ ।
ଦଲିଅ-ଣବ-ସାଲି-ତଣ୍ଡୁଲ-ଧବଲ-ମିଅଙ୍କାସୁ ରଅଣୀସୁ" ॥
(ସପ୍ତମ ୮୯ ପଦ)

ଏତଦ୍ ବ୍ୟତୀତ ମଧ୍ୟାହ୍ନ ସମୟରେ କର୍ମରତ କୃଷକ ହଳରେ ଭୋଜନ କରିବା ବିଷୟରେ ମଧ୍ୟ ବର୍ଣ୍ଣନା ରହିଛି :

ଣବ-କମ୍ପିଏଣ ହଅ-ପାମରେଣ ଦଟ୍ଠୂଣ ଣାଉ-ହାଲିଓ ।
ମୋତ୍ତବ୍ବେ ଜୋତ୍ତଅ ପଗ୍ଗହମ୍ମି ଅବହାହିଣୀ ମୁକ୍କା ॥

(କୃଷକ ତା ପତ୍ନୀ ଦ୍ୱାରା ଆନୀତ ଭୋଜନାଦି ସନ୍ଦର୍ଶନରେ ହଳକର୍ମରେ ନିଯୁକ୍ତ ବଳଦମାନଙ୍କ ନାକ-ଦଉଡ଼ିକୁ ଯୁଆଳିରୁ ଖୋଲି ଦିଅନ୍ତି ।)

(ସପ୍ତମଶତକ-୯୨ ପଦ)

ପୁନଶ୍ଚ ଏଥିରେ ପ୍ରେମ ଏବଂ କରୁଣଭାବର ସମ୍ମିଳିତ ଚିତ୍ରଣ ଦେଖିବାକୁ ମିଳେ । ଗୋପାଳ ଓ ଗୋପାଙ୍ଗୁଣୀମାନଙ୍କର ପ୍ରେମ ଗୀତି, ପଲ୍ଲୀ ବଧୂମାନଙ୍କର ଶୃଙ୍ଗାରିକ ଭାବ, ଏବଂ ଚକ୍ର ପେଷି ଯିବା ସମୟରେ ସୁନ୍ଦରୀ ଯୁବତୀମାନଙ୍କର ବିଭିନ୍ନ ପ୍ରକାର ଅଙ୍ଗମୁଦ୍ରା, ବୃକ୍ଷ ଗଛମୂଳେ ପାଣି ଦେଉଥିବା ସୁନ୍ଦରୀଙ୍କର ରୂପଶ୍ରୀ

ଓ ତରୁଣୀ, ଏବଂ ଉଭୁ ବର୍ଣ୍ଣନାର ସମାବେଶ ଅତ୍ୟନ୍ତ ସୁନ୍ଦର । ଦୂରରେ ରହୁଥିବା ଅର୍ଥାତ୍ ବାଣିଜ୍ୟ ଉଦ୍ଦେଶ୍ୟରେ ପତି ପତ୍ନୀ ଠାରୁ ବହୁ ଦୂରକୁ ଯାଉଥିବା ସମୟରେ ସେମାନଙ୍କ ମଧ୍ୟରେ ଆଦାନ ପ୍ରଦାନ ପ୍ରେମପତ୍ରର ମଧ୍ୟ ଉଲ୍ଲେଖ ମିଳେ :

ବେବର-ସିଣ୍ଣ-କରଙ୍ଗୁଲି-ପରିଗ୍ଗହ-କ୍ଖଲିଅ-ଲେହଣୀ ମଗ୍ଗଂଗ ।
ସୋତ୍ଥି ବଅ ଣ ସମପ୍ପଇ ପିଅସହି ଲେହମ୍ମି କିଂ ଲିହମୋ ॥
(ଚତୁର୍ଥ ଶତକ : ୪୪ ପଦ)

( ଓ ପ୍ରିୟତମା ! ମୁଁ ମୋ ପ୍ରେମପତ୍ରରେ କଣ ବା ଲେଖିବି ? ମୁଁ ମୋର ପ୍ରଥମ ଦୁଇଟି ଶବ୍ଦ ଶେଷ କରିପାରିବି ନାହିଁ କାରଣ ମୋ ସ୍ୱେଦ ସିକ୍ତ ଓ ଅସ୍ଥିର ଆଂଗୁଳିଗୁଡିକ ମୋତେ ବାଧା ଦେଉଛନ୍ତି । )

ବାଆଇ କିଂ ଭଣିଜ୍ଜଇ କେତ୍ତିଅ-ମେତ୍ତଂ ବ ଲିକ୍ଖଏ ଲେହେ ।
ତୁହ ବିରହେ ଜଂ ଦୁକ୍ଖଂ ତସ୍ସ ତୁମଂ ଚେଅ ଗହିଅତ୍ଥୋ ॥
( ଷଷ୍ଠ ଶତକ : ୬୧ ପଦ)

(ଅର୍ଥାତ୍, ବାକ୍ୟାକାରରେ କ'ଣ ବା ବର୍ଣ୍ଣନା କରିବି ? କିମ୍ବା ଅଉ କେତେ ବା ଲେଖିବି ? ତୁମେ ନିଜେ ହିଁ ଜାଣିଥିବ ମୁଁ କେତେ ବା ବ୍ୟଥା ଅନୁଭବ କରୁଥିବି ତୁମର ଅନୁପସ୍ଥିତିରେ ।)

ସଂକ୍ଷେପରେ ଗାଥା ସପ୍ତଶତୀର ଗାଥାଗୁଡିକୁ ନିମ୍ନଲିଖିତ ଭାଗରେ ବିଭକ୍ତ କରାଯାଇପାରେ :

୧ ) ନାୟକ-ନାୟିକାଙ୍କ ବିବିଧ ଭାବ ଚିତ୍ରଣ ।

୨ ) ପ୍ରେମ ପ୍ରସଂଗରେ ଦାମ୍ପତ୍ୟ ଜୀବନର ଆଦର ଚିତ୍ରଣ ।

୩ ) ଗ୍ରାମ୍ୟ ଜୀବନର ମର୍ମସ୍ପର୍ଶୀ ଚିତ୍ରଣ ।

୪ ) ଋତୁ ବର୍ଣ୍ଣନା ।

୫ ) ନାରୀ ସୌନ୍ଦର୍ଯ୍ୟର ଅଭିବ୍ୟଂଜନ ।

୬ ) ଦାମ୍ପତ୍ୟ ଜୀବନର ରୋଚକ କଥା ବାର୍ତ୍ତା ।

ଏହି ଗ୍ରନ୍ଥର ସଙ୍ଗ୍ରହକର୍ତ୍ତା ହାଲ ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ଜଣେ ପ୍ରଗାଢ଼ ପଣ୍ଡିତ ଥିଲେ । ହାଲ ସାତବାହାନ ବଂଶୀୟ ବୋଲି ହେମଚନ୍ଦ୍ର ସ୍ୱଭାଷା କୋଷରେ ବ୍ୟକ୍ତ କରନ୍ତି (ହାଲଃ ସ୍ୟାତ୍ ସାତବାହନଃ) । ହାଲ ସାଲବନ ବା ସାତବାହନ କୁଳର ବୋଲି ଦେଶୀନାମମାଳାରେ ଉଲ୍ଲେଖ କରାଯାଇଛି । ସପ୍ତଶତୀର କୌଣସି ଗୋଟିଏ ପାଣ୍ଡୁଲିପିରେ ହାଲଙ୍କୁ କୁନ୍ତଳ ଜନପଦର ଭଗବାନ୍ ବୋଲି କୁହାଯାଇଛି । କୁନ୍ତଳ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶର ହାଇଦ୍ରାବାଦର ଦକ୍ଷିଣ ପଶ୍ଚିମ ଅଞ୍ଚଳ ରୂପେ ପରିଚିତ । ଏକଦା ସେଠାରେ ସାତକର୍ଣ୍ଣିର ରାଜା ସାତବାହାନ ରାଜତ୍ୱ କରୁଥିଲେ । ବାତ୍ସାୟନଙ୍କ କାମସୂତ୍ରରେ କୁହାଯାଇଛି ଯେ ସାତବାହାନ କୁନ୍ତଳର ରଜା ଯେ ଆପଣାର ପାଟରାଣୀ ମଳୟବତୀଙ୍କୁ କୁରିକା ସାହାଯ୍ୟରେ ହତ୍ୟା କରିଥିଲେ । ସେ ପ୍ରସଂଗରେ ନିମ୍ନୋକ୍ତ ଉଦ୍ଧରଣ ଅବଶ୍ୟକ—;

କର୍ତ୍ତର୍ଯ୍ୟା କୁନ୍ତଳଃ ସାତକର୍ଣ୍ଣିଃ ସାତବାହନୋ ।
ମହାଦେବୀମ୍ ମଲୟବତୀମ୍ (ଜଘାନ) ॥

ହାଳ ଆନ୍ଧ୍ର ଦେଶୀୟ ରାଜା, ସେ ପାଞ୍ଚ ବର୍ଷ କାଳ ରାଜତ୍ୱ କରୁଥିଲେ । ଏହାଙ୍କ ବିଷୟରେ ବାୟୁ, ମତ୍ସ୍ୟ, ବ୍ରହ୍ମାଣ୍ଡ ପୁରାଣରେ ବର୍ଣ୍ଣନା ରହିଛି । ଏହି ଗାଥା ସପ୍ତଶତୀର ମାତ୍ର ୪୪ଟି ଗାଥା ହାଳଙ୍କ ଦ୍ୱାରା ରଚିତ ।* ଏଥିରେ ଅନ୍ଧ୍ର ଓ ମହାରାଷ୍ଟ୍ରର ଐତିହାସିକ ଓ ସାଂସ୍କୃତିକ ଘଟଣାବଳୀ ସନ୍ନିବିଷ୍ଟ । ତେଣୁ ନିଃସନ୍ଦେହରେ କୁହାଯାଇ ପାରେ ଯେ ସେ ଦାକ୍ଷିଣାତ୍ୟର ଲୋକ । ଐତିହାସିକମାନଙ୍କ ମତରେ ହାଳ ହେଉଛନ୍ତି ସପ୍ତଦଶ ରାଜା ଯେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରାଜତ୍ୱ କରୁଥିଲେ ।

ପ୍ରଥମରୁ କୁହାଯାଇଛି ଯେ ଗାଥା ସପ୍ତଶତୀ ଏକ ସଂଗ୍ରହ ଗ୍ରନ୍ଥ ମାତ୍ର । ହାଳଙ୍କ ବ୍ୟତୀତ ୨୬୧ ଜଣ କବିଙ୍କ ଗାଥା ଏଥିରେ ସନ୍ନିବିଷ୍ଟ । ଏହି ୨୬୧ ଜଣଙ୍କ ମଧ୍ୟରେ ପ୍ରାୟ ଛ' ସାତ ଜଣ ନାରୀ କବି ମଧ୍ୟ ଅନ୍ତର୍ଭୁକ୍ତ । ସପ୍ତ ସହସ୍ର ଗାଥା ବିଶିଷ୍ଟ ଏ ଗ୍ରନ୍ଥର ସମୁଦାୟ ୩୯୮ ଗାଥାର ଲେଖକ ତଥା କବିଙ୍କ ନାମ ଅଦ୍ୟାବଧି ଜଣାପଡ଼ିଛି । ଷଷ୍ଠ ଶତକର କୌଣସି ଲେଖକଙ୍କ ନାମ ଜଣା

---

* ଦ୍ରଷ୍ଟବ୍ୟ :

'Prakrit authors mentioned by early commentators of the anthology that only forty-four gathas are referred to as being composed by Hala himself'.

( ବସାକ . ଗାଥାସପ୍ତଶତୀ ମୁଖବନ୍ଧ ପୃ ୩) ।

ଉଦ୍ଧୃତ ନଥିବା ବେଳେ ସପ୍ତମ ଶତକର କେବଳ ଦୁଇ ତିନୋଟି ଗାଥାର ଲେଖକଙ୍କ ନାମ ଜଣାପଡୁଛି ।*

## ବଜ୍ଜାଲଗ୍‌ଗଂ

ଏହା ଏକ ସୁନ୍ଦର ମୁକ୍ତକ କାବ୍ୟ ସଂଗ୍ରହ । ବହୁ ପ୍ରାକୃତ କବିଙ୍କର ସୁଭାଷିତ ଗାଥା ଏଥିରେ ସଂଗୃହୀତ । ଏହି ଗ୍ରନ୍ଥରେ ୬୯୫ ଗାଥା ରହିଛି । ଏହା ପ୍ରଫେସର ଜୁଲିୟସ୍ ଲେଓ୍ବର ଦ୍ୱାରା ସଂପାଦିତ ଓ ୧୯୪୪ ରେ କଲିକତା ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗାଲ ଦ୍ୱାରା ପ୍ରକାଶିତ ।

'ବଜ୍ଜା' ଶବ୍ଦ ଦେଶୀ ଏବଂ ଏହାର ଅର୍ଥ ହେଉଛି । ଅଧିକାର ବା ପ୍ରସ୍ତାବ । ଏକ ବିଷୟରେ ସମ୍ବନ୍ଧିତ ସମସ୍ତ ଗାଥା ଏକ ବଜ୍ଜାନ୍ତର୍ଗତ । ଏହି ଗ୍ରଂଥର ବର୍ଣ୍ଣିତ ବିଷୟ ହେଲା—ଶ୍ରୋତୃ, ଗାଥା, କାବ୍ୟ, ସଜ୍ଜନ, ଦୁର୍ଜନ, ମିତ୍ର, ସ୍ନେହ, ନୀତି, ଧୀର, ସାହସ, ଦୈବ, ବିଧି, ଦୀନ, ଦାରିଦ୍ର୍ୟ, ପ୍ରଭୁ, ସେବକ, ସୁଭଟ, ଧବଲ, ବିନ୍ଧ୍ୟ, ଗଜ, ସିଂହ, ହରିଣ, କରଭ, ମାଲତୀ, ଭ୍ରମର, ସୁରତରୁ, ହଂସ, ଚନ୍ଦ୍ର, ବଡ଼ବାନଳ, ପଞ୍ଚମ, ନୟନ, ସ୍ତନ ଲାବଣ୍ୟ, ସୁରତ, ପ୍ରେମ, ମାନ, ପ୍ରବସିତ, ବିରହ, ଅନଙ୍ଗ, ପୁରୁଷୋଲ୍ଲାପ, ପ୍ରିୟାନୁରାଗ, ଦୂତୀ, ବାଲସଂପୀଡିତା, ପ୍ରବାସିତ, ଧନ୍ୟ, ହୃଦୟସଂବରଣା, ସୁଗୃହିଣୀ, ସତୀ, ଅସତୀ, ଜ୍ୟୋତି,

---

* ଦ୍ରଷ୍ଟବ୍ୟ—ବସାକ : ଗାଥାସପ୍ତଶତୀ Introduction ପୃ ୭ ॥

ସବିଶେଷ ବିବରଣୀ ପାଇଁ ଏହି ଲେଖକଙ୍କ ପ୍ରକାଶ ଅପେକ୍ଷାରେ ଥିବା "ଗାଥାସପ୍ତଶତୀ" ଗ୍ରଂଥ ଦ୍ରଷ୍ଟବ୍ୟ ।

ଲେଖକ, ଧାର୍ମିକ, ମା଼ିକ, ମୂସଲ, ବାଲ୍ୟସଂବରଣା, କୁଟ୍ଟନୀ, ଶିକ୍ଷା, ବେଶ୍ୟା, କୃପଣ, ଖନକ, କୁଷ୍ଠ, ବୃଦ୍ଧ, ପ୍ରହେଳିକା, ଶଙ୍ଖ, ବସନ୍ତ, ଗ୍ରୀଷ୍ମ, ପ୍ରାବୃଟ୍, ଶରତ, ହେମନ୍ତ, ଶିଶିର, ଜରା, ମନ୍ତ୍ରୀ, ଦୁଷ୍କୃତ କର୍ମ, ସ୍ଥାନ, ଗୁଣ, ଗୁଣନିନ୍ଦା, ଗୁଣଶ୍ଳାଘା, ପୁରୁଷନିନ୍ଦା, କମଳ, କମଳନିନ୍ଦା, ହଂସମାନ, ଚକ୍ରବାକ, ଚନ୍ଦନ, ବଟ, ତାଲ, ପଳାଶ, ବଡ଼ବାନଳ; ରତ୍ନାକର, ସମୁଦ୍ରନିନ୍ଦା, ସୁବର୍ଣ୍ଣ, ଆଦର୍ଶ୍ୟ, ଚମ୍ପକ, ପ୍ରିୟୋଲ୍ଲାସ ଏବଂ ବସ୍ତ୍ର ବ୍ୟର୍ଥପାପ୍ତି ।୮

ଆରମ୍ଭରେ ପ୍ରାକୃତ କାବ୍ୟକୁ ଅମୃତ କୁହାଯାଇଛି—ଯେ ଏହାକୁ ପଢ଼ିବାକୁ ଓ ଶୁଣିବାକୁ ଜାଣିନାହାନ୍ତି ସେମାନେ କାମ ଚର୍ଚ୍ଚା କରି ଲଜ୍ଜା ପାଇବା ପରି ହୁଏ ।

ଲଳିଏ ମହୁରକ୍‌ଖରଏ ଜୁବଲଧୁଣ ବଲ୍ଲହେ ସସିଂଗାରେ ।
ସନ୍ତେ ପାଇଅ କବ୍‌ବେ କୋ ସକ୍‌କଇ ସକ୍‌କୟଂ ପଢ଼ିଉଂ ॥

ଅର୍ଥାତ୍, ଲଳିତ, ମଧୁର ଅକ୍ଷରଯୁକ୍ତ, ଯୁବତୀଜନ ପ୍ରିୟ, ଶୃଙ୍ଗାରଯୁକ୍ତ, ପ୍ରାକୃତ କାବ୍ୟ ଥାଉ ଥାଉ ସଂସ୍କୃତକୁ କିଏ ପଢ଼ିବ ।୯

ଏହି ଗ୍ରନ୍ଥରେ ଜୀବନର ପ୍ରତ୍ୟେକ ଅନୁଭୂତି ସମ୍ବନ୍ଧରେ ବର୍ଣ୍ଣନା ରହିଛି । ଏହାର ଗାଥାମାନ କେବଳ ଶୃଙ୍ଗାର ବର୍ଣ୍ଣନାରେ ସୀମିତ ନହୋଇ ମାନବତାର ସତ୍ୟ ସନ୍ଦେଶ ଦେଉଛି । ଏଥିରେ ଲୋକମଙ୍ଗଳର ପ୍ରେରଣା ପୂର୍ଣ୍ଣମାତ୍ରାରେ ଅନୁଭୂତ ୧୦ । ମିତ୍ର ସମ୍ବନ୍ଧରେ :—

ଅପ୍ପହିଅଂ କାଯ୍ୟବ୍‌ବଂ ଜଇ ସକ୍‌କଇ ପରହିଅଂ ଚ କାଯ୍ୟବ୍‌ବଂ
ଅପ୍ପହିଅ ପରହିଆଣଂ ଅପ୍ପହିଅଂ ଚେବ କାଯ୍ୟବ୍‌ବଂ ॥

ଅର୍ଥାତ୍, ପ୍ରଥମେ ଆପଣାର ହିତ କରିବା ଉଚିତ, ଯଦି ସମ୍ଭବ ହୁଏ ଅନ୍ୟର ହିତ କରିବା ଦରକାର । ଆପଣା ଓ ପରର ହିତ ମଧ୍ୟରେ ଆପଣା ହିତ ପ୍ରଧାନ ।

**ସଜ୍ଜନଙ୍କ କଥା :** କବି ଆଶ୍ଚର୍ଯ୍ୟ ହୋଇ କହିଛନ୍ତି ଯେ ସମୁଦ୍ର ମନ୍ଥନ ଦ୍ୱାରା ଚନ୍ଦ୍ରମା, କଳ୍ପବୃକ୍ଷ ଏବଂ ଲକ୍ଷ୍ମୀ ଜାତ ହେଲେ । କିନ୍ତୁ ଏମାନଙ୍କ ଠାରୁ ଅଧିକ ସମ୍ମାନ୍ୟ ବ୍ୟକ୍ତି ସଜ୍ଜନଙ୍କ ଉତ୍ପତ୍ତି କେଉଁଠୁ ହେଲା ଏହା କହିବା ସମ୍ଭବ ନୁହେଁ । ସଜ୍ଜନର ସ୍ୱଭାବ ଶୁଦ୍ଧଭୂତ । ଦୁର୍ଜନ ସଜ୍ଜନର ସ୍ୱଭାବକୁ ମଳିନ କରିବାକୁ ଚାହିଁଲେ ବି ତାହା କାର୍ଯ୍ୟକାରୀ ହୁଏନା ବରଂ ଅଧିକ ତେଜପୂର୍ଣ୍ଣ ହୋଇଥାଏ । ସଜ୍ଜନ କ୍ରୋଧାନ୍ୱିତ ହେଲେ ବି ପାପ କଥା ଚିନ୍ତା କରେନି । ପାପ କଥା ଯଦି କେତେବେଳେ ଚିନ୍ତା କରେ ମୁଖରେ ତାହା ଉଚ୍ଚାରଣ କରି ବ୍ୟକ୍ତ କରେନି ଏବଂ ବ୍ୟକ୍ତ କଲେ ଲଜ୍ଜିତ ହୁଏ । ଚନ୍ଦ୍ରମା ରାହୁ ଦ୍ୱାରା ଗ୍ରାସିତ ହେଲେ ବି ଯେପରି ସୁଧା ବୃଷ୍ଟି କରିଥାଏ; ସେହିପରି ଅନ୍ୟମାନଙ୍କ ଦ୍ୱାରା ପୀଡ଼ିତ ହେଲେ ବି ସଜ୍ଜନ ଅନ୍ୟମାନଙ୍କୁ ସୁଖ ଦେଇଥାଏ । ସଜ୍ଜନ ତାହାରିକୁ ଇଚ୍ଛା କରେନି କିମ୍ବା ଆତ୍ମଶ୍ଳାଘା ମନେ କରେନି । ସଜ୍ଜନ ଅପ୍ରିୟର ଉପକାର କରେ । ଏହା ତାର ସ୍ୱଭାବ । ସଜ୍ଜନର କୋପ ବିଜୁଳିର ଚମକ ପରି ଅସ୍ଥିର ଓ ମିତ୍ରତା ପଥରରେ ଗାର ପରି । × × ×

ହୀନଜନଙ୍କ ଉଦ୍ଧାର, ଶରଣ, ରକ୍ଷଣ ଏବଂ ଅପରାଧୀର ଅପରାଧ କ୍ଷମା କରିବା କେବଳ ସଜ୍ଜନ ବ୍ୟକ୍ତି ହିଁ ଜାଣେ । ଦୁଇ ଜଣ ଏହି ପୃଥିବୀକୁ ଧାରଣ କରିଛନ୍ତି କିମ୍ବା ସେହି ଦୁଇଜଣ ପୃଥିବୀକୁ ଧାରଣ କରିବାକୁ ଯୋଗ୍ୟ ଅଟନ୍ତି । ପ୍ରଥମ ବ୍ୟକ୍ତି ଜଣକ ହେଲେ ଯାହାର ବୁଦ୍ଧି ଉପକାର କରିବାକୁ ପ୍ରବୃତ୍ତ ଏବଂ ଦ୍ୱିତୀୟ ଜଣକ ହେଲେ

ଯେ ଅନ୍ୟଦ୍ୱାରା କୃତ ଉପକାରକୁ ମନେରଖନ୍ତି । ଦୁଃଖ ବା ବିପତ୍ତି ବେଳେ ସଜ୍ଜନ ବଦଳନ୍ତି, ପାଷାଣ ରେଖା ପରି ସେ ଅଟଳ ରହେ । ପ୍ରଳୟ କାଳରେ ପର୍ବତ ଚଳନ୍ତି ଧ୍ରୁବ, ସମୁଦ୍ର, ମଧ୍ୟ ଦ୍ୱୀପ ମର୍ଯ୍ୟାଦା ଲଂଘନ କରିଥାଏ । କିନ୍ତୁ ସଜ୍ଜନ ସେହି ସମୟରେମଧ୍ୟ ସ୍ୱୀକୃତ ପ୍ରତିଜ୍ଞାକୁ ଛାଡ଼ନ୍ତି ନାହିଁ । ଚନ୍ଦନ ବୃକ୍ଷପରି ଫଳ ରହିତ ହେଲେ ବି ଅନ୍ୟକୁ ନିଜ ଶରୀର (ଦାନ କରି) ଦ୍ୱାରା ଉପକାର କରିଥାଏ । ସଜ୍ଜନ ସ୍ୱଭାବର ଏତାଦୃଶ ବର୍ଣ୍ଣନା ସଂସ୍କୃତ ସାହିତ୍ୟରେ ବି ରହିଛି ।

ଧୀର ପୁରୁଷ ସମ୍ବନ୍ଧରେ ଜଣଙ୍କ ଉକ୍ତି ଦ୍ରଷ୍ଟବ୍ୟ :—
ହେ ମାନିନି ! ଏହି ଭୂମଣ୍ଡଳରେ ଅଭିମାନୀ ପୁରୁଷଙ୍କ ପାଇଁ କେବଳ ଦୁଇଟି ପନ୍ଥା ରହିଛି—ହୁଏତ ସେମାନେ ଶ୍ରୀ ପ୍ରାପ୍ତ କରନ୍ତି ଅଥବା ଭ୍ରମଣ କରି କରି ଶେଷ ହୋଇଯାଆନ୍ତି ।

ଆଦର୍ଶ ଗୃହିଣୀର ହୃଦୟସ୍ପର୍ଶୀ ଚିତ୍ର ସୁଭାଷିଣୀ ବର୍ଣ୍ଣନାରେ ଦ୍ରଷ୍ଟବ୍ୟ । ଭାରତୀୟ ନାରୀର ସନାତନ ଆଦର୍ଶ ରହିଛି । ସେ ଦେବୀ ପରି ପୂଜନୀୟା ବୋଲି ଧରାଯାଇଛି । ଏହି ଶ୍ଳୋକରେ ତା'ର ପ୍ରକୃତ ରୂପ ପ୍ରତିଫଳିତ ।

ଦାରିଦ୍ର୍ୟ ଭୁଜଙ୍ଗ ନମୋ ଲଗ୍ନପଯାଏଣ ଏଣ୍ଟପାଦୀ
ଯେଣ୍ଟାମି ସପ୍ଲଲନ୍ଦେଏ ତେ ହ୍ୱାଲୋୟା ନପଚ୍ଛନ୍ତି ॥

ଅର୍ଥାତ୍, ହେ ଦାରିଦ୍ର୍ୟ ତୋତେ ନମସ୍କାର କରୁଛି, ତୋର କୃପାରୁ ମୋତେ ଏହି ରିଦ୍ଧି ମିଳିଛି ଯେ ମୁଁ ସମସ୍ତଙ୍କୁ ଦେଖି ପାରୁଛି ଓ ମୋତେ କେହି ହେଲେ ଦେଖିପାରୁ ନାହାନ୍ତି ।

ପରବର୍ତ୍ତୀ ଯୁଗର କାବ୍ୟରେ ବଙ୍କାଳଙ୍କାରର ପ୍ରଭାବ ଦେଖାଯାଏ ।

# ପ୍ରାକୃତ ଚରିତ କାବ୍ୟ

## ପଉମ ଚରିୟୁ (ପଦ୍ମ ଚରିତ)

ଏହି ଗ୍ରନ୍ଥରେ ରାମଚରିତ ବର୍ଣ୍ଣିତ । ପଦ୍ମ ରାମଙ୍କ ଅନ୍ୟ ନାମ । ଏହାର ଆଧାର ବାଲ୍ମୀକି ରାମାୟଣ ହେଲେ ହେଁ କେତେକ ସ୍ଥଳରେ ଭିନ୍ନତା ଦ୍ରଷ୍ଟବ୍ୟ । ଦଶରଥଙ୍କ ଚାରି ରାଣୀ ହେଉଛନ୍ତି କୌଶଲ୍ୟା ଅଥବା ଅପରାଜିତା, ସୁମିତ୍ରା, କୈକେୟୀ ଓ ସୁପ୍ରଭା । ବନବାସରେ ରାମ ଓ ଲକ୍ଷ୍ମଣ କେତେଥର ବିବାହ କରିଥିଲେ । ରାମ ଗନ୍ଧର୍ବ ରାଜାଙ୍କ ତିନି କନ୍ୟାଙ୍କ ସହ ଓ ଲକ୍ଷ୍ମଣ ବଜ୍ରକର୍ଣ୍ଣଙ୍କ ଆଠ କନ୍ୟାଙ୍କ ସହ ବିବାହ କରିଥିଲେ । ପରେ ପରେ ସୁଗ୍ରୀବଙ୍କ ତେର ଜଣ କନ୍ୟାଙ୍କର ପାଣିଗ୍ରହଣ କରିଥିଲେ । ଲକ୍ଷ୍ମଣ ଲଙ୍କା ଅଭିଯାନବେଳେ ସମୁଦ୍ରରାଜର କନ୍ୟା ଓ ଶକ୍ତିଘାତ ସମୟରେ ବିଶଲ୍ୟା ବିବାହ କରିଥିଲେ । ଅଯୋଧ୍ୟାରେ ରାମଙ୍କର ଆଠ ଶହ ଓ ଲକ୍ଷ୍ମଣଙ୍କର ତେର ଶହ ରାଣୀ ଥିଲେ । ରାବଣରେ ୬୦୦ ରାଣୀ ଥିଲେ । ସୂର୍ପଣଖାର ନାମ ଚନ୍ଦ୍ରନଖା ଏବଂ ତାର ପତି ଖରଦୂଷଣ । ରାବଣର ଭଗିନୀ ଅନଙ୍ଗକୁସୁମା ସହ ହନୁମାନର ବିବାହ ହୋଇଥିଲା । କଥାର ଶେଷାଂଶ ଜୈନ କଳ୍ପନା ରହିଛି । ସୀତା ଅଗ୍ନି ପରୀକ୍ଷାରେ ସଫଳ ହୋଇ ଜୈନଦୀକ୍ଷା ଗ୍ରହଣ କରିଥିଲେ ଓ ପରେ ସ୍ୱର୍ଗଲାଭ କରିଥିଲେ । ସୀତାଙ୍କ ପୁତ୍ରମାନଙ୍କ ନାମ ଥିଲା ଲବଣ ଓ ଅଙ୍କୁଶ । ଲକ୍ଷ୍ମଣ ମଲାପରେ ନର୍କକୁ ଗଲେ କାରଣ ରାବଣକୁ ସେ ବଧ କରିଥିବେ । ରାମ ଅହିଂସା ବ୍ରତଧାରୀ ଥିଲେ । ସେ ଦୀକ୍ଷା ଗ୍ରହଣ କରିଥିଲେ ଓ ସାଧନା ଦ୍ୱାରା ମୁକ୍ତି ପାଇଲେ ।

ଏହା ପ୍ରାକୃତର ସର୍ବପ୍ରଥମ ଚରିତ ମହାକାବ୍ୟ । ବିଦ୍ୟାଧର-ଲୋକ, ରାକ୍ଷସ ଲୋକ, ବାନର-କଥାଦିର ବର୍ଣ୍ଣନା ମିଳେ । ନଗର, ନଦୀ, ସୂର୍ଯ୍ୟୋଦୟରଶ୍ମିର ବର୍ଣ୍ଣନା ସ୍ଥାନେ ସ୍ଥାନେ ରହିଛି ।

ଭାଷା : ମହାରାଷ୍ଟ୍ରୀ ପ୍ରାକୃତ ସହ ସଂସ୍କୃତ ଓ ଅପଭ୍ରଂଶର ରୂପ ମିଳେ । ଏହାର ଭାଷା ସରଳ, ଓଜ ପୂର୍ଣ୍ଣ ଓ ପ୍ରବାହମୟୀ । ଏହା ମହାକାବ୍ୟ ଶୈଳୀରେ ଲିଖିତ । ଗାଥାଛନ୍ଦ ବହୁମାତ୍ରାରେ ବ୍ୟବହୃତ । ଛନ୍ଦ, ଅଳଙ୍କାର, ରସ ପ୍ରତ୍ୟେକ ଦୃଷ୍ଟିରୁ କାବ୍ୟର ଯଥେଷ୍ଟ ମହତ୍ତ୍ୱ ରହିଛି । ଏହି କାବ୍ୟର ରଚୟିତା ବିମଳ ସୂରିଙ୍କ ଅନୁସାରେ ଏହାର ସମୟ ୬୦ ଖ୍ରୀଷ୍ଟାବ୍ଦ ବୋଲି ଜଣାଯାଏ । ଏହି ଗ୍ରନ୍ଥର ଅନୁକରଣରେ ସ୍ୱୟମ୍ଭୂ 'ଉତ୍ତମ ଚରିଉ' ଗ୍ରନ୍ଥ ଅପଭ୍ରଂଶରେ ରଚନା କରିଛନ୍ତି ।

## ସୁରସୁନ୍ଦରୀ ଚରିୟଂ

ଏହା ଏକ ପ୍ରେମୋପାଖ୍ୟାନ ମହାକାବ୍ୟ । ସାଧୁ ଧନେଶ୍ୱର ୧୦୩୮ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଷୋହଳ ପରିଚ୍ଛେଦ ଓ ପ୍ରତ୍ୟେକ ପରିଚ୍ଛେଦରେ ୨୫୦ଟି ଲେଖାଏଁ ପଦ୍ୟ ରହିଛି । ଶବ୍ଦାଳଙ୍କାର ଓ ଉପମାଳଙ୍କାରାଦିର ସୁନ୍ଦର ପ୍ରୟୋଗ ଏଥିରେ ମିଳେ । ଉପ ବିବିଧତା କବିଙ୍କ କଳା କୁଶଳତାର ପରିଚୟ ଦିଏ ।

ଧନଦେଓ ଏକ ଦିବ୍ୟମଣି ସାହାଯ୍ୟରେ ଚିତ୍ରବେଗ ନାମକ ବିଦ୍ୟାଧରଙ୍କୁ ନାଗପାଶ ମୁକ୍ତ କଲା । ଦୀର୍ଘକାଳ ବିରହ ପରେ ଚିତ୍ରବେଗର ବିବାହ ପ୍ରିୟତମା ସହ ହେଲା । ସେ ସୁରସୁନ୍ଦରୀ ଓ

ନିଜ ପ୍ରେମ ତଥା ବିରହ-ମିଳନର କଥା ଶୁଣାଉଛନ୍ତି । ସୁରସୁନ୍ଦରୀର ମକରକେତୁ ସହ ବିବାହ ହୁଏ । ଶେଷରେ ଦୁହେଁ ଦୀକ୍ଷା ଗ୍ରହଣ କରନ୍ତି । ଏହି ଗ୍ରନ୍ଥରେ ଖ୍ରୀଷଣ ଅଟବୀ, ଖଲ-ଆକ୍ରମଣ, ବର୍ଷାକାଳ, ବସନ୍ତ ଋତୁ, ମଦନ ମହୋତ୍ସବ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ପୁତ୍ର-ଜନ୍ମୋତ୍ସବ, ବିବାହ, ଯୁଦ୍ଧ, ବିରହ, ମହିଳାମାନଙ୍କ ସ୍ୱଭାବ, ସମୁଦ୍ର ଯାତ୍ରା ଓ ଜୈନ ସାଧୁମାନଙ୍କ ଉପଦେଶ ଦାନ, ଜୈନଧର୍ମ ତତ୍ତ୍ୱାଦିର ସରସ ବର୍ଣ୍ଣନା ମିଳେ ।

ଯୌବନ ପ୍ରାପ୍ତ ସ୍ତ୍ରୀ ସମ୍ବନ୍ଧରେ କୁହାଯାଇଛି ଯେ—ଯୁବାବସ୍ଥାକୁ ପ୍ରାପ୍ତ ବର ରହିତ କୁଳୀନ ଘରେ ରହୁଥିବା କନ୍ୟା ଯାହା କିଛି କରୁନା କାହିଁକି ତହାର କୁଳରେ କଳଙ୍କ ଲାଗିବ ।

ସ୍ତ୍ରୀ ମାନଙ୍କ ସ୍ୱଭାବ ବର୍ଣ୍ଣନାରେ କୁହାଯାଇଛି ଯେ ଚଞ୍ଚଳମତି ସ୍ତ୍ରୀମାନଙ୍କୁ କାପୁରୁଷ ରୁହିଁଥାନ୍ତି । ସଜ୍ଜନ କେବେହେଲେ ତାହା ରୁହଁାନ୍ତି ନାହିଁ । ନିଜ ମନରେ ସେମାନେ କିଛି ଭାବନ୍ତି ଓ କାହାକୁ ଦେଖନ୍ତି ତଥା ଆଉ କାହା ସହ ସମ୍ବନ୍ଧ ରଖନ୍ତି; ଚଞ୍ଚଳମତି ଏ ଧରଣର ସ୍ତ୍ରୀମାନଙ୍କୁ କିଏ ବା ପ୍ରିୟ ହୋଇପାରେ ? X X X ଗମ୍ଭୀର ନାମକ ସମୁଦ୍ର ତଟର ସୁନ୍ଦର ବର୍ଣ୍ଣନା ଏହି କାବ୍ୟରେ ରହିଛି । ଉଦ୍ୟାନରେ କ୍ରୀଡାରତ ସୁରସୁନ୍ଦରୀ ଓ ମକରକେତୁଙ୍କ ବିନୋଦପୂର୍ଣ୍ଣ ପ୍ରଶ୍ନୋତ୍ତର ଦ୍ରଷ୍ଟବ୍ୟ:—ସବୁ ପ୍ରଶ୍ନର ଉତ୍ତର "ସରଣ"

୧ । ପୂର୍ଣ୍ଣଚନ୍ଦ୍ର କାହାକୁ ଧାରଣ କରେ ? ଶଶ—ହରିଣ ।

୨ । କୃଷକ କ୍ଷେତରେ କାହାକୁ ଋହାନ୍ତି ? ଜଳକୁ ।

୩ । ଅନ୍ତ ଗୁରୁ କିଏ ? ସ (ଗଣ) ।

୪ । ସୁଖ କ'ଣ ? ଶାନ୍ତ ବା କଷାୟର ଶମନ ।

୫ । ପୃଷ୍ଠ ସମୂହ କାହାକୁ ଦେଖି ବିକଶିତ ହୁଅନ୍ତି ?
ଶଶାଙ୍କ—ଚନ୍ଦ୍ରମା ।

୬ । ପରସ୍ତ୍ରୀ ଜାରପୁରୁଷ ସହ କପରି ଭ୍ରମଣ କରେ ?
ସଶଂକ— ଶଙ୍କିତ ହୋଇ ।

## ସୁପାସନାହ ଚରିୟଂ (ସୁପାର୍ଶ୍ୱନାଥ ଚରିତଂ)

ଏହି କାବ୍ୟର ରଚୟିତା ଲକ୍ଷ୍ମଣଗଣି । ଏହି କାବ୍ୟର ନାୟକ ସପ୍ତମ ତୀର୍ଥଙ୍କର ସୁପାର୍ଶ୍ୱନାଥ । ଏଥିରେ ପ୍ରାୟ ଆଠ ହଜାର ଗାଥା ରହିଛି । ପୂର୍ବଭବ ଓ ବର୍ତ୍ତମାନ ଜୀବନର ବର୍ଣ୍ଣନ ରହିଛି ।

ପୂର୍ବଭବରେ ସୁପାର୍ଶ୍ୱନାଥଙ୍କ ମନୁଷ୍ୟ ଓ ଦେବଭବମାନଙ୍କର ବିସ୍ତୃତ ବର୍ଣ୍ଣନା ମିଳେ । ମନୁଷ୍ୟ ସମ୍ୟକ୍ ତତ୍ତ୍ୱ ଓ ସଂଯମ ଦ୍ୱାରା ନିର୍ବାଣ ପଥ ଆଡକୁ ଅଗ୍ରସର ହୋଇଥାଏ । ଅନେକ ଜନ୍ମ ସଂଯମ ଓ ସଦାଚାର ପାଳନ କରି ସତ୍ ସଂସ୍କାର ଅର୍ଜନ କଲେ ଓ ତୀର୍ଥଙ୍କର ପ୍ରକୃତିର ହୋଇ ସପ୍ତମ ତୀର୍ଥଙ୍କର ହେଲେ । ଦ୍ୱିତୀୟ ପ୍ରସ୍ତାବରେ ତୀର୍ଥଙ୍କରଙ୍କ ଜନ୍ମାଭିଷେକ ଓ ବିବାହାଦିର ବର୍ଣ୍ଣନା ରହିଛି ।

ତୃତୀୟ ପ୍ରସ୍ତାବରେ ଛଟ୍ଠ, ଅଟ୍ଠମ ଆଦି ତାପ ତପର କଥା ରହିଛି । ଏଥିରେ ଧର୍ମତତ୍ତ୍ୱର ପ୍ରାଧାନ୍ୟ ହେତୁ କାବ୍ୟତତ୍ତ୍ୱର ସରସତା ନାହିଁ । ବସ୍ତୁ ଘଟଣା ହେତୁ ବର୍ଣ୍ଣନା ମଧ୍ୟ ସଂକ୍ଷିପ୍ତ ।

ଭାଷାରେ ଅପଭ୍ରଂଶର ପ୍ରଭାବ ରହିଛି ।

ଅଳଙ୍କାରାଦିର ସୁନ୍ଦର ପ୍ରୟୋଗ ମିଳେ । ଏହି କାବ୍ୟରେ ସାଂସ୍କୃତିକ ଚିତ୍ରଣ ମଧ୍ୟ ରହିଛି ।

## ସିରି ବିଜୟ ଚନ୍ଦ କେବଲି ଚରିୟଂ

ଖ୍ରୀଷ୍ଟାବ୍ଦ ୧୦୭୦ ଅବ୍ଦରେ ଶ୍ରୀ ଚନ୍ଦ୍ରପ୍ରଭ ମହତ୍ତର ଏହି କାବ୍ୟଟି ରଚନା କରିଥିଲେ । ଏହାର ଉଦ୍ଦେଶ୍ୟ ଜିନ ପୂଜାର ମହାତ୍ମ୍ୟ ପ୍ରକଟ କରିବା । ଅଷ୍ଟ ଦ୍ରବ୍ୟର ପୂଜା କରିବାର ଉଲ୍ଲେଖ ମିଳେ । ଏଥିରେ ଅନେକ କଥା ରହିଛି । ଏହାକୁ ରଚିତ କାବ୍ୟ ଅଥବା କଥା ସଂଗ୍ରହ କୁହାଯାଇପାରେ । ଉଦାହରଣ ସ୍ୱରୂପ—

ଭରତ କ୍ଷେତ୍ରରେ ରତ୍ନପୁର ନଗରର ଜୟମର୍ଦ୍ଧନ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ଏହାର ଭାର୍ଯ୍ୟାର ନାମ ଅନଙ୍ଗ-ରତି । ଏହି ଦମ୍ପତିର ପୁତ୍ର ବିଜୟ ଚନ୍ଦ୍ର । ସେ ଚନ୍ଦ୍ରମା ପରି ସମସ୍ତଙ୍କ ମନକୁ ପ୍ରସନ୍ନ କରି ପାରୁଥିଲେ । ତାହାର ଦୁଇ ପତ୍ନୀର ଦୁଇ ପୁଅ କୁରୁଚନ୍ଦ୍ର ଓ ହରିଚନ୍ଦ୍ର । ଥରେ ଜଣେ ଆଚାର୍ଯ୍ୟ ଆଗ-ମନ କଲେ । ରାଜା ଜୟମର୍ଦ୍ଧନ ସପରିବାର ଆଚାର୍ଯ୍ୟଙ୍କ ଦର୍ଶନାର୍ଥେ ଗଲେ । ଧର୍ମୋପଦେଶ ଶୁଣି ସେ ସଂସାର ପ୍ରତି ବିରକ୍ତ ହୋଇ ପୁତ୍ର ବିଜୟଚନ୍ଦ୍ରଙ୍କୁ ରାଜ୍ୟ ଭାର ଦେଇ ପ୍ରବ୍ରଜିତ ହେଲେ । ବିଜୟ ଚନ୍ଦ୍ର କେତେ ସମୟ ପରେ ନିଜ ପୁଅ ଦୁହିଙ୍କୁ ଦୁଇଟି ପୁରର ଅଧିକାର ଦେଇ ଦୀକ୍ଷା ଗ୍ରହଣ କଲେ । ବିଜୟଚନ୍ଦ୍ର ଘୋର ତପସ୍ୟା କରି ଜ୍ଞାନ ପ୍ରାପ୍ତ କଲେ ।

ବିଜୟଚନ୍ଦ୍ର କେବଳୀ ବିହାର କରି ହରିଚନ୍ଦ୍ରଙ୍କ କୁସୁମ-ପୁରକୁ ଆସିଲେ । ନଗର ବାହାରେ ସମବଶରଣ ରଚିତ ହେଲା । ନାଗରିକମାନଙ୍କ ସହ ରାଜା ହରିଚନ୍ଦ୍ର ମଧ୍ୟ କେବଳୀ ବନ୍ଦନା ପାଇଁ ଆସିଲେ । ସେ କେବଳୀଙ୍କୁ ଆଠ ପ୍ରକାରର ପୂଜାର ମାହାତ୍ମ୍ୟ ପଚାରିଲେ । କେବଳୀ ପ୍ରତ୍ୟେକ ଦ୍ରବ୍ୟ ଦ୍ୱାରା କରାଯାଉଥିବା ପୂଜାର ନିରୂପଣ କଥା ଦ୍ୱାରା କଲେ ।

## ମହାବୀର ଚରିତ୍ରଂ

ନେମିଚନ୍ଦ୍ର ସୂରି ୧୦୮୪ ଖ୍ରୀଷ୍ଟାବ୍ଦରେ ଏହି କାବ୍ୟ ରଚନା କରିଥିଲେ ।

ବର୍ଦ୍ଧମାନପୁର (ବଡନଗର) ନଗରରେ ଜଣେ ଦାନୀ ଦୟାଳୁ ଓ ଧର୍ମାତ୍ମା ଶ୍ରାବକ ରହୁଥିଲେ । ଥରେ ସେ ରାଜାଙ୍କ ଆଜ୍ଞାରେ ଅନେକ ଲୋକଙ୍କ ସହ କାଠ ଆଣିବାକୁ ବନକୁ ଗଲେ । ଭୟଙ୍କର ଜଙ୍ଗଲରେ ସେ କାଠ କାଟିବାକୁ ଲାଗିଲେ । ଭୋଜନ ସମୟରେ ଜଣେ ଆଚାର୍ଯ୍ୟ ଅନେକ ସାଧୁ ସହ ରାସ୍ତା ଭୁଲି ସେଠି ଆସି ପହଞ୍ଚିଲେ । ମୁନିମାନଙ୍କୁ ଦେଖି ସେ ଭାବିଲେ ଯେ ତାଙ୍କର ବଡ ସୌଭାଗ୍ୟ ହେତୁ ସେ ମହାତ୍ମାମାନଙ୍କର ଦର୍ଶନ ଲାଭ କଲେ । ସେ ମୁନିମାନଙ୍କୁ ଅର୍ଚ୍ଚନା ବନ୍ଦନା କରି ପଚାରିଲେ—ଭଗବନ୍ ! ଆପଣ କେଉଁଠୁ ଆସିଲେ ଓ କେଉଁ ଉଦ୍ଦେଶ୍ୟରେ ଏ ଭୟଙ୍କର ବନପ୍ରଦେଶରେ ବିଚରଣ କରୁଛନ୍ତି ? ଧର୍ମଲାଭର ଆଶୀର୍ବାଦ ଦେଇ ଆଚାର୍ଯ୍ୟ କହିଲେ ସେମାନେ ଭିକ୍ଷାଚର୍ଯ୍ୟା ପାଇଁ ଗାଁ-ଗାଁକୁ ଯାଉଥିଲେ ଓ ରାସ୍ତା ଭୁଲି ସେଠି ଆସି ପହଞ୍ଚିଲେ । ଆଚାର୍ଯ୍ୟଙ୍କ ବଚନ ଶୁଣି ସେହି ଶ୍ରାବକ ତାଙ୍କୁ ଗ୍ରାମାନ୍ତରରେ ପହଞ୍ଚାଇ ଦେଲେ । ଆତ୍ମଶୋଧନ ପାଇଁ ସେ ଆଚାର୍ଯ୍ୟଙ୍କ ଠାରୁ ଅହିଂସା ଧର୍ମର ଉପଦେଶ ଗ୍ରହଣ କଲେ । ସେ ଉପଦେଶରେ କହିଲେ ଯେ ଯେଉଁ ବ୍ୟକ୍ତି ଜୀବନର ନୀତି, ଧର୍ମ ଓ ମର୍ଯ୍ୟାଦା ପାଳନ କରେ ନାହିଁ, ସେ ପରେ ପଶ୍ଚାତାପ କରେ । ଦାନ, ଶୀଳ, ତପ ଓ ସଦ୍‌ଭାବନା ବ୍ୟକ୍ତିକୁ ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ସମସ୍ତ ପ୍ରକାର ସଫଳତା ପ୍ରଦାନ କରେ । ସେ ଆଚାର୍ଯ୍ୟଙ୍କ ଏହି ଉପଦେଶରେ

ପ୍ରବ୍ରଜିତ ହୋଇ ଧର୍ମାଚରଣ କଲ । ଫଳରେ ଆୟୁ କ୍ଷୟ କରି ଅଯୋଧ୍ୟା ନଗରୀରେ ଷଟ୍‌ଖଣ୍ଡାଧିପତି ଭରତ ଚକ୍ରବର୍ତ୍ତୀର ପୁତ୍ର ହୋଇ ଜନ୍ମ ଗ୍ରହଣ କଲେ । ଋଷଭଦେବ ସମବଶରଣରେ ଭରତ ପଚାରିଲେ ଯେ ତାଙ୍କ ବଂଶରେ କିଏ ତୀର୍ଥଙ୍କର ହେବ ? ଉତ୍ତରରେ ସେ କହିଲେ—ଇକ୍ଷ୍ୱାକୁ ବଂଶରେ ମାରୀଚ ତୀର୍ଥଙ୍କର ପଦ ପାଇବ । ମାରୀଚ ଅନେକ ମତମତାନ୍ତର ବଦଳାଇ ଶେଷରେ ୨୭ ତମ ତୀର୍ଥଙ୍କର ତଥା ମହାବୀର ହେଲେ ।

ଡ଼କ୍ଟର ନେମିଚନ୍ଦ୍ର ଶାସ୍ତ୍ରୀଙ୍କ ମତ ଅନୁସାରେ ଏହି ଚରିତ କାବ୍ୟରେ ମନୋରଞ୍ଜନର ତତ୍ତ୍ୱ ଅପେକ୍ଷା ମାନସିକ ତୃପ୍ତିର ସାଧନାମାନ ବିଦ୍ୟମାନ । ଶ୍ରାବକର ଜୀବନରେ ପରୋପକାର ଉତ୍‌ଥାନ ଆଣି ଦେଇଛି । ଏଥିରେ ମାର୍ମିକ ବର୍ଣ୍ଣନା ମଧ୍ୟ ରହିଛି । ବର୍ଣ୍ଣନା ସଜୀବ ଓ ଗତିମୟ । ଭାଷା ସରଳ ଓ ପ୍ରବାହମୟ ।

ପ୍ରାକୃତରେ ଚରିତ କାବ୍ୟ ଆହୁରି ଅନେକ ରହିଛି । ସ୍ଥାନାଭାବରୁ ସେଗୁଡ଼ିକର ନାମ ମାତ୍ର ଉଲ୍ଲେଖକରି ଏହି ଅଧ୍ୟାୟଟିକୁ ଶେଷ କରାଯାଇଛି । ସୁଦଂସଣା ଚରିୟ ରଚୟିତା ଦେବେନ୍ଦ୍ର ସୂରି (ତ୍ରୟୋଦଶ ଶତାବ୍ଦୀ) । କବି ଏଥିରେ ଜୀବନର କେତେଗୁଡ଼ିଏ ତଥ୍ୟ ଉଦ୍‌ଘାଟନ କରିଛନ୍ତି । କୁମାପୁତ୍ତ ଚରିୟଂ, ରଚୟିତା ଅନନ୍ତ ହଂସ (ଷୋଡ଼ଶ ଶତାବ୍ଦୀ) । ଦାନ, ଶୀଳ, ତପାଦିର ମହତ୍ତ୍ୱ ବର୍ଣ୍ଣିତ ।

ଗଦ୍ୟ-ପଦ୍ୟ ମିଶ୍ରିତ ଚରିତ କାବ୍ୟମାନଙ୍କରେ ଚଉପନ୍ନ—ମହାପୁରିସ—ଚରିୟଂ; ଜମ୍ବୁ ଚରିୟଂ, ରୟଣଚୂଡ଼ା ଚରିୟଂ, ସିରିପାସନାହ ଚରିୟଂ, ମହାବୀର ଚରିୟଂ ଇତ୍ୟାଦି ପ୍ରସିଦ୍ଧ ।

୭

# ନାଟ୍ୟସାହିତ୍ୟ

ନାଟ୍ୟ ସାହିତ୍ୟରେ ପ୍ରଭୂତ ଜ୍ଞାନାର୍ଜନ କରିଥିବା ନାଟ୍ୟ ଶାସ୍ତ୍ରକାରମାନେ ନାଟ୍ୟ ସାହିତ୍ୟରେ ଦଶ ପ୍ରକାର ରୂପକ ଏବଂ ଅଠର ପ୍ରକାରର ଉପରୂପକ ବର୍ଣ୍ଣନା କରିଛନ୍ତି ।

ଏଥିରେ ଭାଣ, ଡିମ, ବୀଥୀ, ତୋଟକ, ସଟ୍ଟକ, ଗୋଷ୍ଠୀ, ପ୍ରେଙ୍ଖଣ, ରାସକ, ହଲ୍ଲୀଶକ ଏବଂ ଭାଣିକା ଇତ୍ୟାଦି ଲୋକନାଟ୍ୟର ବିଭିନ୍ନ ବିଭାବର ବର୍ଣ୍ଣନା ମଧ୍ୟ ରହିଛି । ଉପରୋକ୍ତ ଶବ୍ଦମାନ ପ୍ରାକୃତର ଅଟନ୍ତି । ପ୍ରହସନର ପ୍ରଚାର ମଧ୍ୟ ଜନସାଧାରଣରେ ଅଧିକ ପରିମାଣରେ ରହିଥିବ । ଭାଣରେ ଧୂର୍ତ୍ତ, କିମ୍ବା ବିଟ, ପ୍ରହସନରେ ପାଷଣ୍ଡୀ, ଚେଟ, ଚେଟୀ, ବିଟ, ନୀଚପାତ୍ର ଏବଂ ନପୁଂସକ, ଡିମରେ ଗନ୍ଧର୍ବ, ଯକ୍ଷ, ରାକ୍ଷସ, ଭୂତ, ପ୍ରେତ, ପିଶାଚ ଏବଂ ଭାଣିକାରେ ମୂର୍ଖପାତ୍ର ହୁଅନ୍ତି । ପ୍ରେଙ୍ଖଣର ନାୟକ ମଧ୍ୟ ହୀନପୁରୁଷ ହୋଇପାରେ । ହଲ୍ଲୀଶରେ ଜଣେ ମାତ୍ର ପୁରୁଷ ଓ ସ୍ତ୍ରୀ ଆଠ ଦଶ ଜଣ ଥାଆନ୍ତି । ରାସକର ଲୋକ ପରମ୍ପରା ଅତି ପ୍ରାଚୀନ । ଏହିଗୁଡ଼ିକର ଉଦାହରଣ କେବଳ ସଂସ୍କୃତରେ ହିଁ ମିଳେ । ପ୍ରାକୃତରେ ମାତ୍ର ଗୋଟିଏ ଦୁଇଟି ରୂପ ହିଁ ଉପଲବ୍ଧ । ଯେହେତୁ ନାଟକଗୁଡ଼ିକର ଅଭିନୟ ରାଜଦରବାର ମାନଙ୍କରେ ଅଧିକାଂଶ ଦୃଷ୍ଟିରୁ ହେଉଥିଲା । ଏବଂ ସଂସ୍କୃତକୁ ରାଜାଶ୍ରୟ ଶୁଭ-

ଦୃଷ୍ଟି ମିଳୁଥିଲା । ଏଣୁ ରାଜଦରବାରମାନଙ୍କରେ ସଂସ୍କୃତ ନାଟକମାନ ସଂରକ୍ଷିତ ହୋଇପାରୁଥିଲା । ପଣ୍ଡିତମାନଙ୍କ ମତ ଯେ ପ୍ରାକୃତରେ ବହୁସଂଖ୍ୟକ ନାଟକ ରଚିତ ହୋଇଥିଲା । ସମ୍ଭବତଃ ଏହି ପ୍ରକାରର ନାଟକ କେତେକାଂଶରେ ସଂସ୍କୃତରେ ରୂପାନ୍ତରିତ ହୋଇଗଲା । ପରେ ପରେ ସେଗୁଡ଼ିକର ସ୍ୱତନ୍ତ୍ର ଅସ୍ତିତ୍ୱ ହିଁ ଅନୁପଯୋଗୀ ହୋଇ ପଡ଼ିଲା । 'ମୃଚ୍ଛକଟିକ', 'ସ୍ୱୀ ପ୍ରକରଣ', 'ତ୍ରିପୁରଦାହ', 'ଡିମ', 'ରତ୍ନାବଳୀ' ଏବଂ 'ବିଦ୍ଧଶାଳଭଞ୍ଜିକା' ନାଟିକା 'ବିକ୍ରମୋର୍ବଶୀୟ ତ୍ରୋଟକ, ରୈବତମଦନିକା' ଗୋଷ୍ଠୀ 'ବିଲାସବତୀ, ନାଟ୍ୟରାସକ, ମେନକାହିତ ରାସକ ଏବଂ ବିନ୍ଦୁମତୀ ଦୁର୍ମିଳିକା' ପ୍ରଥମେ ପ୍ରାକୃତରେ ହିଁ ହୋଇଥିବାର ଅନୁମାନ କରାଯାଏ । ଏବଂ ତତ୍‌ପରେ ସଂସ୍କୃତ ଛାୟାର ବ୍ୟବହାର ବୃଦ୍ଧି ହେତୁ ମିଶ୍ରିତ ଭାଷାରେ ଲେଖାଯାଇଥିବା ବିଷୟ ମଧ୍ୟ ନୁହେଁ । ଅନେକ ସମୟରେ ଦେଖାଯାଏ ଯେ ସଂସ୍କୃତ ନାଟକର ପ୍ରାକୃତ ଅଂଶକୁ ନଦେଖି ସଂସ୍କୃତ ଛାୟାକୁ ପାଠ କରି ପାଠକମାନେ କାମ ଚଳାଇ ଦିଅନ୍ତି ।

ଭରତମୁନି ନାଟ୍ୟଶାସ୍ତ୍ରରେ ଧୀରୋଦାତ୍ତ ଏବଂ ଧୀର ପ୍ରଶାନ୍ତ ନାୟକ ରାଜପତ୍ନୀ, ଗଣିକା ଏବଂ ଶ୍ରୋତ୍ରିୟ ବ୍ରାହ୍ମଣାଦିଙ୍କ ପାଇଁ ସଂସ୍କୃତ ତଥା ଶ୍ରମଣ ତପସ୍ୱୀ, ଭିକ୍ଷୁ, ଚକ୍ରଧର, ତାପସ, ଉନ୍ମତ୍ତ, ବାଳମାତ ଗ୍ରହାଦି ଦ୍ୱାରା ପୀଡ଼ିତ ବ୍ୟକ୍ତି, ସ୍ତ୍ରୀ, ନୀଚଜାତି ଏବଂ ନପୁଂସକମାନଙ୍କ ପାଇଁ ପ୍ରାକୃତ ବୋଲିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଭିନ୍ନ ଭିନ୍ନ ପାତ୍ରଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରାକୃତ ଭାଷାମାନଙ୍କର ବ୍ୟବହାରର ଉଲ୍ଲେଖ ମିଳେ । ନାୟିକା ଓ ତାର ସଖୀଗଣ ଶୌରସେନୀ, ବିଦୂଷକାଦି ପ୍ରାଚ୍ୟା (ପୂର୍ବଶୌରି), ଧୂର୍ତ୍ତମାନଙ୍କ

ଦ୍ୱାରା ଅବନ୍ତିକା (ଅବନ୍ତୀରେ କଥିତ) ଚେଟ, ରାଜପୁତ୍ର ଏବଂ ଶ୍ରେଷ୍ଠୀମାନଙ୍କ ଦ୍ୱାରା ଅର୍ଦ୍ଧମାଗଧୀ, ରାଜାଙ୍କ ଅନ୍ତଃପୁରରେ ରହୁଥିବା ଲୋକ ସୁରଙ୍ଗ ଖୋଳିବା ଲୋକେ, ସିନ୍ଧ ଖୋଳିବା ଲୋକେ ଘୋଡ଼ା ଜଗୁଆଳ ଏବଂ ଆପତ୍ତିଗ୍ରସ୍ତ ନାୟିକାମାନେ ମାଗଧୀ ଇତ୍ୟାଦିର ଉଲ୍ଲେଖ ନାଟ୍ୟଶାସ୍ତ୍ରରେ ମିଳେ ।

ମୃଚ୍ଛକଟିକରେ ବିଦୂଷକ ମୁହଁରେ ଶୂଦ୍ରକ କହିଛନ୍ତି ଯେ ଦୁଇଟି ବିଷୟ ହାସ୍ୟରସ ସୃଷ୍ଟି କରେ । ଯଥା ସ୍ତ୍ରୀର ସଂସ୍କୃତ କହିବା ଏବଂ ପୁରୁଷରେ ନିମ୍ନସ୍ୱରରେ ଗାଇବା । କେତେକ ସ୍ଥଳରେ ସୂତ୍ରଧର ସଂସ୍କୃତ କହିବାର ଦେଖାଯାଏ । କିନ୍ତୁ ସ୍ତ୍ରୀ-ମାନଙ୍କୁ ସମ୍ବୋଧନ କଲାବେଳେ ପ୍ରାକୃତର ପ୍ରୟୋଗ କରିଥାଏ । ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରଚିତ ନାଟକମାନଙ୍କରେ ଜନ-ସାଧାରଣଙ୍କ ଭାଷା ପାଇଁ ପ୍ରାକୃତର ପ୍ରୟୋଗ ଖୁବ୍ ସ୍ୱାଭାବିକ । କାରଣ ପ୍ରାକୃତ ଥିଲା ସେକାଳର 'ଗଣଭାଷା' ।

ନାଟକରେ ସର୍ବପ୍ରଥମେ ପ୍ରାକୃତର ପ୍ରୟୋଗ **ଅଶ୍ୱଘୋଷଙ୍କ** ନାଟକରେ ମିଳେ (ସମୟ ପ୍ରାୟ ୧୦୦ ଖ୍ରୀଷ୍ଟାବ୍ଦ) । ଏଗୁଡ଼ିକରେ ମାଗଧୀ ଏବଂ ଶୌରସେନୀର ପ୍ରାଚୀନ ରୂପ ମିଳେ । ଲୁଡର୍ସଙ୍କ ଅନୁସାରେ ଦୁଷ୍ଟ ମାଗଧୀରେ ଗଣିକା, ବିଦୂଷକ ଶୌରସେନୀରେ ଏବଂ ତାପସ ଅର୍ଦ୍ଧମାଗଧୀରେ ବୋଲୁଛନ୍ତି । ଏହି ପ୍ରାକୃତ ଭାଷାମାନ ଅଶୋକୀୟ ଶିଳାଲେଖ-ପ୍ରାକୃତ ସହ ସାମଞ୍ଜସ୍ୟ ଦର୍ଶାଏ । ଯାହା ପରବର୍ତ୍ତୀ କାଳର ପ୍ରାକୃତ ଭାଷାମାନଙ୍କୁ ବୁଝିବାରେ ଯଥେଷ୍ଟ ସାହାଯ୍ୟ କରିଛି ।* 'ସାରିପୁତ୍ର ପ୍ରକରଣ'

* ପ୍ରା: ସା: ଇତିହାସ ପୃ-୭୧୪

ଓ ଅନ୍ୟ ଦୁଇଟି ଅପୂର୍ଣ୍ଣ ନାଟକ ମଧ୍ୟ ମିଳନ୍ତି । 'ସାରିପୁତ୍ର ପ୍ରକରଣ' ରେ ଗୌତମ ବୁଦ୍ଧ ଦ୍ୱାରା ମୌଦ୍‌ଗଲ୍ୟାୟନ ଏବଂ ଶାରିପୁତ୍ରଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରାଯାଇଥିବା କଥା ବର୍ଣ୍ଣିତ ।*

ଭାସ (୩୫୦ ଖ୍ରୀଷ୍ଟାବ୍ଦ ପୂର୍ବେ) ଙ୍କ ସ୍ୱପ୍ନବାସବଦତ୍ତା, ପ୍ରତିଜ୍ଞା ଯୌଗନ୍ଧରାୟଣ, ଅବିମାରକ, ଚାରୁଦତ୍ତ, ପ୍ରତିମା, ଅଭିଷେକ ନାଟକ, ପଞ୍ଚରାତ୍ର, ମଧ୍ୟମବ୍ୟାୟୋଗ, ଦୂତବାକ୍ୟ, ଦୂତଘଟୋତ୍କଚ, କର୍ଣ୍ଣଭାର, ଊରୁଭଙ୍ଗ ଏବଂ ବାଲଚରିତ ଆଦି ୧୩ଟି ନାଟକ । ଏ ଗୁଡ଼ିକ ମଧ୍ୟରୁ 'ଅବିମାରକ' ଏବଂ 'ଚାରୁଦତ୍ତ' ପ୍ରାକୃତ ଭାଷା ଦୃଷ୍ଟିରୁ ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଅବିମାରକରେ ଅବିମାରକ ଏବଂ ରାଜକୁମାରୀ କୁରଙ୍ଗୀର ପ୍ରେମକଥା ଓ ବିବାହ ସୂତ୍ରରେ ଆବଦ୍ଧ କଥା ବର୍ଣ୍ଣିତ ।

'ଚାରୁଦତ୍ତ' ରେ ଚାରୁଦତ୍ତ ଏବଂ ଗଣିକା ଶ୍ରେଣୀ ବେଶ୍ୟା ବସନ୍ତସେନାର ପ୍ରକୃତ ପ୍ରେମର ମର୍ମସ୍ପର୍ଶୀ ବର୍ଣ୍ଣନା ରହିଛି । ଏହି ନାଟକର ଦ୍ୱିତୀୟ ଅଙ୍କରେ ସଂସ୍କୃତ ନାହିଁ, ଚତୁର୍ଥ ଅଙ୍କରେ

* X X X X the great career of the Buddha as the teacher of gods and men. The same holds true of the Sariputta episode which is made the main theme of Asvaghosa's drama, the Sariputra prakarana. X X X The dramatic art employed in the Sariputra prakarana is essentially the one and the same art of eelineation of characters'. ( ଲ, ବିମଲ ଚରନ୍ ଅଶ୍ୱଘୋଷ The Royal Asiatic Society of Bengal, 1946 ପୃ ୭୬-୭୭ )

ଜଣେ ପାତ୍ର ମାତ୍ର ସଂସ୍କୃତ କହେ । ଅନ୍ୟ ଦୁଇଟି ଅଙ୍କରେ ପ୍ରାକୃତର ପ୍ରୟୋଗ ଖୁବ୍ ବେଶୀ । ପରବର୍ତ୍ତୀ କାଳରେ ଏହାର ଅବଲମ୍ବନରେ 'ମୃଚ୍ଛକଟିକ' ପ୍ରକରଣ ଲେଖା ହୋଇଥିବା ଜଣାଯାଏ । ଦୂତ କାବ୍ୟ ଓ ପଞ୍ଚରାତ୍ର ବ୍ୟତୀତ ଅନ୍ୟ ନାଟକ-ମାନଙ୍କରେ ପ୍ରାକୃତର ପ୍ରୟୋଗ ମିଳେ ।

ଶୂଦ୍ରକଙ୍କ ମୃଚ୍ଛକଟିକ (ସମ୍ଭବ ପ୍ରାୟ ଖ୍ରୀ: ଅ: ୫ମ ଶତାବ୍ଦୀ) ଏକ ସାମାଜିକ ନାଟକ । ଏଣୁ ଏଥିରେ ସମାଜର ଯଥାର୍ଥ ଚିତ୍ର ରହିଛି । ଏଥିରେ ସଂସ୍କୃତ ଅପେକ୍ଷା ପ୍ରାକୃତର ପ୍ରୟୋଗ ବେଶୀ । ପାତ୍ର ସଂଖ୍ୟା ୩୦ରୁ ଊର୍ଦ୍ଧ । ଟୀକାର ପୃଥ୍ୱୀଧରଙ୍କ ଅନୁସାରେ ସୂତ୍ରଧାର, ନଟୀ, ରଦନିକା, ମଦନିକା, ବସନ୍ତସେନା ତାର ମା', ଚେଟୀ, କର୍ଣ୍ଣପୂରକ, ଚାରୁଦତ୍ତର ବ୍ରାହ୍ମଣୀ ଶୋଧନକ ଏବଂ ଶ୍ରେଷ୍ଠୀ ଶୌରସେନୀରେ; ବୀର ଏବଂ ଚନ୍ଦନକ ଅବନ୍ତୀରେ ବିଦୂଷକ ପ୍ରାଚ୍ୟରେ ସଂବାହକ, ସ୍ଥାବରକ, କୁମ୍ଭୀଲକ, ବର୍ଦ୍ଧମାନକ, ଭିକ୍ଷୁ ଏବଂ ରୋହସେନ ମାଗଧୀରେ; ଶକାର ଶକାରୀରେ; ଚଣ୍ଡାଳ ଚାଣ୍ଡାଳୀରେ, ମାଥୁର ଏବଂ ଦ୍ୟୂତକର ଢକ୍କୀରେ ତଥା ଶକାର, ସ୍ଥାବରକ ଏବଂ କୁମ୍ଭୀଲକ ଇତ୍ୟାଦି ମାଗଧୀରେ କଥାବାର୍ତ୍ତା କରନ୍ତି । ଏହାର ଭାଷା ଭରତଙ୍କ ନାଟ୍ୟ-ଶାସ୍ତ୍ର ଅନୁସାରେ ଲିଖିତ । ଶୌରସେନୀ ଓ ମାଗଧୀର ପ୍ରୟୋଗ ବେଶୀ । ଏଥିରେ ଭାଷାର ବୈଶିଷ୍ଟ୍ୟ ଏବଂ ବୈଭବ ଲକ୍ଷଣୀୟ । ଏହି ନାଟକଟି ପ୍ରାକୃତ ଭାଷା ଅଧ୍ୟୟନ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱ-ପୂର୍ଣ୍ଣ ।

ମହାକବି କାଳିଦାସ ( ଖ୍ରୀ: ଅ ଚତୁର୍ଥ ଶତାବ୍ଦୀ ) ମଧ୍ୟ ପ୍ରାକୃତ ଭାଷାର ଜଣେ ମହାନ୍ ପ୍ରେମୀ ଥିଲେ । ତାଙ୍କ ରଚନାରେ

ଗଦ୍ୟ ପାଇଁ ଶୌରସେନୀ ଓ ପଦ୍ୟ ପାଇଁ ପ୍ରାୟତଃ ମହାରାଷ୍ଟ୍ରୀ ବ୍ୟବହାର କରିଥିଲେ । ନପୁଂସକ, ଜ୍ୟୋତିଷ ଏବଂ ଋଷିପ୍ତ ଶୌରସେନୀରେ କଥାବାର୍ତ୍ତା ହେଉଥିଲେ । ସ୍ତ୍ରୀ ଏବଂ ଶିଶୁ ମହାରାଷ୍ଟ୍ରୀ, ପୋଲିସ କର୍ମଚାରୀ ଏବଂ କେଉଟମାନେ ମାଗଧୀରେ କହୁଥିଲେ । ପ୍ରାକୃତ ସମାସାନ୍ତ ପଦାବଳୀରେ ସଂସ୍କୃତର ପ୍ରଭାବ ପରିଲକ୍ଷିତ ହୁଏ । ପ୍ରାକୃତର ସୁକୁମାର ଶବ୍ଦବିନ୍ୟାସ ଓ ଅପର୍ଯ୍ୟାପ୍ତ ପ୍ରବାଦ ଓ ପ୍ରବଚନାଦି ହେତୁ ନାଟକ ରମଣୀୟ ହୋଇପାରିଛି । ମାଳବିକାଗ୍ନିମିତ୍ର ଏବଂ ବିକ୍ରମୋର୍ବଶୀୟରେ ପ୍ରାକୃତର ପ୍ରୟୋଗ ପ୍ରଚୁର ମାତ୍ରାରେ ଉପଲବ୍ଧ । ମାଳରେ ଚେଟୀ, ବକୁଳାବଳିକା, କୌମୁଦିକା, ପାଟବଣୀ, ମାଳବିକା, ପରିବ୍ରାଜିକା ଏବଂ ବିଦୂଷକ ପ୍ରାକୃତ କହନ୍ତି । ପ୍ରାକୃତର ସମ୍ବାଦ ଅତି ସୁନ୍ଦର ଓ ମର୍ମସ୍ପର୍ଶୀ ହୋଇଛି । ବିକ୍ରରେ ରମ୍ଭା, ମେନକା, ଚିତ୍ରଲେଖା, ଉର୍ବଶୀ ଆଦି ଅପ୍ସରାମାନେ ରାଜମହିଷୀ, କବଣୀ, ତାପସୀ ଆଦି ସ୍ତ୍ରୀ ପାତ୍ର ପ୍ରାକୃତ କହନ୍ତି । ରାଜା ଓ ତାଙ୍କ ସାଥୀମାନଙ୍କର ଭାଷା ସଂସ୍କୃତ ହେଲେ ମଧ୍ୟ ନାଟକର ବାତାବରଣ ପ୍ରାକୃତପୂର୍ଣ୍ଣ ହୋଇପାରିଛି ।

**ଶ୍ରୀହର୍ଷ** (ଖ୍ରୀ:ଅ ୬୦୦-୬୪୦) 'ପ୍ରିୟଦର୍ଶିକା', 'ରତ୍ନାବଳୀ' ଏବଂ 'ନାଗାନନ୍ଦ' ରେ ପ୍ରାକୃତ ପ୍ରଚୁର ପରିମାଣରେ ବ୍ୟବହାର କରିଛନ୍ତି । ପୁରୁଷ ପାତ୍ର କମ୍ ଏବଂ ସ୍ତ୍ରୀ ପାତ୍ର ଏବଂ ବିଦୂଷକ ଇତ୍ୟାଦି ପ୍ରାକୃତରେ କଥାବାର୍ତ୍ତା ହୁଅନ୍ତି । ପଦ୍ୟରେ ମହାରାଷ୍ଟ୍ରୀ ସହ ଶୌରସେନୀର ମଧ୍ୟ ପ୍ରୟୋଗ ମିଳେ । ଦୁରୂହ ଶବ୍ଦ ଓ କଠିନ ସମାସର ଅଭାବ ପରିଲକ୍ଷିତ ହୁଏ । 'ନାଗାନନ୍ଦ' ରେ ସଂସ୍କୃତର ପ୍ରାଧାନ୍ୟ ରହିଛି । ଏଥିରେ ବ ନଟୀ, ବିଦୂଷକ, ଚେଟୀ, ନାୟିକା, ମଲୟବତୀ, ବିଟକଙ୍କର ବୃଦ୍ଧା, ପ୍ରତିହାରୀ ଆଦି ପ୍ରାକୃତ କହନ୍ତି ।

**ଭବଭୂତି** (ଖ୍ରୀଷ୍ଟାବ୍ଦ ୭ମ ଶତାବ୍ଦୀ) ଙ୍କ ତିନୋଟି ନାଟକରେ ସଂସ୍କୃତର ପ୍ରାଧାନ୍ୟ ପରିଲକ୍ଷିତ ହେଉଥିଲେହେଁ ମହାନାଟକରେ ପ୍ରାକୃତର ପ୍ରୟୋଗ ମିଳେ । ସଂସ୍କୃତ ଆଦର୍ଶରେ ହିଁ ଶୌର-ସେନୀର ପ୍ରୟୋଗ ।

**ବିଶାଖଦତ୍ତ** ( ଖ୍ରୀଷ୍ଟାବ୍ଦ ୯ମ ଶତାବ୍ଦୀ ) ଙ୍କ 'ମୁଦ୍ରା-ରାକ୍ଷସ' ରେ ସଂସ୍କୃତର ପ୍ରାଧାନ୍ୟ ରହିଥିଲେହେଁ ଅନେକ ଦୃଶ୍ୟରେ ପ୍ରାକୃତର ପ୍ରୟୋଗ ରହିଛି । ଶୌରସେନୀ, ମହାରାଷ୍ଟ୍ରୀ ଏବଂ ମାଗଧୀର ପ୍ରୟୋଗ ଏଥିରେ ମିଳେ ।

**ଭଟ୍ଟନାରାୟଣ** ( ଖ୍ରୀଷ୍ଟାବ୍ଦ ୮ମ ଶତାବ୍ଦୀ ) ଙ୍କ ବେଣୀ ସଂହାରରେ ଶୌରସେନୀର ପ୍ରାଧାନ୍ୟ ଦେଖାଯାଏ । ତୃତୀୟ ଅଂକର ଆରମ୍ଭରେ ରାକ୍ଷସ ଓ ତାର ସ୍ତ୍ରୀ ମାଗଧୀରେ କଥାବାର୍ତ୍ତା କରିଛନ୍ତି ।

**ସୋମଦେବଙ୍କ** ଲଳିତ ବିଗ୍ରହ ରାଜ ନାଟକରେ ମହାରାଷ୍ଟ୍ରୀ ଶୌରସେନୀ ଏବଂ ମାଗଧୀର ପ୍ରୟୋଗ ମିଳେ ।

**ମହାଦେବ** କବିଙ୍କ 'ଅଦ୍ଭୁତ ଦର୍ପଣ' ରେ କବି ଜୟ-ଦେବଙ୍କ ପ୍ରଭାବ ପରିଲକ୍ଷିତ ହୁଏ । ଏଥିରେ ଅଙ୍ଗଦ ଦ୍ୱାରା ରାବଣ ନିକଟକୁ ଖବର ନେବା ଠାରୁ ରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ ପର୍ଯ୍ୟନ୍ତ ଘଟଣାବଳୀର ବର୍ଣ୍ଣନା ମିଳେ । ରକ୍ଷାସୁରୀଙ୍କ ସୂପର୍ଣ୍ଣାକୁ ଭର୍ତ୍ସନା ଦ୍ରଷ୍ଟବ୍ୟ :—

ଅପ୍ପି ମୂଢ଼େ ! ଅଦେଭ୍‌ଅଆଣି ସୁପଣହେ ! ଭକଗଣଣିମିତ୍ତଂ ମାରିଦା ଜାଣଇ ତ୍ତି । ପରିକୁବିଦୋ ଭଟ୍ଟା ଜାବନ୍ତୀ ଓ ଏଦ୍ଧ

ଅମ୍ହେ କୁକ୍କୁ ରଏଂ ଉକ୍କଷଣଂ କାଭସ୍ସଦ । ତା ସମରଗ ଅସ୍ସ
ଭତ୍ତୂଣୋ ପୁରଦୋ ଏବଂ ଜାଣେଇଉତ୍ତନ୍ତଂ ଣିବେଦନ୍ଧ । ତଦୋ
ଜଂ ହୋଇ ତଂ ହୋଦୁ ।

ଏ ମୂଢ଼ା, ଅନର୍ଥକାରିଣୀ ସୂର୍ପଣଖା, ତୁ ନିଜର ଖାଦ୍ୟ ପାଇଁ
ଜାନକୀଙ୍କୁ ମାରିପକାଇଛୁ । ସ୍ୱାମୀ କ୍ରୋଧିତ ହୋଇ ଆମ୍ଭମାନଙ୍କୁ
କୁକ୍କୁରଙ୍କୁ ଖୁଆଇ ଦେବେ । ଏଣୁ ବୃଦ୍ଧକୁ ଯିବା ପୂର୍ବରୁ ହିଁ
ସ୍ୱାମୀଙ୍କ ଆଗରେ ଚାଲ ଜାନକୀ ସମାଚାର ଜଣାଇ ଦେବା ।
ତେବେ ଯାହା ହେବାକୁ ଥିବ ହେବ ।

## ସଟ୍ଟକ

**ଅଭିନବ ଗୁପ୍ତ** (ଖ୍ରୀଷ୍ଟାବ୍ଦ ୧୦ମ ଶତାବ୍ଦୀ) ଙ୍କ ନାଟ୍ୟ
ଶାସ୍ତ୍ରର ଟୀକାରେ ସର୍ବପ୍ରଥମେ କୋହଲ ଇତ୍ୟାଦି ଦ୍ୱାରା ଲକ୍ଷ୍ୟ
ହୋଇଛି, ସଟ୍ଟକ ଏବଂ ରାସକର ପରିଭାଷା ଦେଇଥିବାବେଳେ ସଟ୍ଟକକୁ
ନାଟିକା ସଙ୍ଗେ ସମାନ ବୋଲି କୁହାଯାଇଛି । ହେମଚନ୍ଦ୍ରଙ୍କ ଅନୁ-
ସାରେ ସଟ୍ଟକ ଗୋଟିଏ ଭାଷାରେ ରଚିତ । କିନ୍ତୁ ନାଟିକାରେ
ସଂସ୍କୃତ ଓ ପ୍ରାକୃତ ଉଭୟର ପ୍ରୟୋଗ ହୋଇଥାଏ । 'କର୍ପୂର
ମଂଜରୀ' ଅନୁସାରେ

ସୋ ସଟ୍ଟଓ ତ୍ତି ଭଣଇ ଦୂରଂ ଜୋ ଣାଡ଼ିଆଇ ଅଣୁ ହରଇ ।
କିଂ ଉଣ ପବେସବିକ୍ଖମ୍ଭାଇଂ କେବଲଂଣ ଦୀସନ୍ତି ॥ ୧୬

ଯେଉଁଥିରେ ଅଙ୍କ, ପ୍ରବେଶକ ଏବଂ ବିଷ୍କମ୍ଭକ ନଥାଏ ସେହି
ନାଟିକାକୁ ସଟ୍ଟକ କହନ୍ତି । ଅଙ୍କଗୁଡିକୁ 'ଜବନିକା' କୁହାଯାଏ ।
ଏଥିରେ ସନ୍ଧି ନଥାଏ । ପ୍ରଧାନ ରସ ହେଉଛି ଶୃଙ୍ଗାର । ଅନ୍ୟ
ରସ ଗୌଣ ଭାବରେ ଆସେ । ରୌଦ୍ର ରସର ସ୍ଥାନ ଏଥିରେ

ନାହିଁ । ତାର ଉପମାନକ ଏବଂ ମାତ୍ରର କମ୍ ପ୍ରୟୋଗ ମିଳେ । ଅଦ୍ଭୁତ ରସ ଅବଶ୍ୟ ରହିଥାଏ । କଥା କବି କଳ୍ପନା ପ୍ରସୂତ । ନାୟକ, ରାଜା ଓ ନାୟିକା ରାଣୀ କିମ୍ବା ହଂସପୁର ସହ ସମ୍ବନ୍ଧ ରଖିଥିବା କିମ୍ବା ରାଜବଂଶ ଅଥବା ସଂଗୀତ ଶାଳାର କୌଣସି ଅତ୍ୟନ୍ତ ଗୁଣବନ୍ତୀ କନ୍ୟା । ସ୍ତ୍ରୀ-ପାତ୍ର ଅଧିକ । ସେହିମାନଙ୍କ ମଧ୍ୟରେ ଦେବୀ, ମହାରାଣୀ ଏବଂ ଦୂତୀ ମଧ୍ୟ ଆସନ୍ତି । ନାୟକ, ନାୟିକା ହେବେବା ସାହାଯ୍ୟ ଅଥବା ଅନୁମତିରେ ବିବାହ କରେ । ନାୟକ ଧୀରୋଦାତ୍ତ ଏବଂ ନାୟିକା ମୁଗ୍ଧା; ଦିବ୍ୟା ଏବଂ ମନୋହର ହୁଏ । ସଟ୍ଟକରେ ନୃତ୍ୟର ଆବଶ୍ୟକତା ରହିଛି । ଦ୍ରାବିଡ ଭାଷାରେ, ଆଟ୍ଟ(ମ)ର* ଅର୍ଥ ହେଉଛି 'ନୃତ୍ୟ, ଅଭିନୟ' ଯାହା ଅଡ୍ଡ୍ ବା ଆଡ୍ ଧାତୁରୁ ବ୍ୟୁତ୍ପନ୍ନ ଏବଂ ଯାହାର ଅର୍ଥ ହେଉଛି ନାଚିବା କିମ୍ବା ହାବ-ଭାବ ଦେଖାଇବା । ସଟ୍ଟକ ସମ୍ଭବତଃ ସ+ଅଟ୍ଟ+କ ରୁ ଗଠିତ । 'ସଟ୍ଟକ' ର ନାମ ନାୟିକାର ନାମରେ ହିଁ ନାମିତ । କର୍ପୂରମଂଜରୀ, ବିଳାସବତୀ, ଲୀଳାବତୀ, ରମ୍ଭା ମଂଜରୀ ଚନ୍ଦ୍ରଲେଖା, ଶୃଙ୍ଗାର ମଂଜରୀ, ଆନନ୍ଦ ସୁନ୍ଦରୀ ଇତ୍ୟାଦି ।

## ॥ ୧ ॥ କର୍ପୂର ମଂଜରୀ

ଏହା ସଟ୍ଟକମାନଙ୍କ ମଧ୍ୟରେ ସର୍ବାପେକ୍ଷା ଉତ୍ତମ । ଏହାର ରଚୟିତା ହେଉଛନ୍ତି ସଂସ୍କୃତର ପ୍ରସିଦ୍ଧ କବି ରାଜଶେଖର । ସେ ଯାଯାବର ବ୍ରାହ୍ମଣ ଥିଲେ ଓ କନୌଜ ନରପତି ମହେନ୍ଦ୍ର-

---

* ତାମିଲ: ଆଟମ୍ 'ନୃତ୍ୟ, ଅଭିନୟ'

ଦ୍ରଷ୍ଟବ୍ୟ : A Dra Vidian Etymological Dictionary by T. Burrow & M. B. Emenean. OUP. 1961, 290.

ପାଳଙ୍କ ଉପାଧ୍ୟାୟ ଓ ରାଜକବି ଥିଲେ । ଏହାଙ୍କ ପିତା କୌଣସି ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ । ଏହାଙ୍କ ପତ୍ନୀ ଅବନ୍ତୀସୁନ୍ଦରୀ ମଧ୍ୟ ଜଣେ ବିଦୁଷୀ ଓ କବୟିତ୍ରୀ ଥିଲେ । ଏହାଙ୍କ ମନୋରଂଜନ ଯୋ ରାଜଶେଖର 'କର୍ପୂରମଂଜରୀ' ଲେଖିଲେ । 'କାବ୍ୟ-ମୀମାଂସା' ଏହାଙ୍କ ଅନ୍ୟତମ କୃତି । ଏହାଙ୍କ ସମୟ ସନ୍ ୮୭୪ ରୁ ୯୨୫ ମଧ୍ୟରେ ବୋଲି କୁହାଯାଏ । ରାଜଶେଖର କାବ୍ୟଶାସ୍ତ୍ରର ଜଣେ ବିଖ୍ୟାତ ଆଚାର୍ଯ୍ୟ ଥିଲେ । କର୍ପୂରମଂଜରୀରେ ପ୍ରାୟତଃ ଶୌରସେନୀ ପ୍ରାକୃତ ବ୍ୟବହୃତ । କେତେକ ସ୍ଥଳରେ ପଦ୍ୟରେ ମହାରାଷ୍ଟ୍ରୀ ଆଡ଼କୁ ପ୍ରାକୃତ ଲେଖିବାର ମନବଳାଇଛନ୍ତି ।

ପରୁସା ସକ୍‌କ ଅବନ୍ଧା ପାଉ ଅବନ୍ଧୋ ବି ହୋଇ ସୁଉମାରେ
ପୁରୁସ ମହିଳାଣଂ ଜେତ୍ତି ଅମହନ୍ତରଂ ତେତ୍ତି ଅମିମାଣଂ ॥

'ସଂସ୍କୃତର ରଚନା ପୁରୁଷ ଏବଂ ପ୍ରାକୃତର ରଚନା ସୁକୁମାର । ପୁରୁଷ ଏବଂ ମହିଳାମାନଙ୍କର ଯେତିକି ଅନ୍ତର, ଠିକ୍ ସେତିକି ଅନ୍ତର ସଂସ୍କୃତ ଓ ପ୍ରାକୃତ କାବ୍ୟରେ ବୋଲି ବୁଝିବାକୁ ହେବ ।' ଏଥିରେ ଗୃହବେଷ୍ଟି ଜବନିକାନ୍ତରରେ କୁଂତଳ କୁମାରୀ, କର୍ପୂର ମଂଜରୀ ଏବଂ ରାଜା ଚନ୍ଦ୍ରପାଳଙ୍କ ପ୍ରଣୟ କାହାଣୀ ବର୍ଣ୍ଣିତ । ରାଣୀ ଭ୍ରମଲେଖାଂକ ଈର୍ଷା ହେତୁ ନାୟକ ନାୟିକାଂକ ପ୍ରେମରେ ବହୁ ବାଧା ଉପସ୍ଥିତ ହୁଏ । ଦୁହେଁ ଗୁପ୍ତ-ଭାବରେ ମିଶୁଥାନ୍ତି । ଏଥିରେ ବାଧା ସୃଷ୍ଟି ଏବଂ ନାୟକ ନାୟିକାଂକ ମିଳନ ବାହାନାରେ ନାଟ୍ୟକାର ସ୍ୱୀୟ କଳ୍ପନାର ମୌଳିକତା ଦେଖାଇଛନ୍ତି । ରାଣୀ ସୁଡ଼ଙ୍ଗ ବନ୍ଦ କରାଇ ଦେବାରୁ ଭୈରବାନନ୍ଦ ତାନ୍ତ୍ରିକଂକ ସହାୟତାରେ ନୂତନ ସୁଡ଼ଙ୍ଗ ବାହାର

କରାଇ ଶେଷରେ ବଟ-ସାବିତ୍ରୀ ମହୋତ୍ସବରେ ରାଣୀ ନିଜ ପତିଙ୍କ ମଙ୍ଗଳ କାମନାରେ ପ୍ରେରିତ ହୋଇ ବିବାହ ପାଇଁ ଅନୁମତି ଦେଇ ଦିଅନ୍ତି । କାରଣ ଏହି ବିବାହ ଦ୍ୱାରା ରାଜ୍ୟ ବିସ୍ତାରର ଆଶା କରାଯାଇଛି ।

ବସନ୍ତ, ସନ୍ଧ୍ୟା, ଚନ୍ଦ୍ରୋଦୟ, ଋତୁସୌନ୍ଦର୍ଯ୍ୟ, ରୂପସଜ୍ଜା ଆଦି ବର୍ଣ୍ଣନ କବି କର୍ମ ସୁଲଭ । ଏହାର ପ୍ରେମଗୀତ ବହୁତ ସୁନ୍ଦର ହୋଇପାରିଛି । ବିରହ ବର୍ଣ୍ଣନାରେ ନାଟ୍ୟକାର ସ୍ୱୀୟ ପ୍ରାକୃତ କାବ୍ୟ-ପ୍ରତିଭାର ପରିଚୟ ଦେଇଛନ୍ତି । ଏହାର ଗୀତି ସୌନ୍ଦର୍ଯ୍ୟ ଅନୁପ୍ରାସ ମାଧୁର୍ଯ୍ୟ ଏବଂ ପଦ-ଲାଳିତ୍ୟ ଦର୍ଶନୀୟ । ତତ୍କାଳୀନ ଭାଷାଶୈଳୀର ସୁନ୍ଦର ଚିତ୍ର ମିଳେ । ଏହାର ବିଶେଷତ୍ୱ ଛନ୍ଦର ବୈଚିତ୍ର୍ୟରେ ଦର୍ଶନୀୟ । ଗଦ୍ୟରେ ରୂଢ଼ି ଓ ପ୍ରବଚନାଦିର ପ୍ରୟୋଗ ମିଳେ । ଆର୍ଯ୍ୟା, ଶାର୍ଦ୍ଦୁଳ ବିକ୍ରୀଡ଼ିତ, ବସନ୍ତତିଲକା, ବିଷ୍ଟୁପ୍, ଶୋକ ଏବଂ ଦ୍ରୁତ ଧାରା ଉଲ୍ଲେଖଯୋଗ୍ୟ ।

## । ୨ । ବିଲାସବତୀ

ବିଳାସବତୀର ଲେଖକ ପ୍ରାକୃତ ବ୍ୟାକରଣ 'ପ୍ରାକୃତ ସର୍ବସ୍ୱ'ର ରଚୟିତା ମାର୍କଣ୍ଡେୟ† (ପ୍ରାୟଃ ସପ୍ତଦଶ ଶତାବ୍ଦୀ) । ଏହି ରଚନାଟି ଅପ୍ରାପ୍ୟ । ସାହିତ୍ୟ ଦର୍ପଣର ରଚୟିତା ବିଶ୍ୱନାଥ ବିଳାସବତୀ ନାମକ ଏକ 'ନାଟ୍ୟରାସକ'ର ଉଲ୍ଲେଖ କରିଛନ୍ତି ।†† ପ୍ରାକୃତ ସର୍ବସ୍ୱରେ ନିମ୍ନଲିଖିତ ଗାଥା ପ୍ରାପ୍ତ—ପାଣାଅ ଗଓ ଉମରେ ଲବଉଇ ଦୁକଖଂ ଗଇନ୍ଦେସୁ ସୁହାଅ ରକ୍ଷକର ହୋଇ ରଣ୍ଣେ ।*

---

† ଦ୍ରଷ୍ଟବ୍ୟ : ୯ ଲୁଇଗି ନିତ୍ତି-ଦୋଲ୍‌ଚି କୃତ The Prakrit Grammarians ଦିଲ୍ଲୀ 1972 ପୃ: ୯୪ ।

†† ଦ୍ରଷ୍ଟବ୍ୟ : ସନ୍ଧିଚତୁଷ୍ଟୟବତୀ ଯଥା ବିଳାସବତୀ—ସାହିତ୍ୟଦର୍ପଣ

* ପ୍ରାକୃତ ସର୍ବସ୍ୱ (୫/୧୩୧) ଅହମଦାବାଦ ୧୯୬୮ ।

## । [illegible] । ଲୀଲାବତୀ

ମାଲବାରର ପ୍ରସିଦ୍ଧ ପ୍ରବଂଧ କବି ରାମପାଣିବାଦଙ୍କ ଏହା ବୀଥି ଅଟେ । ଏଥିରେ ମାତ୍ର ଗୋଟିଏ ଅଙ୍କହିଁ ଥାଏ । ଏକ, ଦୁଇ କିମ୍ବା ଅତି ଅଧିକରେ ତିନୋଟି ମାତ୍ର ପାତ୍ର ଥାଆନ୍ତି । ଏଥିରେ ଶୃଙ୍ଗାର ରସର ପ୍ରାଧାନ୍ୟ ଖୁବ୍ ବେଶି ଉପଲବ୍ଧ ହୁଏ । ଏହି କାରଣରୁ ଏହା ରଜା ଦେବନାରାୟଣଙ୍କ ସମ୍ମୁଖରେ ଅଭିନୀତ ହୋଇଥିଲା । ବୀଥିର ଭାଷା ସାଧାରଣତଃ କୃତ୍ରିମ ।

## । ୪ । ଚନ୍ଦ୍ରଲେଖା

ଏହି ସଟ୍ଟକଟି ୧୬୬୦ ଖ୍ରୀଷ୍ଟାବ୍ଦରେ ରଚିତ । ଏହାର ଲେଖକ କାଲିକଟ ନିବାସୀ ରୁଦ୍ର ଦାସ ପାରଶବ ବଂଶରେ ଜନ୍ମ ଗ୍ରହଣ କରିଲେ ।

ଚାରୋଟି ଜବନିକାନ୍ତର ବିଶିଷ୍ଟ ଏହି ସଟ୍ଟକରେ ମାନଦେବ ଓ ଚନ୍ଦ୍ରଲେଖାଙ୍କ ବିବାହ ବର୍ଣ୍ଣନା ମିଳେ । ଏଥିରେ ଶୃଙ୍ଗାରର ପ୍ରାଧାନ୍ୟ ରହିଛି । ଏହାର ଶୈଳୀ ଓଜପୂର୍ଣ୍ଣ । କଥାବାର୍ତ୍ତା ଅତ୍ୟନ୍ତ ସୁନ୍ଦର । ଚିନ୍ତାମଣି ଦେବଙ୍କ କୃପାରୁ ସଂସାରର ସୁନ୍ଦରତମ ଯୁବତୀ ଅଙ୍ଗରାଜ ଚନ୍ଦ୍ରବର୍ମାଙ୍କ କନ୍ୟା ଚନ୍ଦ୍ରଲେଖା ମାନଦେବଙ୍କ ନିକଟକୁ ଆସିଲା । ତାକୁ ଦେଖିବା ମାତ୍ରେହିଁ ରାଜା ମୋହିତ ହୋଇଗଲେ । ପଟ୍ଟମହିଷୀଙ୍କ ଭୟରେ ଆଶଙ୍କିତ ରାଜା ଲୁକ୍କାୟିତ ଭାବରେ ଚନ୍ଦ୍ରଲେଖା ସହ ଦେଖା କରୁଥିଲେ । ପାଟରାଣୀ ଏହି ଗୁପ୍ତପ୍ରେମ ରହସ୍ୟକୁ ଜାଣି ପାରିଲେ ଓ ଚନ୍ଦ୍ରଲେଖା ରାଣୀଙ୍କ ମାଉସୀର ଝିଅ, ରାଣୀ ଏ କଥା ଆଦୌ ଜାଣି ନଥିଲେ । ଚନ୍ଦ୍ରଲେଖାଙ୍କ ଭାଇ ଚନ୍ଦ୍ରକେତୁ ତାକୁ ଖୋଜ ଖୋଜ ପରିଶେଷରେ ସେଠି ପହଞ୍ଚିଲେ । ରାଣୀ ତାଙ୍କ ଭାଇର ଦୁଃଖଜନକ ଅବସ୍ଥା ଦେଖି ସେ ଚନ୍ଦ୍ରକେତୁଙ୍କ

ଭଗିନୀଙ୍କୁ ଖୋଜିବାକୁ ରାଜାଙ୍କୁ ବିନୀତ ଅନୁରୋଧ କଲେ । ଚିନ୍ତାମଣି ଦେବତାଙ୍କ ସାହାଯ୍ୟରେ ଚନ୍ଦ୍ରଲେଖାଙ୍କୁ ଉଦ୍ଧାର କଲେ ଓ ଚନ୍ଦ୍ରଲେଖା ସଭିଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ପରିଶେଷରେ ଦେବତାଙ୍କ ନିର୍ଦ୍ଦେଶରେ ରାଜା ଓ ଚନ୍ଦ୍ରଲେଖାର ବିବାହ ପାଇଁ ରାଣୀଙ୍କ ଅନୁମତି ନେଲେ । କାରଣ ଚନ୍ଦ୍ରଲେଖା ସହିତ ବିବାହ ଫଳରେ (ଦେବତା କହିଲେ ଯେ) ରାଜା ଚକ୍ରବର୍ତ୍ତୀ ସମ୍ରାଟ ହୋଇ ପାରିବେ ।

ଏହି ସଟ୍ଟକର ପ୍ରାରମ୍ଭରେ ଚକ୍ରବର୍ତ୍ତୀ ହେବାର ମହତାକାଂକ୍ଷା ଦ୍ରଷ୍ଟବ୍ୟ । ଶୈଳୀ କର୍ପୂରମଞ୍ଜରୀର ଶୈଳୀ ସହ ସାମଞ୍ଜସ୍ୟ ରଖେ । ଏହା ଗୋଟିଏ ସୁନ୍ଦର ରଚନା । ଶବ୍ଦାଳଙ୍କାର ଓ ସମାସାନ୍ତ ପଦାବଳୀ ବାହୁଲ୍ୟ ହେତୁ କୃତ୍ରିମ ଜଣାପଡ଼େ । ପଦ୍ୟଗୁଡ଼ିକରେ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ଅତି ସୁନ୍ଦର ହୋଇ ପାରିଛି । ନବଚନ୍ଦ୍ରର ଉଦାହରଣ ନିମ୍ନରେ ପ୍ରଦତ୍ତ :

ଚଦଣ — ଚଉଅ — ସର — ଦସନ୍ତେ ।
ଗରୁ — ଚଓର — ସୁହାଇ — କୁଣନ୍ତେ ।
ଘର — ପସାଣଅ — ପୀହଇ — ବୁଧେ ।
ପାସଇ — ଧଣ୍ଣେରିସୋ ଶିବ — ଚନ୍ଦେ ॥୩୨୧॥

ଅର୍ଥାତ୍, ସବୁ ଦିଗ ଦିଗନ୍ତକୁ ଚନ୍ଦନ-ଚର୍ଚ୍ଚିତ କରି, ସୁନ୍ଦର ଚକୋର ପକ୍ଷୀଗୁଡ଼ିକୁ ସୁଖ ପ୍ରଦାନ କରି, ନିଜ କିରଣ ସମୂହକୁ ଦୂର ଦୂରାନ୍ତକୁ ପ୍ରସାର କରି ସରସ ନବଚନ୍ଦ୍ରମା ଦେଖାଯାଏ ।

## ॥ ୫ ॥ ରମ୍ଭାମଞ୍ଜରୀ

ଏହାର ଲେଖକ ନୟଚନ୍ଦ୍ର (୧୪ଶ ଶତାବ୍ଦୀ) ଭାଷାରେ କବିତାକାର ରାଜାମାନଙ୍କୁ ମନୋରଞ୍ଜନ କରିବାରେ ନିପୁଣ ଥିଲେ ।

ନିଜେ ନାଟ୍ୟକାରଙ୍କ ଉକ୍ତି ଯେ—ଏହା 'କର୍ପୂର ମଞ୍ଜରୀ' ଠାରୁ ଅଧିକ ସୁନ୍ଦର । ବାସ୍ତବରେ ଏହା ସେମିତି କିଛି ଉଚ୍ଚକୋଟୀର ନୁହେଁ । ଯଦିଓ କଥାରେ କିଛି ମୌଳିକତା ରହିଛି । କିନ୍ତୁ ସେତେ ରୁଚିକର ନୁହେଁ । ପଦ୍ୟ ମଧ୍ୟ ଅପେକ୍ଷାକୃତ ସେତେ ଭଲ ନୁହେଁ । ଏହା ଛଅ ଜବନିକାନ୍ତର ବିଶିଷ୍ଟ ସଟ୍ଟକ । ଏଥିରେ ସଂସ୍କୃତର ପ୍ରୟୋଗ ମିଳେ ।

ବନାରସ ରାଜା ଜୈତଚନ୍ଦ୍ରଙ୍କ ସାତ ରାଣୀ । ତାଙ୍କର ଲାଟନରେଶ ଦେବରାଜଙ୍କ କନ୍ୟା ରମ୍ଭା ସହ ପ୍ରେମ ଥିଲା ଏବଂ ତା ସହ ସେ ବିବାହ କରିବାକୁ ଚାହୁଁଥିଲେ । ରାଜା ମଦନ ଜ୍ୱରରେ ପୀଡ଼ିତ ହୋଇ ରମ୍ଭାର ଖବର ଜାଣିବାକୁ ନାରାୟଣ ଦାସଙ୍କୁ ପଠାଇଲେ । ନାରାୟଣ ରମ୍ଭାକୁ ସଙ୍ଗରେ ନେଇ ଆସିଲେ । ରମ୍ଭା ଅନ୍ୟତ୍ର ବିବାହ କରି ସୁଦ୍ଧା ଜୈତଚନ୍ଦ୍ରଙ୍କ ପ୍ରେମରେ ଆନନ୍ଦ ଲାଭ କରିବାକୁ ଲାଗିଲା । କର୍ପୂରିକା (ପାଟରାଣୀଙ୍କ ସଖୀ) ସାହାଯ୍ୟରେ ରମ୍ଭା ଜୈତଚନ୍ଦ୍ର ସହ ମିଶିପାରିଲା । ମହାଦେବୀର ଭୟରେ ରମ୍ଭାକୁ ସ୍ୱସ୍ଥାନକୁ ପଠାଇ ଦିଆଗଲା । ପରେ କର୍ପୂରିକା ସହ ମହାଦେବୀ ଆସିଲେ ଓ ରାଜାଙ୍କ ସହ କାମକ୍ରୀଡ଼ା କରି ସାରି ନିଜେ ନିଦ୍ରାସୁଖ ଭୁଞ୍ଜିବା ସଙ୍ଗେ ରାଜାଙ୍କୁ ରମ୍ଭା ସୁଖ କରିବାକୁ କହିଲେ । ତା'ପରେ ରମ୍ଭା ଆସିଲା ଓ ରାଜାଙ୍କୁ ତା କୋଳରେ ବସାଇ ମନୋବିନୋଦନ କଲା । ବହୁ ସମୟ ପରେ ବି ସେହି ସମୟ କ୍ଷଣାର୍ଦ୍ଧ ପରି ଜଣାଗଲା । ପରେ ସେ ରମ୍ଭାକୁ ଅପହରଣ କରାଇ ବିବାହ କରିଥିଲେ ।

ଏହି ସଟ୍ଟକଟି ଅପୂର୍ଣ୍ଣ କିମ୍ବା ଏହାର କିଛି ଅଂଶ ବିନଷ୍ଟ ହୋଇଥିବା ଜଣାପଡ଼େ । କାରଣ ଏହାର ଉଦ୍ଦେଶ୍ୟ କିଛି ବୁଝି

ହୋଇନାହିଁ । ନାୟକ ସାମନ୍ତ ବାଣ, ଯାହାର ସଂଯୁକ୍ତ ସ୍ତ୍ରୀ ଥାଇ ସୁଦ୍ଧା ପର କଳତ୍ର ରମ୍ଭା ସହ କାମକ୍ରୀଡ଼ା ପାଇଁ ମନ ବଳାଇ ଥିଲେ ଏବଂ ତାକୁ ଅପହରଣ କରି ଆଣି ତା ସହ ବିବାହ କରିବା ଅଭିଜାତ୍ୟ ସଂସ୍କାର ଅନୁକୂଳ ନୁହେଁ । କବିତା ଖୁବ୍ ସୁନ୍ଦର । ବର୍ଣ୍ଣନା ରସାତ୍ମକ, ଭାବଯୁକ୍ତ ଓ ବିବାହ ଜନିତ ମିଳନର ରସାତ୍ମକ ବର୍ଣ୍ଣନା କାବ୍ୟିକ ହୋଇ ପାରିଛି ।

## ॥ ୬ ॥ ଶୃଙ୍ଗାରମଞ୍ଜରୀ

ଆଲମୋଡ଼ା ନିବାସୀ ବିଶ୍ୱେଶ୍ୱର (୧୧ଶ ଶତାବ୍ଦୀ ପୂର୍ବାର୍ଦ୍ଧ)ଙ୍କ ଶୃଙ୍ଗାର-ମଞ୍ଜରୀ ପ୍ରାକୃତ ସାହିତ୍ୟର ବିଶିଷ୍ଟ ସଟ୍ଟକ ।

ରାଜା ରାଜଶେଖର ସ୍ୱପ୍ନରେ ଜଣେ ସୁନ୍ଦରୀକୁ ଦେଖିବା ପରେ ବିବାହରେ ବ୍ୟାକୁଳ ହୋଇଗଲେ । ରାଣୀ ରୂପରେଖାଙ୍କ ଦାସୀ ବସନ୍ତତିଲକାକୁ ସେହି ସୁନ୍ଦରୀର ଚିତ୍ର ଆଙ୍କିବାକୁ କହିଲେ । ଚିତ୍ରକୁ ଦେଖି ଦାସୀ କହିଲା—ସେ ତାର ସଖୀ ଓ ସେ ବି ରାଜାଙ୍କ ପାଇଁ ବିକଳ । ରାଣୀ ରାଜାଙ୍କୁ ମଦନ ପୂଜାକୁ ଡାକିଲେ । ଏଣେ ଉଦ୍ୟାନରେ ବସନ୍ତତିଲକା କଳ କଲେ । ରାଣୀ ସେହି କଳ ଲୁଚାଇ ରାଜାଙ୍କୁ କହିଲେ । ଏହି ଅବସରରେ ରାଜା ନିଜ ନାୟିକାକୁ ଦେଖିଲେ । ରାତିରେ ବସନ୍ତତିଲକା ରାଜାଙ୍କୁ ସୂଚନା ଦେଲେ ଯେ ସେହି ସୁନ୍ଦରୀ ସିଙ୍ଗାର-ମଞ୍ଜରୀ ବିରହ ବ୍ୟଥାରେ ଅତ୍ୟନ୍ତ ପୀଡ଼ିତ ହୋଇ ଆତ୍ମହତ୍ୟା କରିବାକୁ ଯାଉଛି । ରାଜା ନାୟିକାକୁ ବଞ୍ଚାଇବାକୁ ଯାଇ ତାର ପ୍ରେମରେ ମଜ୍ଜିଗଲେ । ଏଣେ ମହାରାଣୀ ଏହି ପ୍ରେମବ୍ୟାପାର ଜାଣି ପାରି ସପତ୍ନୀ ଈର୍ଷା ହେତୁ ବିଦୂଷିକା ବସନ୍ତତିଲକା ଓ ସିଙ୍ଗାର ମଞ୍ଜରୀକୁ ବନ୍ଦୀ କରାଇ ରଖିଲେ । ପାର୍ଶ୍ୱ ମନ୍ଦିରରେ ପୂଜାରତା ରାଣୀ ଦିବ୍ୟ ବାଣୀ ଶୁଣି ରାଜାଙ୍କ ପ୍ରତି

କର୍ତ୍ତବ୍ୟପାଳନ ଉଦ୍ଦେଶ୍ୟରେ ସମସ୍ତଙ୍କୁ ମୁକ୍ତ କରିଦେଲେ । ରାଜା ସିଂହାର ମଂଜରୀଙ୍କୁ ବିବାହ କଲେ । ପରେ ଜଣାଗଲା ଯେ ସିଂଗାର ମଂଜରୀ ଅବନ୍ତୀ ରାଜା ଜଣ୍ଟାଳେନ୍ଦ୍ରଙ୍କ କନ୍ୟା ।

ଏହି ସଟ୍ଟକର ଶିଳ୍ପ ପୁରାତନ ହେଲେ ବି ଏହାର ଗଠନ ଓ ବର୍ଣ୍ଣନରେ ମୌଳିକତା ଦେଖାଯାଏ । ଭାଷା ଶୈଳୀ ପ୍ରସାଦଗୁଣ ସଂପନ୍ନା କବିତା ଖୁବ୍ ଉଚ୍ଚକୋଟୀର ।

## ॥ ୭ ॥ ଆନନ୍ଦ ସୁନ୍ଦରୀ

ଏହାର ରଚୟିତା କବି ଘନଶ୍ୟାମ, ମହାରାଷ୍ଟ୍ରରେ ୧୭୦୦ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ଏହି ସଟ୍ଟକରେ କର୍ପୂର ମଂଜରୀର ପ୍ରଭାବ ଆଦୌ ନାହିଁ ।

ଏହି ସଟ୍ଟକରେ ମୌଳିକତା ରହିଛି । ହାସ୍ୟ ଓ ବ୍ୟଙ୍ଗର ଉପାଦାନ ପ୍ରଚୁର ମାତ୍ରାରେ ମିଳେ । ଏଥିରେ ଦୁଇଟି ଗର୍ଭ ନାଟକ ରହି କଥାକୁ ଗତିଶୀଳ କରେ । ଏହାର କଥାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏହାକୁ କବି ସଂସ୍କୃତରେ ଲେଖି ପ୍ରାକୃତରେ ଅନୁବାଦ କରିଥିଲେ । ଏଣୁ କୃତ୍ରିମତା ଦେଖାଯାଏ । ବରରୁଚିଙ୍କ 'ପ୍ରାକୃତ ପ୍ରକାଶ'ର ଅବଲମ୍ବନରେ ଭାଷାର ରୂପ ଗଢ଼ାଯାଇଛି । ରାଜଶେଖରଙ୍କ ପ୍ରାକୃତର ନୈସର୍ଗିକ ରୂପ ଏଥିରେ ନାହିଁ । ଏହି ନାଟକରେ ବିଦୂଷକର ଉକ୍ତିର ଅଶ୍ଳୀଳ ହାସ୍ୟ ହେତୁ ଶିଥିଳତା ଆସିଛି । ଏଥିରେ ସାରଗର୍ଭକ ସମ୍ବାଦଗୁଡ଼ିକର ସଂଯୋଜନା ଖୁବ୍ ଉଚ୍ଚକୋଟୀର ।

ସୂଚୋଟି ଜବନିକା ପ୍ରାକୃତରେ, କିନ୍ତୁ ପ୍ରଥମରେ ଦୁଇଥର ଏବଂ ଚତୁର୍ଥରେ ଥରେ ସଂସ୍କୃତର ପ୍ରୟୋଗ ମିଳେ । କବିତା ଦୃଷ୍ଟିରୁ ଏହା ଉତ୍ତମ ଶ୍ରେଣୀର ସଟ୍ଟକ ।

●

# ଅନୁକ୍ରମଣିକା

## ପାଲି ସାହିତ୍ୟ

### ଲେଖକ ସୂଚୀ

## ଗ୍ରନ୍ଥସୂଚୀ

# ପ୍ରାକୃତ ସାହିତ୍ୟ

## ଲେଖକ ସୂଚୀ

## ଗ୍ରନ୍ଥ ସୂଚୀ

# ସହାୟକ ଗ୍ରଂଥ ସୂଚୀ


୧ । ଉପାଧ୍ୟାୟ, ଭରତସିଂହ—ପାଲି ସାହିତ୍ୟକା ଇତିହାସ ।

୨ । ଓ୍ୱାର୍ଡେର୍, ଏଃ କେ: —ଦ ଇଣ୍ଡିଆନ୍ କାବ୍ୟ ଲିଟ୍‌ରେଚର୍ ଭାଗ-୨, ଦିଲ୍ଲୀ ୧୯୭୪ ।

୩ । ଗାଇଗର୍ , ହୁଇଲ୍‌ମେ —(ଅନୁ: ବଟକୃଷ୍ଣ ଘୋଷ) ପାଲି ଲିଟ୍‌ରେଚର୍ ଏଣ୍ଡ ଲଙ୍ଗ-ବେଜ୍ , କଲିକତା, ୧୯୫୬ ।

୪ । ଜୈନ, ଜଗଦୀଶଚନ୍ଦ୍ର —ପ୍ରାକୃତ ସାହିତ୍ୟ କା ଇତିହାସ ( ପ୍ରା:ସା:ଇ), ୧୯୬୧ ।

୫ । ୱିଣ୍ଟର ନିଜ୍ , ଏମ୍. —ହିଷ୍ଟ୍ରୀ ଅଫ୍ ଇଣ୍ଡିୟାନ୍ ଲିଟ୍‌ରେଚର୍ ଭାଗ-୨, କଲିକତା, ୧୯[illegible]୬ ।

୬ । ଲ୍ , ବିମଳ୍ ଚରଣ୍ —ହିଷ୍ଟ୍ରୀ ଅଫ୍ ପାଲି ଲିଟ୍‌ରେଚର୍

୭ । ଶାସ୍ତ୍ରୀ, ଡଃ ନେମିଚନ୍ଦ୍ର —ପ୍ରାକୃତ ଭାଷା ଔର ସାହିତ୍ୟ କା ଆଲୋଚନାତ୍ମକ ଇତିହାସ । (ପ୍ରା:ଭା: ଔର ସା:ଆ. ଇତିହାସ), ବନାରସ, ୧୯୬୬ ।

୮ । ସାଂକୃତ୍ୟାୟନ, ରାହୁଲ —ପାଲି ସାହିତ୍ୟ କା ଇତିହାସ ।

୯ । ସେନ୍ , ସୁକୁମାର —ଭାରତୀୟ ସାହିତ୍ୟେର ଇତିହାସ, କଲିକତା ।

